**ଲେଖକ**
ଶରତ ଚନ୍ଦ୍ର
ଲେଖକ-ସାମ୍ବାଦିକ,
ବିଜିପୁର, ବଡ଼ସାହି
ବ୍ରହ୍ମପୁର - ୭୬୦ ୦୦୧

**ପ୍ରକାଶକ :**
ଶାଶ୍ୱତୀ ପବ୍ଲିକେଶନ୍
ବିଜିପୁର, ବଡ଼ସାହି,
ବ୍ରହ୍ମପୁର - ୭୬୦ ୦୦୧
ଫୋନ୍ - (୦୬୮୦) ୨୦୦୦୦୩

**ଅକ୍ଷର ସଂଯୋଜନ :**
ପରଫେକ୍ଟ ପ୍ରିଣ୍ଟରର୍ସ ଆଣ୍ଡ ପବ୍ଲିସରର୍ସ
୧୨-ଜନପଥ, ଚୌଧୁରୀମାର୍କେଟ,
ବାପୁଜୀ ନଗର, ଭୁବନେଶ୍ୱର-୯

**ମୁଦ୍ରଣ :**
**ପଞ୍ଚଶଖା ପ୍ରକାଶନ , ସୂତାହାଟ, କଟକ**

**ପ୍ରଚ୍ଛଦ ଚିତ୍ର :**
କମଳ ଲୋଚନ ମହାନ୍ତି କୃତ
''ଶ୍ରୀକୃଷ୍ଣଙ୍କ ରାସଲୀଳା''ର ନାୟକ ନାୟିକା

**ପ୍ରଥମ ପ୍ରକାଶ :**
୧୯୯୭

**ମୂଲ୍ୟ :**
ଶୋଭନ ସଂସ୍କରଣ - ୭୫ ଟଙ୍କା ମାତ୍ର
ସାଧା ସଂସ୍କରଣ - ୪୦ଟଙ୍କା ମାତ୍ର



***Samaya Saranire Odiya Cinema***
[A History of Oriya Films]
By Sarat Chandra
Journalist & Writer
Bijipur(Bada Sahi), BRAMHAPUR - 760 001,Orissa
Phone : (0680)200003

# ପ୍ରାକ୍ କଥନ...

ମଣିଷ ମନ୍ତ୍ର-ମୁଗ୍ଧ ଭଳି ଚାହିଁ ରହେ ରୂପେଲି ପରଦାକୁ ଯଦି ରୂପେଲି ପରଦାରେ ଝଲସିତ ହେଉଥିବା ସିନେମାଟି ହୋଇଥାଏ ସୁନିର୍ମିତ, ହୋଇଥାଏ ସଜୀବ ଏବଂ ମନଲୋଭା...

ତଥାପି ସିନେମା ଦେଖା ଗୋଟିଏ ସମ୍ମାନଜନକ ସମୟଯାପନ ବୋଲି ବିଦ୍‌ଜନମାନଙ୍କ ଦ୍ୱାରା ମନେ କରାଯାଏ ନାହିଁ; ମନେ କରାଯାଏନି ରୂପେଲି ପରଦାର ମାୟାକୁ ଏକ ସାଂସ୍କୃତିକ ଅଭିବ୍ୟକ୍ତି ରୂପେ । ଏପରି ଅଭିଯୋଗର କାରଣ ହୁଏତ ରହିଛି ।

ସମୟ ଯେତେ ଯେତେ ବଢ଼ି ଚାଲିଛି, ବ୍ୟବସାୟ ଲକ୍ଷ୍ୟରେ ନିର୍ମିତ ସିନେମା ସେତିକ ସେତିକି ଅଶାଳୀନ ଆଉ ଅମାର୍ଜିତ ହୋଇ ଉଠୁଛି । ଚଳଚ୍ଚିତ୍ର ନିର୍ମାତାମାନେ ଯେ କୌଣସି ପ୍ରକାରେ ସିନେମା ପ୍ରେମୀମାନଙ୍କୁ ପ୍ରେକ୍ଷାଳୟକୁ ଟାଣି ନେଇ, ସେମାନଙ୍କ ସୃଷ୍ଟି ପାଇଁ ବ୍ୟବସାୟିକ ସଫଳତା ହାସଲ କରିବାକୁ ଝାଳ-ଲାଳ ହୋଇ ଉଦ୍ୟମଶୀଳ ! ସେମାନଙ୍କ ଆଗରେ ଅବଶ୍ୟ ଅନେକ ଚାଲେଞ୍ଜ୍—ଟି.ଭି, କେବଲ୍ ଟି.ଭି., ଭିଡ଼ିଓ ଫିଲ୍ମ ପ୍ରଭୃତି । ଏ ସମସ୍ତର ସମ୍ମୁଖୀନ ହୋଇ, ମନୋରଂଜନ ବଜାରରେ ନିଜ ତିଆରି ସିନେମାଟିକୁ ସାଫଲ୍ୟମଣ୍ଡିତ କରିବାର କଳା ଓ କାରିଗରୀ ସମସ୍ତ ନିର୍ଦ୍ଦେଶକ, ପ୍ରଯୋଜକଙ୍କର ନାହିଁ । ସମସ୍ତେ ତ ଆଉ ଷ୍ଟିଭେନ୍‌ସ୍ପିଏଲ୍‌ବର୍ଗ ହୋଇ ନାହାନ୍ତି ଯେ ନିତ୍ୟ-ନୂତନ କରାମତି ଦ୍ୱାରା ଦର୍ଶକମାନଙ୍କୁ ମୋହ-ମୁଗ୍ଧ କରିଦେବେ ? ବୁଡ଼ିଗଲା ଲୋକର ଗୋଡ଼ ତଳକୁ ତଳକୁ ପରି ମୂଲ୍ୟବୋଧ ବିଚାରରେ ଅଧିକାଂଶ ସିନେମା ଅଧିକରୁ ଅଧିକ ଅମାର୍ଜିତ, ଅଧିକରୁ ଅଧିକ ଅଶ୍ଳୀଳ, ଅଧିକରୁ ଅଧିକ ରଚିହୀନ ହୋଇ ଉଠୁଛି । ଭାରତୀୟ ସିନେମା ଯେମିତି ଶସ୍ତା-ନାଚ, ଶସ୍ତା ଗୀତ, ରୋମନ୍ସ, ଫାଇଟିଂ ପ୍ରଭୃତିର ଫର୍ମୁଲାଦ୍ୱାରା ପରିଚାଳିତ, ପାଶ୍ଚାତ୍ୟ ସିନେମା ମଧ୍ୟ ସେମିତି ଅପରାଧ, ହିଂସା, ନଗ୍ନତା ଓ ଯୌନ ଆବେଦନର ଦୃଶ୍ୟାବଳି ପ୍ରଭୃତିର ଫର୍ମୁଲା ଦ୍ୱାରା ସଂକ୍ରମିତ । ସିନେମା ଜଗତରେ ଏଣୁ ସୃଷ୍ଟି ଅପେକ୍ଷା ଅପସୃଷ୍ଟି ଯଥେଷ୍ଟ ଅଧିକ ।

ପୃଥିବୀରେ ସିନେମା ମନୋରଂଜନ ଉଦ୍ଭାବିତ ହୋଇ ଅତିକ୍ରାନ୍ତ ହେଲାଣି ଶହେରୁ ଅଧିକ ବର୍ଷ । କଳା ସୃଷ୍ଟିର ଏକ ମାଧ୍ୟମ ରୂପେ ବି ବହୁ ଦଶକ ଧରି ଏହା ବ୍ୟବହୃତ ହେଉଛି । ପ୍ରଥମ ଓଡ଼ିଆ ସିନେମା ନିର୍ମିତ ହୋଇ ୬୦ରୁ ଅଧିକ ବର୍ଷ ବିତିଗଲାଣି । ଅଥଚ ସିନେମା କଳାର ମୂଲ୍ୟାୟନ ପାଇଁ ଓଡ଼ିଶାରେ ଏବେ ବି ଉଦ୍ୟମ ନାହିଁ (କେଉଁ କଳାର ବା ମୂଲ୍ୟାୟନ ଏଇଠି ?) । ସ୍ୱର୍ଗତ କାର୍ତ୍ତିକ କୁମାର ଘୋଷ ଓଡ଼ିଆ ସିନେମାର ଇତିହାସ ପ୍ରଣୟନ ପାଇଁ ଉଦ୍ୟମ କରିଥିଲେ । କିନ୍ତୁ ନମସ୍ୟ ନାଟ୍ୟକାର ଐତିହାସିକ କୋଟୀକୁ ଯାଇପାରି ନଥିବା ମନେହୁଏ । ଏ ଲେଖକ ଯାଇ ପାରିଛି କି ନାହିଁ ଅନ୍ୟମାନେ ବିଚାର କରିବେ ।

ଅନେକଙ୍କର ସହଯୋଗଦ୍ୱାରା ସମ୍ଭବ ହୋଇଛି ଏ ଗ୍ରନ୍ଥ । ''ଦୈନିକ ଆଶା''ର ସଂପାଦକ ଶ୍ରୀ ପ୍ରମୋଦକୁମାର ପଣ୍ଡା ତାଙ୍କ ପତ୍ରିକାରେ ମୋ ଦ୍ୱାରା ଲିଖିତ କିଛି ସିନେମା ସମୀକ୍ଷା ପୁନଃ ପ୍ରକାଶ କରିବା ପାଇଁ ଅନୁମତି ଦେଇଛନ୍ତି । ଛବି ସଂଗ୍ରହରେ ଶ୍ରୀ ଦିଲୀପ୍ ହାଲି ସହଯୋଗ କରିଛନ୍ତି । ଉଭୟଙ୍କୁ ଅନେକ, ଅନେକ ଧନ୍ୟବାଦ ।

- **ଲେଖକ**

# ଉତ୍ସର୍ଗ

ଓଡ଼ିଆ ସିନେମା ଅଗ୍ରଗତିର
ତିନି ଅଧ୍ୟାୟରେ
ଯେଉଁ ତିନି ବ୍ୟକ୍ତି ଦେଇଥିଲେ ଅଭୁଲା ଅବଦାନ
ସେହି ତିନି ରଥୀ ହେଲେ



**କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ**
(ଜନ୍ମ ୧୯୧୪ ଶିବରାତ୍ରି)



**ଏ ବାବୁଲାଲ୍ ଦୋଶି**
(ଜନ୍ମ:୧୯୧୯-ତିରୋଧାନ:୧୯୮୫)



**ଏ କମଳ ଲୋଚନ ମହାନ୍ତି**
(ଜନ୍ମ:୧୯୨୧-ତିରୋଧାନ:୧୯୯୧)

ସେହି ବ୍ୟକ୍ତିତ୍ୱ ତ୍ରୟଙ୍କ ସମ୍ମାନାର୍ଥେ
ଉତ୍ସର୍ଗ କରାହେଉଛି
**ସମୟ ସରଣୀରେ ଓଡ଼ିଆ ସିନେମା**

- ଶରତ ଚନ୍ଦ୍ର

# ସୂଚୀ ପତ୍ର





ପ୍ରଥମ ରଙ୍ଗୀନ୍ ଓଡ଼ିଆ ଚଳଚ୍ଚିତ୍ର "ଗପ ହେଲେ ବି ସତ" ରେ ବନଜା

# ସଚଳ ଚିତ୍ରର ଝରଣା...

## ଚଳଚ୍ଚିତ୍ରର ବିଶେଷତ୍ୱ

ଏକ କଳା ରୂପେ ସ୍ପଷ୍ଟ ବାରି ହୋଇପଡ଼େ ସିନେମାର ସ୍ୱାତନ୍ତ୍ର୍ୟ.....

ଏହା କହିବାର ମାନେ ନୁହେଁ ଯେ କଳା ଦୃଷ୍ଟିରୁ ସିନେମାକୁ ଅନ୍ୟାନ୍ୟ କଳା ଅପେକ୍ଷା ଅଧିକ ଉନ୍ନତ ବୋଲି ଅଭିହିତ କରାଯିବ । ସମସ୍ତ ସୃଜନ କଳାର ରହିଛି ସବଳ ଦିଗ ଏବଂ ଦୁର୍ବଳ ଦିଗ । କିନ୍ତୁ ଅନ୍ୟ କୌଣସି କଳା ସିନେମା ପରି ଏତେଟା ଯନ୍ତ୍ର-ନିର୍ଭର ନୁହେଁ ।

ସଂଗୀତ, ନୃତ୍ୟ, ଭାସ୍କର୍ଯ୍ୟ, ଚିତ୍ରକଳା, ଅଭିନୟ, ଉପନ୍ୟାସ, ଗଳ୍ପ ବା କବିତା ସୃଷ୍ଟି – କୌଣସିଟି ଯନ୍ତ୍ର-ନିର୍ଭର ନୁହେଁ । ଚିତ୍ରକଳା କିମ୍ବା ସାହିତ୍ୟ ସୃଷ୍ଟି ପାଇଁ ଶିଳ୍ପୀ ଅତି ସାମାନ୍ୟ ଉପକରଣ ଦରକାର କରେ: ଗୋଟିଏ ତୁଳୀ ଓ କ୍ୟାନ୍‌ଭାସ୍ ଓ କିଛି ରଂଗ ଆବଶ୍ୟକ କରେ ଚିତ୍ରଶିଳ୍ପୀ; କିଛି କାଗଜ ଓ ଗୋଟିଏ ଲେଖନୀ ଆବଶ୍ୟକ କରେ ଲେଖକ । ମଞ୍ଚ ଉପରେ ଅଭିନୟ କିମ୍ବା ନୃତ୍ୟ ପରିବେଷଣ ପାଇଁ ଯଥେଷ୍ଟ ଅଧିକ ଉଦ୍‌ଯୋଗ ହୁଏତ ଦରକାର ଏବଂ ଦରକାର ବି ହୁଅନ୍ତି ଦର୍ଶକ ମଣ୍ଡଳୀ । କିନ୍ତୁ ସିନେମା ପରି ଦର୍ଶକ ବହୁଳତା ଓ ଯନ୍ତ୍ର ବାହୁଲ୍ୟକୁ ଆଧାର କରି ଅନ୍ୟ କୌଣସି କଳା ସୃଷ୍ଟି ହୁଏନି । ଏହାଦ୍ୱାରା ମନୋରଂଜନର ମାଧ୍ୟମ ରୂପେ କେତୋଟି ସ୍ୱାତନ୍ତ୍ର୍ୟ ଓ ଅନୁକୂଳ ଦିଗ ସହ କିଛି ପ୍ରତିକୂଳ ଦିଗ ମଧ୍ୟ ସିନେମାକୁ ସଂକ୍ରମିତ କରେ । କ୍ୟାମେରା, ରେକଡ଼ିଂ ଯନ୍ତ୍ର, ପ୍ରଜେକ୍ଟର, ସାଉଣ୍ଡ ସିଷ୍ଟମ୍, ଟିକେଟ୍ ଖରିଦ୍‌କାରୀ ଦର୍ଶକମଣ୍ଡଳୀ ପ୍ରଭୃତି ବିନା

ସିନେମା ସୃଷ୍ଟି ଏବଂ ସିନେମା ମନୋରଂଜନ ଚାଲୁରଖିବା ଅସମ୍ଭବ । ଏପରିକି କୌଣସି ଧନୀକ ବ୍ୟକ୍ତି ବିଳାସ କିମ୍ବା ଖିଆଲରେ ବହୁ ଲକ୍ଷ ଟଙ୍କା ବ୍ୟୟ କରି ସିନେମାଟିଏ ନିର୍ମାଣ କରିଦେଲେ ବି ତାହା ରୂପେଲି ପରଦାରେ ପ୍ରଦର୍ଶିତ ହେବା ପାଇଁ ବି ପୁନଶ୍ଚ ଦରକାର ଅର୍ଥ ଓ ଉଦ୍‌ଯୋଗ । ଏଣୁ ଯନ୍ତ୍ର ଓ ଅର୍ଥନୀତି ବିନା ଚଳଚ୍ଚିତ୍ରର ଚିତ୍ର ଜମାରୁ ଚାଲିପାରେନି........

ଏଥିରୁ ସ୍ପଷ୍ଟ ଯେ, କେବଳ ଶିଳ୍ପୀର ସୃଜନଶୀଳତା ହିଁ ଜନ୍ମ ଦେଇନି ସିନେମାକୁ । ସିନେମା ସୃଷ୍ଟିରେ ମଧ୍ୟ ସଂଶ୍ଳିଷ୍ଟ ବିଜ୍ଞାନର କରାମତି ଏବଂ ଅର୍ଥନୀତି । କଳା ଦୃଷ୍ଟିରୁ ସିନେମାକୁ ଜାଣିବା ପୂର୍ବରୁ ସିନେମା ସହ ଜଡ଼ିତ କାରିଗରୀ ବିଦ୍ୟା ଓ ସିନେମା ଅର୍ଥନୀତି ସଂପର୍କରେ କିଛି ମାତ୍ରାରେ ଅବଗତ ହେବା ଆବଶ୍ୟକ ।

ସିନେମା ପରଦା ଉପରେ ଯେଉଁ ଚିତ୍ର ଗୁଡ଼ିକ ଆମେ ଚଳପ୍ରଚଳ ହେବା ଦେଖୁ ତାହା ପଶ୍ଚାତ୍‌ରେ ବହୁ ସଂଖ୍ୟକ ସ୍ଥିର ଚିତ୍ରର ସଜ୍ଜିକରଣରେ ହିଁ ସମ୍ଭବ ହୁଏ । ସେ ସମସ୍ତ ଚିତ୍ର ଅବଶ୍ୟ ସାଧାରଣ ସ୍ଥିର କ୍ୟାମେରାରେ ନିଆଯାଇ ନ ଥାଏ; ସେସବୁ ନିଆଯାଇଥାଏ ''ମୁଭି କ୍ୟାମେରା''ରେ । ଏବେ ବ୍ୟବହୃତ ସିନେମା କ୍ୟାମେରାରେ ଗୋଟିଏ ସେକେଣ୍ଡରେ ୨୪ଟି ଫଟୋ ଉଠିଯାଏ । ଦଶ ମିନିଟ୍‌ର ଗୋଟିଏ ରିଲ୍ ତିଆରି କରିବା ପାଇଁ ଏଣୁ ୧୪,୪୦୦ ଗୋଟି ଫଟୋ ଗୋଟାଏ ପରେ ଗୋଟାଏ ରିଲ୍ ଦେହରେ ସଜ୍ଜିତ ହୋଇରହେ । ଗୋଟିଏ ଗୋଟିଏ ସ୍ଥିର-ଚିତ୍ର ବହନ କରିଥିବା ରିଲ୍‌ର ଅଂଶ ବିଶେଷକୁ କୁହାଯାଏ ''ଫ୍ରେମ୍'' । ବହୁଳ ପ୍ରଚଳିତ ୩୫ ମିଲିମିଟର ସିନେମାର ପ୍ରତି ଫ୍ରେମ୍ ଆକାରରେ ଛୋଟ ଛୋଟ: ଦୈର୍ଘ୍ୟ ୩୦ ମିଲିମିଟର ଓ ପ୍ରସ୍ଥ ୩୫ ମିଲିମିଟର । ପ୍ରତି ଦୁଇ ଫ୍ରେମ୍ ଅବଶ୍ୟ ସଂଯୋଜିତ ହୋଇଥାଏ ଏବଂ ସଂଯୋଜିତ ଅଂଶ ଟିକକ କୌଣସି ଚିତ୍ରର ଅଂଶ ବିଶେଷ ହୋଇନଥାଏ । ତଥାପି ଏହି ଫ୍ରେମ୍ ଗୁଡ଼ିକ ପ୍ରଜେକ୍ଟର୍‌ରେ ଘୂରୁଥିବା ରିଲ୍ ସହ ଯେତେବେଳେ କ୍ଷୀପ୍ରଗତିରେ ଘୂରି ବୁଲିଯାଏ ରୂପେଲି ପରଦାରେ ଚଳମାନ ଚିତ୍ର ଆତ୍ମପ୍ରକାଶ କରେ । କିନ୍ତୁ ଦୁଇ ଫ୍ରେମ୍ ମଝିରେ ଥିବା ଅଂଶ ଗୁଡ଼ିକ ଅଣ-ଫୋଟ ହୋଇଥିବା ସତ୍ତ୍ୱେ ଚିତ୍ର ଗୁଡ଼ିକ ଅବିଚ୍ଛିନ୍ନ, ସଚଳ ଚିତ୍ରଭଳି ଦେଖାଯାଏ କାହିଁକି ? ଆଖିର ବା ଦୃଷ୍ଟି ପ୍ରକ୍ରିୟାର ବିଶେଷତ୍ୱ ଯୋଗୁଁ ହିଁ ସେପରି ଦେଖାଯାଏ ।

## ନିରବଚ୍ଛିନ୍ନ ଦୃଷ୍ଟି

ମଣିଷର ଆଖି ଏମିତି ନିର୍ମିତ ହୋଇଛି ଯେ ଚକ୍ଷୁ ଖୋଲି କୌଣସି ଘଟଣା ବା ଦୃଶ୍ୟ ଦେଖିବା ବେଳେ ଚକ୍ଷୁର ପରଦାରେ ଯେଉଁ ଚିତ୍ର ପ୍ରତିଫଳିତ ହୁଏ ତାହା ସଙ୍ଗେ ସଙ୍ଗେ ଉଭେଇ ଯାଏନି, ସେ ବସ୍ତୁ ଉପରୁ ଚକ୍ଷୁ ଫେରାଇ ନେବାପରେ ବି ପରଦାରେ ପ୍ରତିଫଳିତ ଚିତ୍ର ଖୁବ୍ କମ୍ ସମୟ ପାଇଁ - ସେକେଣ୍ଡର ଏକ ଭଗ୍ନାଂଶ ପାଇଁ - ସେହିପରି ରହିଯାଏ । ଏଣୁ ହିଁ ପଲକ ପଡ଼ିବା ବେଳେ ଆଖି କ୍ଷଣକ ପାଇଁ ବନ୍ଦ୍ ହେଲେ ମଧ୍ୟ ଆମେ

ତା ଜାଣିପାରୁ ନାହୁଁ । ନୟନରେ ଏହି ପ୍ରତିକ୍ରିୟାକୁ ''ଦୃଷ୍ଟିର ନିରବଚ୍ଛିନ୍ନତା'' (Persistence of Vision) ବୋଲି କୁହାଯାଏ ।

ଦୃଷ୍ଟିର ନିରବଚ୍ଛିନ୍ନତା ପକ୍ରିୟାକୁ ଆଧାର କରି ହିଁ ସିନେମା ନିର୍ମାଣ ହୁଏ । ସିନେମା କ୍ୟାମେରାରେ ଏକ ସେକେଣ୍ଡରେ ଗୋଟିକ ପରେ ଗୋଟିଏ ଫଟୋ ଉଠିବାବେଳେ କ୍ୟାମେରାର ମୁହଁ ଚବିଶଥର ଖୋଲେ; ସେକେଣ୍ଡର ଗୋଟିଏ ଅତି କ୍ଷୁଦ୍ର ଭଗ୍ନାଂଶ ପାଇଁ ତାହା ଖୋଲାରହେ ଓ ବନ୍ଦ୍ ହୁଏ । ଏହାଦ୍ୱାରା ଯେଉଁ ଚିତ୍ର ଗୁଡ଼ିକ ଉଠିଯାଏ ତାହା ଗୋଟିଏ ଦୃଶ୍ୟର ପରସ୍ପର ସହ ସଂଯୁକ୍ତ ଚିତ୍ରାବଳି । ଏହି ଚିତ୍ର ସମ୍ବଳିତ ରିଲ୍ ସିନେମା ପ୍ରଜେକ୍ଟର୍‌ରେ ଠିକ୍ ସେହି ବେଗରେ (ଅର୍ଥାତ୍ ସେକେଣ୍ଡରେ ଚବିଶିଟି ଚିତ୍ର ବା ''ଫ୍ରେମ୍'') ଘୂରେ ଏବଂ ପରଦାରେ ଦୃଶ୍ୟଟି ପ୍ରତିଫଳିତ ହୁଏ । ଦୁଇ ଫ୍ରେମ ମଝିରେ ଅଣ-ଫୋଟ ଅଂଶ ଥିବା ସତ୍ତ୍ୱେ ଦୃଶ୍ୟଟି ବିଭାଜିତ ନୁହେଁ କ୍ରମାଗତ ବୋଲି ମନେହୁଏ । ଏପରି ମନେହେବାକୁ ''ଦର୍ଶନ ଭ୍ରମ'' ବା (''ଅପ୍ଟିକେଲ୍ ଇଲ୍ୟୁଜନ୍'') କୁହାଯାଏ । ଦୃଷ୍ଟିର ନିରବଚ୍ଛିନ୍ନତା ଯୋଗୁଁ ହିଁ ଦର୍ଶନ ଭ୍ରମ ପ୍ରକ୍ରିୟା ସମ୍ଭବ ହୁଏ ଏବଂ ସମ୍ଭବ ହୁଏ ସିନେମା ।

## ସିନେମା ଯନ୍ତ୍ରର ଅଭ୍ୟୁଦୋୟ

ସିନେମା ସହ ଅଙ୍ଗାଙ୍ଗୀ ଜଡ଼ିତ ଥିବା ଦୁଇ ପ୍ରଧାନ ଯନ୍ତ୍ର ବା ଯାନ୍ତ୍ରିକ ଉପକରଣ ହେଲା –ସିନେମା କ୍ୟାମେରା ଓ ସିନେମା ପ୍ରଜେକ୍ଟର । ଏଇ ଉଭୟ ବର୍ଷ ବର୍ଷ, ଯୁଗ ଯୁଗର ଅଭ୍ୟୁଦୋୟ ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ସ୍ତରରେ ପହଞ୍ଚିଛି । କିନ୍ତୁ ସିନେମା କ୍ୟାମେରା ଓ ପ୍ରଜେକ୍ଟର ସମ୍ପର୍କରେ କିଛି କହିବା ପୂର୍ବରୁ ସିନେମାର ପୂର୍ବଜ ''ମେଜିକ୍ ଲଣ୍ଠନ'' ସମ୍ପର୍କରେ କିଛି ଉଲ୍ଲେଖ କରିବା ଆବଶ୍ୟକ ।

ମେଜିକ୍ ଲଣ୍ଠନ ଅଧିକ ପୂର୍ବରୁ ନ ହେଲେ ବି ଅନ୍ତତଃ ସପ୍ତଦଶ ଶତାବ୍ଦୀରେ ଉଦ୍ଭାବିତ ହୋଇଥିବା ପ୍ରମାଣ ରହିଛି । ଆଥାନେସିଆସ୍ କିର୍‌ଚେର୍ ନାମକ ଜଣେ ବିଦ୍ୱାନ୍ ମେଜିକ୍ ଲଣ୍ଠନ ସମ୍ପର୍କରେ ତାଙ୍କର ୧୬୪୬ ସାଲରେ ପ୍ରକାଶିତ ଗୋଟିଏ ବହିରେ ଉଲ୍ଲେଖ କରିଥିଲେ । ଗଠନ ପ୍ରକ୍ରିୟାରେ ମେଜିକ୍ ଲଣ୍ଠନ ଏକାଧିକ ପ୍ରକାରର ରହିଛି, କିନ୍ତୁ ସାଧାରଣତଃ ମେଜିକ୍ ଲଣ୍ଠନ ଦୁଇଟି ଯବକାଚ (''ଲେନ୍‌ସ୍'') ସଂଯୁକ୍ତ ଲୁହାରେ ତିଆରି ଯନ୍ତ୍ରଟିଏ । ଦୁଇ ଯବକାଚ ମଝିରେ ଚିତ୍ରଟିଏ (କାଚ ବା ଅନ୍ୟ କୌଣସି ସ୍ୱଚ୍ଛ-ତନ୍ତୁ ପଦାର୍ଥ ଯାହା ଉପରେ ସେହି ଛବି ଅଙ୍କା ଯାଇଥାଏ) ରଖିବା ପାଇଁ ବ୍ୟବସ୍ଥା ଥାଏ । ଆହୁରି ବି ବ୍ୟବସ୍ଥା ଥାଏ ସେହି ଯନ୍ତ୍ରରେ, ଯବକାଚ ଦ୍ୱୟର ପଶ୍ଚାତ୍‌ରେ, ଗୋଟିଏ ଆଲୁଅର ଉତ୍ସ ସଂଯୋଜିତ କରିବା ପାଇଁ । ଏହି ଆଲୋକ ପ୍ରଥମ ଯବକାଚ ଉପରେ ପଡ଼େ ଓ ତାପରେ ପଡ଼େ ଚିତ୍ରିତ କାଚ ଉପରେ ଏବଂ ଚିତ୍ରିତ କାଚଭେଦ କରି ତା ପୁଣି ପଡ଼େ ଦ୍ୱିତୀୟ ଯବକାଚ ଉପରେ । ସେହି ଦ୍ୱିତୀୟ ଯବକାଚ ବା ସମ୍ମୁଖ ଲେନ୍‌ସ୍ ଭେଦକରି ସେହି ଆଲୋକ ରେଖାସବୁ ପ୍ରତିଫଳିତ ହୁଏ କିଛି ଦୂରରେ ଟଣା ଯାଇଥିବା ଧଳା ପରଦା ଉପରେ । ଏହାଦ୍ୱାରା କାଚରେ ରୂପାୟିତ ଚିତ୍ର ବହୁଗୁଣିତ ହୋଇ

ଆତ୍ମପ୍ରକାଶ କରେ ପରଦା ଦେହରେ । ଆବଶ୍ୟକତା ଅନୁଯାୟୀ ଚିତ୍ରଗୁଡ଼ିକ କ୍ରମାଗତ ବଦଳା ଯାଇପାରେ । ଯେତେଗୁଡ଼ିଏ ଚିତ୍ରାୟିତ କାଚ ଯନ୍ତ୍ର ଦେହରେ ଦୁଇ ଲେନ୍ସ୍ ମଝିରେ ଆଲୋକ ସମ୍ମୁଖରେ ରଖାଯାଏ ସେତିକି ଛବି ପ୍ରତିଫଳିତ ହୁଏ ଉଦ୍ଦିଷ୍ଟ ପରଦାରେ ।

ମେଜିକ୍ ଲଣ୍ଠନର କଳା ଓ କୌଶଳ ସିନେମା ଉଦ୍ଭାବନର ପ୍ରେରଣା ରୂପେ ଯେ କାମ କରିଛି ଏଥିରେ ସନ୍ଦେହ ନାହିଁ । ମେଜିକ୍ ଲଣ୍ଠନର ସ୍ଥିର ଚିତ୍ର ଗୁଡ଼ିକ କିପରି ସଚଳ ହୋଇପାରିବ ଓ ହସ୍ତପରିଚାଳିତ ଯନ୍ତ୍ରଟି ସ୍ୱୟଂଚାଳିତ ଯନ୍ତ୍ରରେ ରୂପାନ୍ତରୀତ ହୋଇପାରିବ, ତାହା କେତେକ ଉଦ୍ଭାବକଙ୍କୁ ଊନବିଂଶ ଶତାବ୍ଦୀରେ ପ୍ରୟାଶଶୀଳ କରିଥିଲା । ଏପରି ପ୍ରୟାସରୁ ହିଁ ଜନ୍ମ ନେଇଥିଲା, ''କାଇନେଟୋସ୍କୋପ'' ।

କାଇନେଟୋସ୍କୋପ୍‌ର ଚିତ୍ରଗୁଡ଼ିକ ନଥିଲା ହସ୍ତ ଅଙ୍କିତ : ତାହାଥିଲା କ୍ୟାମେରାରେ ନିଆଯାଇଥିବା ଫୋଟ । ପ୍ରଥମ ସ୍ଥିରଚିତ୍ର କ୍ୟାମେରା ଉଦ୍ଭାବନ କରିଥିଲେ ଜୋସେଫ୍ ନିସେଫୋର୍ ନିପ୍‌ସ୍ । ୧୮୨୬ରେ ସେ ଗୋଟିଏ ପ୍ଲେଟ୍ ଉପରେ ଫୋଟ ଉଠାଇବାରେ ସଫଳ ହୋଇଥିଲେ ।

ଏ ଘଟଣାର ୬୨ ବର୍ଷପରେ ଅର୍ଥାତ୍ ୧୮୮୮ରେ ଇଷ୍ଟମେନ୍ କୋଡ଼ାକ୍ କମ୍ପାନୀ ପ୍ରଥମ କରି ରୋଲ୍ ଫିଲିମ୍ ବଜାରକୁ ଛାଡ଼ିଥିଲା । ଏହାର ମାତ୍ର ଦୁଇବର୍ଷ ପରେ ଉଦ୍ଭାବିତ ହେଲା ''କାଇନେଟୋ ଗ୍ରାଫ୍'' । ଏ ଯନ୍ତ୍ରର ଉଦ୍ଭାବକ ଶ୍ରୀ ଡବ୍ଲୁ. କେ. ଏଲ୍. ଡିକ୍‌ସନ୍ ଗୋଟିଏ ସେକେଣ୍ଡରେ ଚାଳିଶିଟି ଯାଏଁ ଚିତ୍ର କାଇନେଟୋଗ୍ରାଫ୍ ସାହାଯ୍ୟରେ ନେଇ ପାରିଥିଲେ । ଜୁଲାଇ ୧୮୯୧ରେ ଥମାସ୍ ଆଲ୍‌ଭା ଏଡ଼ିସନ୍ ସଚଳ ଚିତ୍ର ଦେଖିପାରିବା ଭଳି ଯେଉଁ ଯନ୍ତ୍ରଟି ବ୍ୟବସାୟ ଜଗତକୁ ଆଣିଥିଲେ ତାର ନାମ ରଖିଥିଲେ ''କାଇନେଟୋ-ସ୍କୋପ୍'' । ଏଥିରେ ଚଳମାନ ଚିତ୍ର ଦେଖି ହେଉଥିଲା; କିନ୍ତୁ ଯନ୍ତ୍ରଟିର ପ୍ରଧାନ ଅସୁବିଧା ଥିଲା ଯେ ଥରକେ ଜଣେ ମାତ୍ର ଦର୍ଶକ ତାହା ଦେଖିପାରୁଥିଲା; କାରଣ କାଇନେଟୋ ସ୍କୋପ୍‌ରେ ଥିବା ଗୋଟିଏ ରନ୍ଧ୍ର ଦେଇ ଚିତ୍ର ଉପଭୋଗ କରିବା ସମ୍ଭବ ହେଉଥିଲା । କାଇନେଟୋସ୍କୋପ୍ ଦ୍ୱାରା ଦର୍ଶକଙ୍କୁ ମନୋରଞ୍ଜନ ଯୋଗାଇବା ବ୍ୟବସାୟ, ଆମେରିକାର ପ୍ରସିଦ୍ଧ ବ୍ରଡ଼ୱେରେ ପ୍ରଥମେ ଆରମ୍ଭ ହୋଇଥିଲା ।

## ଲୁମିଏର୍ ଭାତୃଦ୍ୱୟଙ୍କ ସିନେମାଯନ୍ତ୍ର

କିନ୍ତୁ ଏହାର ଏକବର୍ଷ ଆଠମାସ ପରେ ଡିସେମ୍ବର ୧୮୯୬ରେ ପ୍ରକୃତ ଚଳଚ୍ଚିତ୍ରର ଆଗମନ ହେଲା । କାଇନେଟୋସ୍କୋପ୍ ଓ ମେଜିକ୍ ଲଣ୍ଠନରେ ବ୍ୟବହୃତ ପ୍ରକ୍ରିୟାର ସମନ୍ୱୟ ଦ୍ୱାରା ସିନେମା ସମ୍ଭବ ହୋଇଥିଲା । ଏହା କରିପାରିଥିଲେ ଦୁଇଜଣ ଫରାସୀ ଯୁବକ । ଏମାନେ ଥିଲେ ଅଗଷ୍ଟ ଲୁମିଏର (୧୮୬୨-୧୯୫୪) ଓ ଲୁଇ ଲୁମିଏର (୧୮୬୪-୧୯୪୮) ନାମକ ଦୁଇଭାଇ । ଫେବୃୟାରୀ ୧୮୯୫ ବେଳକୁ ଲୁମିଏର୍ ଭାତୃଦ୍ୱୟ ଗୋଟିଏ ଯନ୍ତ୍ର ଉଦ୍ଭାବନ କରିବାକୁ ସକ୍ଷମ ହୋଇଥିଲେ ଯାହା ଦ୍ୱାରା ଫୋଟ

ନେବା ସମ୍ଭବ ହୋଇଥିଲା ଓ ସମ୍ଭବ ବି ହୋଇଥିଲା ସେହି ଯନ୍ତଟି ଦ୍ୱାରା ଚିତ୍ର ପ୍ରସାରଣ । ସେମାନେ ଏହି ଯନ୍ତ୍ରଟିର ନାମ ରଖିଥିଲେ ''ସିନେମାଟୋଗ୍ରାଫ୍'' (Cinematographe) । ଲୁମିଏର୍ ଭାଇମାନଙ୍କ ସିନେମାଟୋଗ୍ରାଫର ଯବକାଚଟି ଫୋଟ ନେବାବେଳେ ଯନ୍ତ୍ର ମଧ୍ୟକୁ ଆଲୋକ ଅନୁପ୍ରବେଶ ପାଇଁ ସାହାଯ୍ୟ କରୁଥିଲା । ଅଥଚ ଚିତ୍ର ପ୍ରସାରଣ ବେଳେ ସେହି ଯବକାଚଟି ଦେଇ ହିଁ ଆଲୋକ ବି ନିର୍ଗତ ହେଉଥିଲା । ଯନ୍ତ୍ରଟି ମଧ୍ୟରେ ଫିଲ୍ମର ପ୍ରସେସିଂ ମଧ୍ୟ ସମାହିତ ହୋଇଯାଉଥିଲା । ଲୁମିଏର୍ ଦୁଇ ଭାଇ ଫିଲ୍ମର ପ୍ରସ୍ଥ ୩୫ ମିଲିମିଟର ଏବଂ ଗତି ବା ''ସ୍ପିଡ୍'' ରଖିଥିଲେ ପ୍ରତି ସେକେଣ୍ଡରେ ଷୋହଳଟି ଫ୍ରେମ୍ । (ସିନେମା ୧୯୨୮ ସାଲରେ ସବାକ୍ ହେବାପରେ ହିଁ ଫିଲ୍ମର ଗତି ଗୋଟିଏ ସେକେଣ୍ଡରେ ଚବିଶିଟି ଫ୍ରେମ୍ ହେଲା ଶବ୍ଦର ଉପଯୁକ୍ତ ପୁନଃ ପ୍ରକାଶ ପାଇଁ) ।



ଲୁମିଏର୍ ଭାତୃଦ୍ୱୟ ଓ

ସେମାନଙ୍କ ଉଦ୍ଭାବିତ କ୍ୟାମେରା

୧୮୯୫ ସାଲ୍ ପ୍ରାରମ୍ଭରେ ଲୁମିଏର ଭାଇମାନେ ସେମାନଙ୍କ ଯନ୍ତ୍ର ସାହାଯ୍ୟରେ ଯେଉଁ ସଚଳ ଚିତ୍ର ନିର୍ମାଣ କଲେ ତାର ନାମ ଥିଲା ''କାରଖାନାରୁ ପ୍ରତ୍ୟାଗତ କରୁଥିବା ଶ୍ରମିକମାନେ'' (Workers leaving the Lumier Factory) । କିଛି ସେକେଣ୍ଡ ଦୀର୍ଘ ଏଇ ସିନେମାଟିକୁ ସେମାନେ ସାଙ୍ଗସାଥି, ନିମନ୍ତ୍ରିତ ଅତିଥି ଇତ୍ୟାଦିଙ୍କୁ ଦେଖାଇଲେ ।

ସିନେମାଟୋଗ୍ରାଫ୍‌ଟିକୁ ମାତ୍ର ଗୋଟିଏ ସ୍ଥାନରେ ରଖି ସେ ଦୃଶ୍ୟ ନିଆଯାଇଥିଲା । ସେହିପରି ଅନେକ ଛୋଟ ''ଫିଲ୍ମଷ୍ଟ୍ରିପ'' (କ୍ଷୁଦ୍ରାବୟବ ସିନେମା) ନିର୍ମାଣ କରିସାରିବା ପରେ, ଡିସେମ୍ବର ୨୬, ୧୮୯୫ରେ ପ୍ୟାରିସ୍‌ର ଗ୍ରାଣ୍ଡ କାଫେର ପ୍ରଥମ ମହଲାରେ ଟିକେଟ୍ ଖରିଦ୍‌କାରୀ ଦର୍ଶକ ମାନଙ୍କ ପାଇଁ ପ୍ରେକ୍ଷାଳୟରେ ଲୁମିଏର ଭାତୃଦ୍ୱୟ ସିନେମା ଚାଲୁକଲେ । ଏହି କ୍ଷୁଦ୍ରାକାୟ ସିନେମା ଗୁଡ଼ିକର ପ୍ରସାରଣ ସମୟ ଥିଲା ପନ୍ଦର ସେକେଣ୍ଡରୁ ନବେ ସେକେଣ୍ଡ ।

କାଇନେଟୋସ୍କୋପ୍‌ର ନିର୍ମାତା ମାର୍କିନ ବୈଜ୍ଞାନିକ ଥମାସ୍ ଏଡ଼ିସନ ମଧ୍ୟ ତାଙ୍କର ସିନେମା ସଂସ୍ଥା ''ଏଡ଼ିସନ୍ କମ୍ପାନୀ'' ସ୍ଥାପନ କରିଥିଲେ । ୧୮୯୬ ସାଲରେ ସ୍ୱକୀୟ ପଦ୍ଧତିରେ ଏଡ଼ିସନ୍ ମଧ୍ୟ ସିନେମା ନିର୍ମାଣ ଓ ପ୍ରଦର୍ଶନ ଆରମ୍ଭ କରିଦେଇଥିଲେ । ଆମେରିକାରେ ଓ ୟୁରୋପରେ ବହୁ ସିନେମା ସଂସ୍ଥା ଗଢ଼ି ଉଠିଲା ଏବଂ ୧୯୦୩ ସାଲ ଯାଏଁ ଦୀର୍ଘ ଆଠ ବର୍ଷ କ୍ଷୁଦ୍ରାକାୟ ସିନେମାସବୁ ହିଁ ପ୍ରଦର୍ଶିତ ହେଉଥିଲା । କିନ୍ତୁ ସେ ସବୁ ସିନେମା ଦେଖି ଦେଖି ଦର୍ଶକ ମାନଙ୍କର ଅରୁଚି ଆସିଯିବାରୁ ସିନେମା ବ୍ୟବସାୟ ଏକ ସଂକଟମୟ ଅବସ୍ଥାରେ ପହଞ୍ଚି ଯାଇଥିଲା । ଚଳଚ୍ଚିତ୍ରକୁ ସେପରି ସଂକଟରୁ ତାରଣ ପାଇଁ କାହାଣୀ-ସମ୍ବଳିତ ସିନେମାର ଆଗମନ ହେଲା ।

## କାହାଣୀ ସମ୍ବଳିତ ସିନେମା ସୃଷ୍ଟି

ସର୍ବପ୍ରଥମ କାହାଣୀ-ସମ୍ବଳିତ ସିନେମା ୧୯୦୩ରେ ନିର୍ମାଣ କରିଥିଲେ ଆମେରିକୀୟ ଚିତ୍ରନିର୍ମାତା ସିଡ୍‌ନୀ ଏସ୍. ପୋର୍ଟେର । ତାଙ୍କର ପ୍ରାୟ ଦଶମିନିଟ୍ ଲମ୍ବା ଚଳଚ୍ଚିତ୍ର ''ଦି ଗ୍ରେଟ୍ ଟ୍ରେନ୍ ରୋବେରୀ'' ପ୍ରବଳ ଜନପ୍ରିୟ ହୋଇଥିଲା ଏବଂ ବ୍ୟବସାୟିକ ସଫଳତା ମଧ୍ୟ ହାସଲ କରିଥିଲା । ଦଳେ ଦସ୍ୟୁ ଏକ ଚଳନ୍ତା ଟ୍ରେନ୍‌ରେ କିପରି ଡକାୟତି କରୁଛନ୍ତି ଏବଂ ପରେ ପରେ ଯଥାଯୁକ୍ତ ଶାସ୍ତି ପାଉଛନ୍ତି ତାହାଥିଲା ଏଇ କ୍ଷୁଦ୍ର ସିନେମାଟିର ବିଷୟ ବସ୍ତୁ । ସିନେମା ନିର୍ମାଣର କେତୋଟି ବିଶେଷତ୍ୱ (ଯଥା– ସଂପାଦନା, ଆଉଟ୍ ଡୋର ସୁଟିଂ ଇତ୍ୟାଦି) ଏଥିରେ ସଫଳ ରୂପେ ପ୍ରଥମ କରି ବ୍ୟବହାର ହୋଇଥିଲା ।

''ଦି ଗ୍ରେଟ୍ ଟ୍ରେନ୍ ରୋବେରୀ''ର ଜନପ୍ରିୟତା, ସିନେମା ନିର୍ମାତାମାନଙ୍କୁ କାହାଣୀ ସମ୍ବଳିତ ସିନେମା କରିବା ପାଇଁ ଉତ୍ସାହିତ କଲା । ଚାର୍ଲସ ଚାପ୍‌ଲିନ୍‌ଙ୍କ ପରି କେତେଜଣ ପ୍ରତିଭାବାନ୍ ଅଭିନେତା ଏହି ସଂଳାପହୀନ ସିନେମାର ଜନପ୍ରିୟତା ବଜାୟ ରଖି ପାରିଥିଲେ । କାହାଣୀ ସମ୍ବଳିତ ନିଃଶବ୍ଦ ଚଳଚ୍ଚିତ୍ର ବ୍ୟବସାୟରେ ୨୫ବର୍ଷ ରାଜୁତି କରିବା ପରେ ଆରମ୍ଭ ହୋଇଗଲା ''ଟକି'' ବା ସବାକ୍ ଚଳଚ୍ଚିତ୍ର ।

ଆମେରିକାର ଅନ୍ୟତମ ଅଗ୍ରଣୀ ସିନେମା ସଂସ୍ଥା ୱାରନେର ବ୍ରଦର୍ସ ୧୯୨୮ରେ ନିର୍ମାଣ କରିଥିଲେ ବିଧିବଦ୍ଧ ସଂଳାପ ଓ ସଂଗୀତ ମୁଖର ଚିତ୍ର ''ଦି ଲାଇଟ୍‌ସ୍ ଅଫ୍ ନ୍ୟୁୟର୍କ୍'' । ସଂଳାପ-ସମ୍ବଳିତ ସିନେମାର ଯୁଗ ସେହି ବର୍ଷ ଆରମ୍ଭ ହୋଇଥିଲେ ମଧ୍ୟ

୧୯୩୦ ଯାଏଁ ଅନେକ ସିନେମା ଶବ୍ଦ ଓ ସବାକ୍ ଉଭୟ ଶୈଳୀରେ ନିର୍ମାଣ କରାଯାଇଥିଲା ।

## ରଂଗୀନ ସିନେମା, ସିନେରାମା, ସିନେମାସ୍କୋପ୍, ଥ୍ରି-ଡ଼ି

ସିନେମା କାରିଗରୀର ଅଗ୍ରଗତିରେ ପରବର୍ତ୍ତି ମାଇଲ ଖୁଣ୍ଟ ହେଲା ରଂଗୀନ ଚଳଚ୍ଚିତ୍ର । ୧୯୩୫ ସାଲରେ ରୁବେନ ମେମୁଲିଏନ୍‌ଙ୍କ ''ବେକିସାର୍ପ'' ଥିଲା ପ୍ରଥମ ତ୍ରିରଙ୍ଗୀ ଚିତ୍ର । (ପୂର୍ବର କିଛି ଚିତ୍ର ଗୋଟିଏ ବା ଦୁଇଟି ରଂଗରେ ରଂଗୀନ୍ ହୋଇଥିଲା) ।

୧୯୩୯ ସାଲରେ ଜଗତ ଟେଲିଭିଜନ୍ ବା ଦୂରଦର୍ଶନ ଗଣମାଧମର ଆଗମନ ଦେଖିଲା । ଏହି ନୂତନ ଗଣମାଧମ କ୍ରମଶଃ ସିନେମାର ମନୋରଂଜନ ଚାହିଦା କେତେକାଂଶରେ ପୂରଣ କରି ଚଳଚ୍ଚିତ୍ର ପାଇଁ ଗୋଟାଏ ଚାଲେଞ୍ଜ ରୂପେ ବର୍ଷ କେତେଟାରେ ଛିଡ଼ା ହୋଇଗଲା । ଏଣୁ ସିନେମା କାରିଗରୀରେ ୧୯୫୨ ସାଲ ବେଳକୁ ବହୁ ପ୍ରକାରର ନୂତନତ୍ୱ ଦେଖାଦେଲା । ସିନେମା ଶିଳ୍ପର ପ୍ରଧାନ କେନ୍ଦ୍ର ସେତେବେଳକୁ ଥିଲା ହଲିଉଡ୍ ଏବଂ ''ସିନେମାସ୍କୋପ୍'', ''ଥ୍ରି-ଡ଼ି'', ''ସିନେରାମା'' ପ୍ରଭୃତି ଚଳଚ୍ଚିତ୍ର ଜଗତର ଉଦ୍ଭାବନ ଗୁଡ଼ିକ ପ୍ରଥମେ ସେଠାରୁ ଆରମ୍ଭ ହେଲା । ଦର୍ଶକମାନଙ୍କୁ ଚମତ୍କୃତ କରିଦେବା ଲକ୍ଷ୍ୟରେ ନିର୍ମିତ ହୋଇଥିଲା ''ଥ୍ରି-ଡ଼ି'' ( ବା ତିନି ପରିମାପକ ସିନେମା) । ଏହି ସିନେମାର ବିଶେଷତ୍ୱ ହେଉଛି ଯେ, ଏଥିରେ ପ୍ରଦର୍ଶିତ ହୋଇଥିବା ବସ୍ତୁଗୁଡ଼ିକ ଲମ୍ବା ଓ ପ୍ରସ୍ଥର ପରିମାପକରେ ସୀମିତ ନରହି ଭାରତା ଦ୍ୟୋତକ ହୋଇପାରେ । ସିନେମାର ଗୋଟିଏ ଚରିତ୍ର ଯଦି ବର୍ଚ୍ଛାଟିଏ ଫିଙ୍ଗେ, ଦର୍ଶକମାନେ ମନେ କରିବେ ସତେ ଯେମିତିକି ବର୍ଚ୍ଛାଟିଏ ସିନେମା ପରଦା ଭେଦ କରି ସେମାନଙ୍କ ଉପରକୁ ମାଡ଼ି ଆସୁଛି । ଦୁଇଟି କ୍ୟାମେରାରେ ନିର୍ଦ୍ଦିଷ୍ଟ ଦୂରରୁ ଏକା ଥରକେ ଚିତ୍ର ନେଇ ରିଲ୍ ଦୁଇଟିକୁ ଗୋଟାଏ ସ୍ୱତନ୍ତ୍ର ପ୍ରଜେକ୍ଟରରେ ଚଳାଇଲେ ଥ୍ରି-ଡ଼ି ସମ୍ଭବ ହୁଏ । ଏପରି ସିନେମା ଦେଖିବା ପାଇଁ ଦର୍ଶକମାନେ ଆଖିରେ ଗୋଟାଏ ପ୍ରକାରର ସ୍ୱତନ୍ତ୍ର ଗ୍ଲାସ ପିନ୍ଧନ୍ତି । ହଲିଉଡ୍ ନିର୍ମିତ ''ହାଉସ୍ ଅଫ୍ ୱାକସ୍'' ଥିଲା ପ୍ରଥମ ଥ୍ରି-ଡି ସିନେମା ।

ଚଳଚ୍ଚିତ୍ର କାରିଗରୀର ଅନ୍ୟ ଏକ ଚମକପ୍ରଦ ଅବଦାନ ସିନେରାମା ମଧ ସେତିକି ବେଳକୁ ହିଁ ଆତ୍ମପ୍ରକାଶ କରିଥିଲା । ସିନେରାମା ଦେଖିବା ବେଳେ ଦର୍ଶକ ମନେ କରେ ସତେ ଯେମିତିକି ଘଟଣା ଗୁଡ଼ିକ ମଝିରେ ସେ ବସିଛି । ଧରାଯାଉ, ଦୃଶ୍ୟରେ କାର୍ ଚାଲିଥିବା ଦେଖାଯାଉଛି । କାର୍‌ର ଅଗ୍ରଗତି ସହ ଦୁଇପଟର ଦୃଶ୍ୟାବଳୀ ପଛକୁ ଅପସରି ଯାଉଥିବା ମଧ ଦେଖାଯିବ । ଏଥିପାଇଁ ସିନେମା ପରଦାଟି ପ୍ରକୃତରେ ତିନି ଭାଗରେ ବିଭକ୍ତ ହୋଇଥାଏ । ତିନୋଟି କ୍ୟାମେରାରେ ଚିତ୍ର ଉତ୍ତୋଳିତ ହୋଇଥାଏ ଏବଂ ତିନୋଟି ପ୍ରଜେକ୍ଟର୍‌ରୁ ଏକାଥରେ ଚିତ୍ର ପସାରଣ ହୋଇ ପଦଦାର ତିନି ଅଂଶରେ ପଡ଼େ । ଅନ୍ୟ ଏକ ପ୍ରଜେକ୍ଟର ଶବ୍ଦ ଓ ସଂଳାପ ପାଇଁ ଉଦ୍ଦିଷ୍ଟ ରହେ । ଏସବୁ ଦ୍ୱାରା ସିନେମାରେ

ଘଟୁଥିବା ଘଟଣାମାନଙ୍କ ମଝିରେ ଥିବା ଭଳି ଦର୍ଶକ ଅନୁଭବ କରେ । ୧୯୫୨ରେ ''ଦିସ୍ ଇଜ୍ ସିନେରାମା'' ନାମକ କାହାଣୀ ସମ୍ବଳିତ ଚଳଚ୍ଚିତ୍ର ମୁକ୍ତି ପାଇ ପ୍ରବଳ ଦର୍ଶକ କୌତୂହଳୀ ସମ୍ଭବ କରିଥିଲା ।

ପ୍ରଥମ ରଂଗୀନ୍ ଚିତ୍ର ବହୁ ପୂର୍ବରୁ ପ୍ରସ୍ତୁତ ହୋଇଥିଲେ ମଧ୍ୟ ସେତେଯାଏଁ ଅଧିକାଂଶ ଚଳଚ୍ଚିତ୍ର କଳା-ଧଳା ଓ କିଛିଟା ରଂଗୀନ୍ ହେଉଥାଏ । କିନ୍ତୁ ଷଷ୍ଠ ଦଶକର ପ୍ରାରମ୍ଭରେ ପ୍ରାୟ ସମସ୍ତ ଚିତ୍ର ରଂଗୀନ ହୋଇ ନିର୍ମିତ ହେଲା । ସେହି ସମୟରେ ମଧ୍ୟ ଉଦ୍ଭାବିତ ହୋଇଥିଲା ''ସିନେମାସ୍କୋପ୍'' –ଚଳଚ୍ଚିତ୍ର ପ୍ରସାରଣକୁ ପରଦାରେ ପ୍ରଶସ୍ତ କରି ପ୍ରତି ଫଳିତ କରିବାର କୌଶଳ । ପ୍ରକୃତରେ ଏଥିପାଇଁ କୌଣସି ନୂତନ ଯନ୍ତ୍ର ଆବିଷ୍କାରର ଆବଶ୍ୟକତା ନଥିଲା; ଚିତ୍ର ଉତ୍ତୋଳନ ବେଳେ କ୍ୟାମେରା ଲେନ୍ସର କିଛି ଅଂଶ କୌଶଳର ସହ ଆବୃତ କରି ସିନେମାସ୍କୋପ୍ ସମ୍ଭବ ହେଲା । ଏହିପରି ଗୃହୀତ ଚିତ୍ର ପ୍ରସାରଣ ବେଳେ ପ୍ରଶସ୍ତତର ପ୍ରତୀତ ହୁଏ । ୧୯୩୫ରେ ପ୍ରଥମ ସିନେମାସ୍କୋପ୍ ''ଦି ରୋବ୍'' ନିର୍ମିତ ହୋଇଥିଲା । ପ୍ରଶସ୍ତ ପରଦାରେ ଚଳଚ୍ଚିତ୍ର ପ୍ରଦର୍ଶନ କରିବାର ଉଦ୍ୟମରୁ ମଧ୍ୟ ଜନ୍ମ ହେଲା, ''୫୦ ଏମ୍. ଏମ୍.'', ''୭୦ ଏମ୍. ଏମ୍.'', ପ୍ରଭୃତି । ଶିଳ୍ପ ରୂପେ, କଳା ରୂପେ ତିଷ୍ଠି ରହିବାକୁ ଏବଂ ଅଗ୍ରଗତି କରିବାକୁ ସିନେମାକୁ ସଦାବେଳେ ଅହରହ ସଂଗ୍ରାମ କରିବାକୁ ପଡ଼େ । ୧୯୩୯ରେ ପ୍ରଥମେ ଆତ୍ମପ୍ରକାଶ କରିଥିବା ଟେଲିଭିଜନ୍ ଏବେ ମଧ୍ୟ ସିନେମା ପାଇଁ ଖୁବ୍ ବଡ଼ ଗୋଟାଏ ଚାଲେଞ୍ଜ୍ । ପୁଣି ପରବର୍ତ୍ତୀ ସମୟରେ ଭିଡ଼ିଓ ଏହି ଚାଲେଞ୍ଜ୍‌କୁ ତୀବ୍ରତର କରିଛି । ଏପରି ଚାଲେଞ୍ଜ୍ ମାନଙ୍କର ସମ୍ମୁଖୀନ ହେବା ପାଇଁ ସିନେମା ତାର କାରିଗରୀରେ ୧୯୮୮ରେ ପୁଣି ଗୋଟାଏ ନୂତନତ୍ୱ ସମ୍ଭବ କରିଛି । ଏଇ ନୂତନତ୍ୱର ସ୍ୱାକ୍ଷର ବହନ କରିଥିବା ସିନେମାଟିର ନାମ ''ହୁ-ଫ୍ରେମ୍‌ଡ୍ ରଜେର୍ ରେବିଟ୍''–ହଲିଉଡ୍ ସ୍ୱପ୍ନ କାରଖାନାର ଅନ୍ୟତମ କୃତି । କାର୍ଟୁନ୍, କୃତ୍ରିମ ଜୀବ ଏବଂ ଅଭିନେତା-ଅଭିନେତ୍ରୀ ମାନଙ୍କୁ ଗ୍ରହଣ କରି ଏହି ସିନେମା ନିର୍ମିତ ।

ପ୍ରକୃତରେ କାର୍ଟୁନ ବ୍ୟବହାର କରି, କଣ୍ଢେଇ ବ୍ୟବହାର କରି ସିନେମା ନିର୍ମାଣ ନୂଆ ନୁହେଁ । ୧୯୧୭ ସାଲ୍‌ରେ ''ମାଟ୍ ଏଣ୍ଡ ଜେଫ୍'' ନାମକ କାର୍ଟୁନ୍ ସିନେମା ପ୍ରସ୍ତୁତ ହୋଇଥିଲା । ଖବର କାଗଜ ମାନଙ୍କରେ ପରିବେଷିତ କେତେକ କାର୍ଟୁନ୍ ଚରିତ୍ରକୁ ଆଧାର କରି ଏହି ଚଳଚ୍ଚିତ୍ରଟି ନିର୍ମିତ ହୋଇଥିଲା । କାଗଜ ଉପରେ ଅଙ୍କାଯାଉଥିବା ଚିତ୍ରାବଳି ଗ୍ରହଣ କରି କାର୍ଟୁନ ଚିତ୍ର ନିର୍ମିତ ହେଉଥିଲେ ବି ଏସବୁର ମନୋରଂଜନ ଶକ୍ତି ରହିଛି । କାର୍ଟୁନ ଯାନ୍ତ୍ରିକଜୀବ ଏବଂ ବାସ୍ତବ ଅଭିନେତା-ଅଭିନେତ୍ରୀଙ୍କୁ ନେଇ ଏକ ନୂଆ କିସମର ସ୍ୱତନ୍ତ୍ର କୌଶଳରେ ଭରପୂର ମନୋରଂଜନ ''ରୋଜେର୍ ରେବିଟ୍'' ଚଳଚ୍ଚିତ୍ର ଅଗଣିତ ଦର୍ଶକଙ୍କୁ ମୁଗ୍ଧ କରିଥିଲା । ବିଂଶ ଶତାବ୍ଦୀର ଶେଷ ଦଶକର ମଧ୍ୟ ଭାଗରେ କମ୍ପ୍ୟୁଟର ଗ୍ରାଫିକ୍ ସାହାଯ୍ୟରେ ସ୍ପିଏଲ୍‌ବର୍ଗ ସୃଷ୍ଟିକଲେ ''ଜୁରାସିକ୍ ପାର୍କ'' ନାମକ ଚମକପ୍ରଦ ଚଳଚ୍ଚିତ୍ର । ତଦ୍ୱାରା ଡାଇନୋସର୍ ଭଳି କେତୋଟି ପ୍ରାଗୈତିହାସିକ ଜୀବଙ୍କୁ ରୂପେଲି

ପରଦା ଉପରେ ଜୀବନ୍ତ କରି ଦେଖାଇବା ସମ୍ଭବ ହେଲା । ନିୟତ ବିପଦଗ୍ରସ୍ତ ଅଥଚ ସମ୍ଭାବନା ବହୁଳ ସିନେମା ଶିଳ୍ପ କିପରି କାରିଗରୀ-ଦକ୍ଷତା ସଂପନ୍ନ ହୋଇପାରେ ତାର ପ୍ରମାଣ ଷ୍ଟିଭେନ୍ ସ୍ପିଏଲବର୍ଗ ନିର୍ଦ୍ଦେଶିତ ଏଇ ସିନେମାଗୁଡ଼ିକ ।

## ବହମାନ ଚିତ୍ର - ୯ର

ଏଣୁ ଆମେ ଆଜି ଯେଉଁ ସିନେମା ଦେଖୁଛୁ, ହରେକ୍ ରଙ୍ଗ ବିଭବରେ ରଂଗୀନ, ସଂଳାପ-ମୁଖର, ସଂଗୀତ-ମଧୁର ଏବଂ ସ୍ୱତନ୍ତ୍ର କୌଶଳମାନଙ୍କ ଦ୍ୱରା କରାମତି ସଂପନ୍ନ, ତାହା ଅଭ୍ୟୁଦୋୟର ପଥ ଦେଇଆସିଛି....ସମୟର ଗତିରେ, ଧୀରେ ଧୀରେ ।

ତେବେ ସାର୍ଥକ ଚଳଚ୍ଚିତ୍ର ସୃଷ୍ଟି ଅର୍ଥାତ୍ କଳାତ୍ମକ ସିନେମାରେ ଦୁଇଟି ପ୍ରକ୍ରିୟାର ସଫଳ ସମିଶ୍ରଣ ହୋଇଥାଏ । ଏକ, ଯାନ୍ତ୍ରିକ ପ୍ରକ୍ରିୟା ଏବଂ ଦୁଇ କଳାତ୍ମିକତାର ପ୍ରକ୍ରିୟା । ସିନେମା ମାତ୍ରେ ହିଁ ଏକ ବିଜ୍ଞାନ ଆଶ୍ରିତ ଓ କାରିଗରୀ ଆଶ୍ରିତ କଳା ।

କିନ୍ତୁ କଳାତ୍ମିକତାର ମାନେ କ'ଣ ବୁଝିବା ଓ ବୁଝାଇବା ଆୟାସ ସାଧ୍ୟ । ଯେ କୌଣସି କଳାତ୍ମକ ସିନେମାର ସାରଟି ହେଲା—ଅନୁଭୂତିର ବାସ୍ତବଧର୍ମୀ ରୂପାୟନ । ସେ ଅନୁଭୂତି ନିତିଦିନିଆ ହୋଇପାରେ, ସେ ଅନୁଭୂତି ବି ଅସାଧାରଣ, ବୈଚିତ୍ର୍ୟମୟ ଓ ନାଟକୀୟ ହୋଇପାରେ । ପୃଥିବୀର ପ୍ରାୟ ସମସ୍ତ ପ୍ରଧାନ ସିନେମା ନିର୍ମାତା କଳାତ୍ମକ ସିନେମାର ଏହି ସର୍ବନିମ୍ନ ଆବଶ୍ୟକତା ପ୍ରତି ସଚେତନ । ଭାରତର ସର୍ବଶ୍ରେଷ୍ଠ ସିନେମା ନିର୍ମାତା ରୂପେ ବିଶ୍ୱବିଦିତ ସତ୍ୟଜିତ୍ ରାୟ କହିଛନ୍ତି ''ଜୀବନ ହିଁ ଚଳଚ୍ଚିତ୍ରର ଉପାଦାନ ''। (The raw material of the Cinema is life itself - Satyajit Ray, Our Film Their Film) । ମଣିଷର ହସ, କାନ୍ଦ, ସୁଖ, ଦୁଃଖ, ଆଶା, ନିରାଶା, ସ୍ୱପ୍ନ, ବିପର୍ଯ୍ୟୟ, ସଂକ୍ଷେପରେ ପୃଥିବୀରେ ମଣିଷ ଜୀବନର ହରେକ୍ କିସମ୍‌ର ଅନୁଭୂତି—କଳାତ୍ମକ ସିନେମାରେ ସ୍ଥାନ ପାଏ, ଠିକ୍ ଯେପରି ତାହା ସ୍ଥାନ ପାଏ ସାହିତ୍ୟରେ, ନାଟକରେ, ଚିତ୍ରକଳାରେ ବା ଅନ୍ୟ କଳା ମାନଙ୍କରେ ।

ଅବଶ୍ୟ ଜୀବନର ଏସବୁ ଅନୁଭୂତି ଚଳଚ୍ଚିତ୍ରରେ ରୂପ ପାଇବା ବେଳେ ସିନେମାର ସ୍ୱାତନ୍ତ୍ର୍ୟ ନେଇ ସେସବୁ ଆତ୍ମ-ପ୍ରକାଶ କରେ । ଯେପରି ପ୍ରତି କଳାର କିଛି ନା କିଛି ସ୍ୱାତନ୍ତ୍ର୍ୟ (ଯଥା ସଂଗୀତର ସ୍ୱର ବା ସାହିତ୍ୟର ଶବ୍ଦ ବ୍ୟଞ୍ଜନା) ରହିଛି, ସେହିପରି ସିନେମାର ମଧ୍ୟ ଗୋଟାଏ ସ୍ୱାତନ୍ତ୍ର୍ୟ ରହିଛି ଯେଉଁଥିରୁ ତାକୁ ଅନ୍ୟ କଳାଠାରୁ ପୃଥକ୍ କରିହୁଏ । ନାଟକ ପରିବେଷଣକୁ ଏକ ଯୌଥ କଳା ବୋଲି କୁହାଯାଏ । କାରଣ ଅଭିନୟ, ମଞ୍ଚସଜ୍ଜା, ସଂଗୀତ, ସାହିତ୍ୟ ପ୍ରଭୃତି ବହୁ କିସମର କଳା ସୃଷ୍ଟିରୁ ସମନ୍ୱୟ ଦ୍ୱାରା ନାଟକଟିଏର ପରିବେଷଣ ସମ୍ଭବ; କିନ୍ତୁ ସିନେମା ଏ ଦୃଷ୍ଟିରୁ ବରଂ ଆହୁରି ଅଧିକ ପ୍ରକାରର କଳାକାରଙ୍କ ସର୍ଜନା-ପ୍ରୟାସ ଆବଶ୍ୟକ କରେ । ସିନେମାରେ ସାହିତ୍ୟିକ ଲିଖିତ ସଂଳାପ ଥାଏ; ଅଭିନେତାର ଅଭିନୟ ଥାଏ ସଂଗୀତକାରର ସଂଗୀତ ଥାଏ,

ଚିତ୍ରଗ୍ରହଣକାରୀ ଅର୍ଥାତ୍ ଫୋଟଗ୍ରାଫର ଦ୍ୱାରା ଉତ୍ତୋଳିତ ଫୋଟ ଥାଏ । ଏଇ ଫୋଟ ଗୁଡ଼ିକ ମଧ୍ୟ ସ୍ଥିର ନୁହେଁ, ସଚଳ ଫୋଟ । ସଚଳ ଫୋଟର ଝର ବା ପ୍ରବାହ ହିଁ ଚଳଚ୍ଚିତ୍ରର ସବୁଠୁ ବଡ଼ ବିଶେଷତ୍ୱ । ବିଶ୍ୱ କବି ରବୀନ୍ଦ୍ରନାଥ ଠାକୁର ସଚଳ ଚିତ୍ରର ଏଇ ମାଧ୍ୟମ ସଂପର୍କରେ କହିଥିଲେ, ''ସିନେମାର ସବୁଠାରୁ ବଡ଼ ବିଶେଷତ୍ୱ ହେଲା, ସଚଳ ଚିତ୍ରମାନଙ୍କର ପ୍ରବାହ । ସିନେମା ସଫଳ ହୁଏ ଯେତେବେଳେ ସଚଳ ଚିତ୍ରମାନଙ୍କର ସୌନ୍ଦର୍ଯ୍ୟ ଓ ଗୁରୁତ୍ୱ କଥିତ ଭାଷାର ବିନା ଆଶ୍ରୟରେ ସ୍ୱୟଂ-ସଂପୂର୍ଣ୍ଣ ରୂପେ ଆତ୍ମପ୍ରକାଶ କରିପାରେ । ....ବହମାନ ଚିତ୍ରର ଝରଣା ଉନ୍ନତ କଳାରୂପେ କାହିଁକି ସଫଳ ନ ହେବ ଯେପରି କଥିତ ଶବ୍ଦର ବିନା ସାହଚର୍ଯ୍ୟରେ ସଙ୍ଗୀତ ସଫଳ ହୁଏ ?'' (The chief thing in a film is the flow of visual forms. It succeeds only when the beauty and worth of moving forms fully manifest itself independent of the spoken word...why should not the flowing stream of visuals succeeds as a sovereign art form even as music does without the help of words ? "Rabindranath Tagore" in his letter dated Dec. 26, 1927 to Murari Bhaduri.)

ସିନେମା ସଂପର୍କରେ ସତ୍ୟଜିତ ରାୟ ଓ ରବୀନ୍ଦ୍ରନାଥଙ୍କ ଉକ୍ତି ଦ୍ୱୟ ପ୍ରତିଧ୍ୱନିତ ହୋଇଛି ବଙ୍ଗୀୟ ଭାଷାର ଅନ୍ୟତମ ଏକନିଷ୍ଠ ସିନେମା ନିର୍ମାତା ଋତ୍ୱିକ ଘଟକଙ୍କ ଗୋଟିଏ ବକ୍ତବ୍ୟରେ ''ସିନେମା ଏବଂ ମୁଁ'' ନାମକ ଗୋଟିଏ ବହିରେ । ସେ କହିଛନ୍ତି : ''ପ୍ରବାହମାନ ଜୀବନର ସୂଅକୁ ଧରି ରଖି, ସିନେମାରେ ରୂପାୟିତ କରିବା ପାଇଁ, ଚଳଚ୍ଚିତ୍ରୀୟ ଉପାଦାନ ମାନଙ୍କର ସଂଯୋଜନାରେ ମୁଁ ବିଶ୍ୱାସ କରେ'' । (I believe in organising my filmic elements even if one wants to catch and portary the flow of life itself" - Ritwik Ghatak, Cinema and I) - 9, 1987

## ସିନେମାରେ ସଂଳାପର ଭୂମିକା

ସିନେମାର ଦୃଶ୍ୟ-ପ୍ରଧାନ ସ୍ୱରୂପ ସଂପର୍କରେ ଉପରୋକ୍ତ ମନ୍ତବ୍ୟ ଗୁଡ଼ିକ ଯେ ଖୁବ୍ ମୌଳିକ ତା' ନୁହେଁ । ସିନେମାର ଏକ ପୁରାତନ ନାମ ହେଲା, ''ବାୟୋସ୍କୋପ୍'' ଏବଂ ଏହି ଶବ୍ଦର ଆଭିଧାନିକ ଅର୍ଥ ହେଉଛି, ''ଜୀବନର ଦୃଶ୍ୟ'' । ଏଣୁ ଯେଉଁ ବିଷୟ ବସ୍ତୁକୁ ଦୃଶ୍ୟମାନଙ୍କ ମଧ୍ୟରେ ଫୁଟାଇବା ସମ୍ଭବ ନୁହେଁ ତାହା ସିନେମା ପାଇଁ ଅନୁପଯୁକ୍ତ । କବିତା, ଉପନ୍ୟାସ ପ୍ରଭୃତିରେ ସୂକ୍ଷ୍ମ ଦାର୍ଶନିକ ଚିନ୍ତା ମର୍ମରୀତ କରିବା ସମ୍ଭବ; କିନ୍ତୁ ସୂକ୍ଷ୍ମ ଚିନ୍ତାର ଯଥାର୍ଥ ମାଧ୍ୟମ ସିନେମା ନୁହେଁ । ଯେଉଁ କାହାଣୀର ସାରକଥାଟି ଦୃଶ୍ୟ ମାଧ୍ୟମରେ ପ୍ରକାଶ କରାଯାଇ ପାରିବନି, ସେପରି କାହାଣୀର କ୍ଷେତ୍ର ଚଳଚ୍ଚିତ୍ର ନୁହେଁ । ଚଳଚ୍ଚିତ୍ରରେ ଅବଶ୍ୟ ସଂଳାପ, ଶବ୍ଦ ଓ ସଂଗୀତ ଥାଏ, କିନ୍ତୁ ସେସବୁ ଚିତ୍ରମାନଙ୍କ ଠାରୁ ଅଧିକ ପ୍ରାଧାନ୍ୟ ହାସଲ କରିବା ଉକ୍ତ ମାଧ୍ୟମ ପାଇଁ ହାନିକାରକ । ସେହି ଉପାଦାନ ଗୁଡ଼ିକ ବରଂ ଚିତ୍ରମାନଙ୍କର ସହାୟକ ହୋଇ ସେମାନଙ୍କର ମୂଲ୍ୟ ବଢ଼ାଇବା ପାଇଁ ଉଦ୍ଦିଷ୍ଟ । ଏ ପରିପ୍ରେକ୍ଷୀରେ ପ୍ରସିଦ୍ଧ ଋଷ୍ ନିର୍ଦ୍ଦେଶକ ପୁଡ଼ଭେକିନ୍‌ଙ୍କ ଉକ୍ତି ଉଲ୍ଲେଖଯୋଗ୍ୟ । ସେ

କହିଛନ୍ତି, ''ଚଳଚ୍ଚିତ୍ରରେ ଶବ୍ଦ ଓ ମଣିଷ ମାନଙ୍କ ସଂଳାପକୁ ସାହିତ୍ୟିକ ସୃଷ୍ଟି ରୂପେ ବ୍ୟବହାର କରିବା ଅନୁଚିତ୍। ବରଂ ଶବ୍ଦ ଓ ସଂଳାପ ପରଦାରେ ଉଦ୍‌ଭାସିତ ହେଉଥିବା ଚିତ୍ରମାନଙ୍କର ପରିପୂରକ ରୂପେ ଉଦ୍ଦିଷ୍ଟ ହେବା ଉଚିତ୍।''

("Sounds and human speech should be used by the director not as a literal accomplishment but to amplify and enrich the visual image on the screen")

## ନିର୍ଦ୍ଦେଶକର ମାଧ୍ୟମ

ଉପରୋକ୍ତ ମନ୍ତବ୍ୟରୁ ସ୍ପଷ୍ଟ ଯେ ବହୁ ପ୍ରକାରର ଉପାଦାନର ସମନ୍ୱୟରେ ହିଁ ସିନେମା ସମ୍ଭବ ହୁଏ। ତେବେ ନିର୍ଦ୍ଦେଶକର ସୃଜନଶୀଳତା ଏହି ସମସ୍ତ ଉପାଦାନକୁ କଳାତ୍ମକ ରୂପ ଦିଏ। ଅନ୍ୟତମ ବିଶ୍ୱ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା ଆକିରା କୁରୋସଓ୍ୱା କହିଛନ୍ତି, ''କୌଣସି ଏକ ସମୟରେ କୌଣସି ଏକ ବକ୍ତବ୍ୟ ପ୍ରକାଶ ଇଚ୍ଛାରୁ ହିଁ ଜନ୍ମ ନିଏ ମୋର ସିନେମା। କିଛି ଏକ ରୂପାୟିତ କରିବାର ଅନ୍ତଃ ଆବଶ୍ୟକତା ମୋର ସିନେମା ନିର୍ମାଣ ଯୋଜନାର ମୂଳରେ ଥାଏ। ଚିତ୍ରନାଟ୍ୟ ଏହି ମୂଳଟିକୁ ପରିପୁଷ୍ଟ କରେ; ତାକୁ ବୃକ୍ଷ ହେବାରେ ସାହାଯ୍ୟ କରେ। ଏଇ ବୃକ୍ଷଟିରେ ଫୁଲ ଓ ଫଳ ଧରିବାରେ ସାହାଯ୍ୟ କରେ ନିର୍ଦ୍ଦେଶନା।'' ("My films emerge from my own desire to say a particular thing at a particular time. The root of any film project for me is this inner need to express something. What nurtures this root and makes it grow into a tree is the script. What makes the tree bear flowers and fruit is the directing". - Akira Kurosowa)

ନିର୍ଦ୍ଦେଶକ କୁରୋସଓ୍ୱା ତାଙ୍କର ଏଇ ବକ୍ତବ୍ୟରେ ଏକ ଅତି ସରଳ ଅଥଚ ସୁନ୍ଦର ତୁଳନା ଦ୍ୱାରା ସିନେମା ନିର୍ମାଣର କିଛି ଦିଗ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି। ସେ ଚଳଚ୍ଚିତ୍ରକୁ ତୁଳନା କରିଛନ୍ତି ପୁଷ୍ପ, ଫଳ ଭରା ଗୋଟାଏ ବୃକ୍ଷ ସହ। ଏଇ ବୃକ୍ଷର ମୂଳ ବା ପ୍ରାଣବିନ୍ଦୁଟି ହେଉଛି ବକ୍ତବ୍ୟ ବା ବିଷୟବସ୍ତୁ ବା କାହାଣୀ। ଚିତ୍ରନାଟ୍ୟ ଏହି ପ୍ରାଣରସ ବା ମୂଳଟିର ଅଭିବୃଦ୍ଧି ପାଇଁ ସାହାଯ୍ୟ କରେ। ଗଛର ଗଣ୍ଡି, ତାର ଶାଖାପ୍ରଶାଖା ଓ କିଶଳୟକୁ ଜନ୍ମଦିଏ ଚିତ୍ରନାଟ୍ୟ। କିନ୍ତୁ ଏଇ ବୃକ୍ଷରେ ପୁଷ୍ପ ଫୁଟାଏ, ଫଳ ଫଳାଏ ଯେଉଁ ସୃଜନଶୀଳତାର ସଲୀଳ ତାହା ହେଉଛି ନିର୍ଦ୍ଦେଶନା।:

ଗୋଟିଏ ବୃକ୍ଷର ସାର୍ଥକତାର ଶ୍ରେଷ୍ଠ ପରିମାପକ ତାର ଫୁଲ ଓ ଫଳ । ସିନେମା ରୂପକ ବୃକ୍ଷଟି କେଉଁ ପ୍ରକାରେ ସାର୍ଥକତା ପରିମଣ୍ଡିତ ହେବ ତାହା ନିର୍ଭର କରେ ନିର୍ଦ୍ଦେଶକ ଉପରେ। ଏଣୁ ସିନେମା ନିର୍ମାଣରେ ନିର୍ଦ୍ଦେଶକଙ୍କ ଭୂମିକା ଅନ୍ୟ ସମସ୍ତ ସୃଜନଶୀଳ ସହଯୋଗୀଙ୍କ ଅପେକ୍ଷା ଉର୍ଦ୍ଧ୍ୱରେ। ଚଳଚ୍ଚିତ୍ରକୁ ଏଥିପାଇଁ କୁହାଯାଏ ନିର୍ଦ୍ଦେଶକର ମାଧ୍ୟମ।

ତେବେ ନିର୍ଦ୍ଦେଶକଙ୍କର ଅନ୍ୟାନ୍ୟ ସୃଜନଶୀଳ ସହଯୋଗୀ, ଯଥା ଚିତ୍ରନାଟ୍ୟ, ଲେଖକ, କ୍ୟାମେରାମେନ୍, ସଂଗୀତ ନିର୍ଦ୍ଦେଶକ, ଚିତ୍ର ସଂପାଦକ, କଣ୍ଠଶିଳ୍ପୀ, ଅଭିନେତା,

କଳାନିର୍ଦ୍ଦେଶକ ପ୍ରଭୃତିଙ୍କର ଭୂମିକା ଯେ ନିହାତି ନଗଣ୍ୟ ତା' ନୁହେଁ। ଏଇ ପ୍ରତ୍ୟେକେ ଆଶାନୁରୂପ କଳାନିପୁଣତା ଫୁଟାଇ ପାରିଲେ ଛବିଟିଏ ସର୍ବାଙ୍ଗ ସୁନ୍ଦର ହୁଏ। ଏମିତି ବି ବେଳେ ବେଳେ ହୋଇପାରେ ଯେ ନିର୍ଦ୍ଦେଶକର ଦକ୍ଷତା ଅପେକ୍ଷା କୌଣସି ଚିତ୍ରରେ ତାଙ୍କ ଚିତ୍ରଗ୍ରହଣକାରୀଙ୍କ କରାମତି ଅଧିକ ଉନ୍ନତମାନର । ସେପରି କ୍ଷେତ୍ରରେ ଉକ୍ତ ସିନେମାଟି କେବଳ ଚିତ୍ର ଉତ୍ତୋଳନ ପାଇଁ ଉଲ୍ଲେଖନୀୟ ହୁଏ। ସେହିପରି କେବଳ ସଂଗୀତ ବା କଳା ନିର୍ଦ୍ଦେଶନା ବା ଅଭିନୟ ଦୃଷ୍ଟିରୁ କୌଣସି କୌଣସି ଚିତ୍ର ଉତ୍କୃଷ୍ଟ ବିବେଚିତ ହୋଇପାରେ। ତେବେ ଏହା ଅନସ୍ୱୀକାର୍ଯ୍ୟ ଯେ, ନିର୍ଦ୍ଦେଶକଙ୍କ ବ୍ୟକ୍ତିତ୍ୱର କିଛି ନା କିଛି ଛାପ ସିନେମା ନିର୍ମାଣର ସମସ୍ତ ବିଭାଗ ଉପରେ ରହିଯାଏ। ଏ ପରିପ୍ରେକ୍ଷୀରେ ଅନ୍ୟତମ ପ୍ରସିଦ୍ଧ ନିର୍ଦ୍ଦେଶକ ଷ୍ଟାନ୍‌ଲି କ୍ୟୁବ୍ରିକ୍‌ଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ। ସେ କହିଛନ୍ତି, ''ଜଣେ ନିର୍ଦ୍ଦେଶକ ରଚିବୋଧ ଓ ଚିନ୍ତାର ଏକପ୍ରକାର ଯନ୍ତ୍ର କହିଲେ, ଚଳେ। ସିନେମାଟିଏ ବହୁ ସୃଜନଶୀଳ ଓ କାରିଗରୀ ସିଦ୍ଧାନ୍ତର ସମନ୍ୱୟ ଏବଂ ନିର୍ଦ୍ଦେଶକକୁ ଠିକ୍ ସିଦ୍ଧାନ୍ତ ଗୁଡ଼ିକ ଘନଘନ ଗ୍ରହଣ କରିବାକୁ ହୁଏ। ("A director is a kind of Idea and taste machine. A movie is a series of Creative and technical decisions and it is the director's job to make the right decisions as frequently as possible." -Stanley Kubrick")

ଏଣୁ ଗୋଟିଏ ଚଳଚ୍ଚିତ୍ରକୁ ସିନେମା ଦୃଷ୍ଟିରୁ କଳାତ୍ମକ କରିବାକୁ ହେଲେ ନିର୍ଦ୍ଦେଶକର ସବୁଠାରୁ ବଡ଼ ଭୂମିକା ରହିଥାଏ। ଏ ଭୂମିକା କେବଳ ବିଭିନ୍ନ କିସମର ସୃଜନାତ୍ମକ ଓ ବୈଷୟିକ ବ୍ୟକ୍ତିଙ୍କୁ ପ୍ରଭାବିତ ଓ ନିୟନ୍ତ୍ରିତ କରିବାରେ ହିଁ ସୀମିତ ନୁହେଁ। ନିର୍ଦ୍ଦେଶକ ଯଦି ପ୍ରକୃତରେ ସୃଜନଶୀଳ ହୋଇଥାଆନ୍ତି—ନିଜ ବ୍ୟକ୍ତିତ୍ୱ ଓ ଇଚ୍ଛା-ମାନସର ବୈଶିଷ୍ଟ୍ୟ ମଧ୍ୟ ତାଙ୍କ ସିନେମା ସୃଷ୍ଟିକୁ ସ୍ୱାତନ୍ତ୍ର୍ୟ ଦିଏ। କେତେକଙ୍କ ମତରେ ଏହି ସ୍ୱାତନ୍ତ୍ର୍ୟ ଦ୍ୱାରା ହିଁ ସିନେମାଟିଏ କଳା ଦୃଷ୍ଟିରୁ ମୂଲ୍ୟବାନ ବିବେଚିତ ହୋଇପାରେ। ଏ ପରିପ୍ରେକ୍ଷୀରେ ଋତ୍ୱିକ୍ ଘଟକ୍‌ଙ୍କ ନିମ୍ନଲିଖିତ ମତ ଉଲ୍ଲେଖଯୋଗ୍ୟ: ''ସିନେମା ଯଥାର୍ଥରେ ବ୍ୟକ୍ତିଗତ ଅଭିମତ ବହନ କରେ। ଏହା ଯେ କୌଣସି କଳାକ୍ଷେତ୍ରରେ ପ୍ରଯୁଜ୍ୟ ...। ଶୈଳୀ ଓ ଅଭିମତ ନ ଥିବା କୃତିର କୌଣସି ବ୍ୟକ୍ତିତ୍ୱ ନ ଥାଏ ଏବଂ ବ୍ୟକ୍ତିତ୍ୱ ନ ଥିଲେ କୌଣସି ସୃଷ୍ଟି କଳା ନାମ ପାଇଁ ଯୋଗ୍ୟ ହୁଏ ନାହିଁ।'' ("Film is basically a matter of personal statement. All arts are ... Any work that lacks style and viewpoint necessarily lacks personality - and thereby ceases to be art. (Cinema and I" Rupa and Co) । ପୂର୍ବରୁ ଉଦ୍ଧାର କରାଯାଇଥିବା ଆକିରା କୁରୋସଓ୍ୱାଙ୍କ ''ବକ୍ତବ୍ୟ ପ୍ରକାଶ ଇଚ୍ଛାରୁ ହିଁ ମୋର ସିନେମା ଜନ୍ମ ନିଏ'' ଉକ୍ତି ଏପରି ମତର ପରିପୋଷକ। ଶୈଳୀର ସ୍ୱାତନ୍ତ୍ର୍ୟ ଓ ଅଭିମତର ବିଶେଷତ୍ୱ ହିଁ ଜଣେ ସିନେମା ସ୍ରଷ୍ଟାର ଚଳଚ୍ଚିତ୍ରକୁ ମର୍ଯ୍ୟାଦାବନ୍ତ କରିପାରେ।

## ସିନେମା ଶୈଳୀର ସ୍ୱରୂପ

କିନ୍ତୁ କ'ଣ ଏହି ଶୈଳୀ ଏବଂ ଶୈଳୀର ସ୍ୱାତନ୍ତ୍ର୍ୟ ? କେଉଁଥିରେ ନିହିତ ଶୈଳୀର ସ୍ୱରୂପ ? ଆଗରୁ କୁହାଯାଇଛି, ସିନେମାର ପ୍ରଧାନ ବିଶେଷତ୍ୱ ହେଉଛି ଚିତ୍ରାବଳୀର ସମନ୍ୱୟ ବା ଚିତ୍ରାବଳୀର ଝରଣା । ଏହି ସବୁ ଚିତ୍ର ମୁଭିକ୍ୟାମେରା ଦ୍ୱାରା ଏକାଥରେ ନିଆଯାଇ ନ ଥାଏ; ଟିକିଏ ଟିକିଏ କରି ବହୁ ସମୟରେ କାହାଣୀର ଆବଶ୍ୟକତା ମତେ ବିଭିନ୍ନ ସ୍ଥାନରେ ଚିତ୍ରସବୁ ନିଆଯାଇଥାଏ । ଗୋଟାଏ ଥରର ନିରବଚ୍ଛିନ୍ନ ଚିତ୍ର ଗ୍ରହଣକୁ କୁହାଯାଏ ''ସଟ୍'' । ସିନେମାଟିଏ ନିର୍ମାଣ ପାଇଁ ବହୁ ଶତ ସଟ୍, ଏପରିକି କେତେକ କ୍ଷେତ୍ରରେ କିଛି ହଜାର ସଟ୍ ବି ନିଆଯାଇଥାଏ । ସଟ୍ ପୁଣି ବିଭିନ୍ନ ପ୍ରକାରର । ''ଲଙ୍ଗ୍ ସଟ୍'' (ବା ଦୂରରୁ ନିଆଯାଇଥିବା ଚିତ୍ର); 'ମିଡ଼ିୟମ ସଟ୍'' (ବା କିଛି ଦୂରରୁ ନିଆଯାଇଥିବା ଚିତ୍ର) ଏବଂ କ୍ଲୋଜ୍ ଅପ୍ (ବା ଅତି ନିକଟରୁ ନିଆଯାଇଥିବା ଚିତ୍ର) । ଏହାଛଡ଼ା କ୍ୟାମେରା ଚଳାଇ ''ଟ୍ରଲି ସଟ୍'' ମଧ୍ୟ ନିଆଯାଏ । କ୍ୟାମେରା କ୍ରମଶଃ ତଳୁ ଉପରକୁ ଉଠାଇ ''ପେନିଙ୍ଗ୍ ଆପ୍'' ଏବଂ କ୍ୟାମେରା କ୍ରମଶଃ ଉପରୁ ତଳକୁ କରି ''ପେନିଂ ଡାଉନ୍'' ଦ୍ୱାରା ମଧ୍ୟ ସଟ୍ ନିଆଯାଏ । ଏହି ସମସ୍ତ ସଟ୍ ଓ ଅନ୍ୟାନ୍ୟ କାରିଗରୀ କୌଶଳ ବ୍ୟବହାର କରି ହିଁ ଚଳଚ୍ଚିତ୍ରଟିଏର ପରିପୂର୍ଣ୍ଣ ରୂପ ପ୍ରକାଶ ପାଏ । ଗୋଟାଏ ସଟ୍ ସହ ଆଉ ଗୋଟାଏ ସଟ୍ ଯୋଡ଼ିବାର କୌଶଳରୁ ହିଁ ଜନ୍ମ ନିଏ ଶୈଳୀ । ସଟ୍ ଗୁଡ଼ିକୁ ସଜାଇବାର ଏଇ କୌଶଳକୁ ''ମଣ୍ଟାଜ୍'' ବୋଲି କୁହାଯାଏ । (ଫରାସୀ ଶବ୍ଦ ''ମଣ୍ଟେର୍'' ରୁ ଏହାର ଉଦ୍ଭବ । ମଣ୍ଟେର୍‌ର ଅର୍ଥ ଯୋଡ଼ିବା, ଯୁକ୍ତ କରିବା) ।

ମଣ୍ଟାଜ୍ ଦୁଇ ପ୍ରକାରର । ଗୋଟିଏ ପ୍ରକାରର ମଣ୍ଟାଜ୍ ଦ୍ୱାରା କାହାଣୀର ଅଗ୍ରଗତି ପ୍ରଦର୍ଶିତ ହୁଏ । ଏକ ଦୃଶ୍ୟର ଅଗ୍ରଗତି ତଥା ଗୋଟାଏ ପରେ ଗୋଟାଏ ଦୃଶ୍ୟ ସର୍ଜନା କରିବା ପାଇଁ ଏ ପ୍ରକାରର ମଣ୍ଟାଜ୍ ବ୍ୟବହୃତ ହୋଇଥାଏ । କିନ୍ତୁ କାହାଣୀ ସହାୟକ ମଣ୍ଟାଜ୍ ହିଁ ଏକମାତ୍ର ମଣ୍ଟାଜ୍ ନୁହେଁ । ମଣ୍ଟାଜ୍‌ର ଏକ ଅଧିକ ସୃଜନଶୀଳ ବ୍ୟବହାର ମଧ୍ୟ ରହିଛି ।

ଏକକ ସଟ୍‌ମାନଙ୍କୁ ଏପରି ଯୋଡ଼ାଯାଇପାରେ ଯେ, ସେଇ ସଟ୍ ମାନଙ୍କର ସମାହାର ବିଶେଷ ଅର୍ଥଦ୍ୟୋତକ କିମ୍ବା ଭାବଦ୍ୟୋତକ ହୋଇପାରେ ଯାହା ଏକକ ସଟ୍‌ମାନଙ୍କରେ ନ ଥାଏ । ମଣ୍ଟାଜ୍ କେବଳ କାହାଣୀ ସହାୟକ ନୁହେଁ, କଳାତ୍ମକ ଅଭିବ୍ୟକ୍ତି ତଥା ବୁଦ୍ଧିଯୁକ୍ତ ଅଭିବ୍ୟକ୍ତି ପାଇଁ ମଧ୍ୟ ସହାୟକ ହୋଇପାରେ । କହିବା ଅନାବଶ୍ୟକ, ମଣ୍ଟାଜ୍ ସିନେମା ସଂପାଦନାର ଅନ୍ୟନାମ । ତିନୋଟି ସଟ୍‌ର ସମାହାର କିପରି ବିଶେଷ ଅର୍ଥଦ୍ୟୋତକ ହୋଇପାରେ, ସ୍ପଷ୍ଟ କରିବା ପାଇଁ ପ୍ରସିଦ୍ଧ ସୋଭିଏତ ନିର୍ଦ୍ଦେଶକ ଆଇସେନ୍‌ଷ୍ଟାଇନ୍ ତାଙ୍କ ନିଜ ସିନେମାରୁ ଗୋଟାଏ ଉଦାହରଣ ଦେଇଛନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଋଷିଆର ଅବିସ୍ମରଣୀୟ ଚଳଚ୍ଚିତ୍ର ନିର୍ମାତା ସେର୍‌ଗେଇ ଆଇସେନ୍‌ଷ୍ଟାଇନ୍ ସିନେମାର ସୃଜନଶୀଳ ବ୍ୟବହାର ପାଇଁ ଉଦ୍ୟମ କରିଥିଲେ । ତାଙ୍କର ପ୍ରଧାନ କୃତି ଗୁଡ଼ିକ ହେଲା : ''ଷ୍ଟ୍ରାଇକ୍'' (୧୯୨୪), ''ବେଟେଲ୍‌ସିପ୍ ପଟେମ୍‌କିନ୍'' (୧୯୨୫), ''ଅକ୍ଟୋବର'' (୧୯୨୮), ''ଓଲଡ୍ ଏଣ୍ଡ ନ୍ୟୁ'' (୧୯୨୯), ''ଥାଣ୍ଡେର୍ ଓଭେର୍ ମେକ୍‌ସିକୋ'' (୧୯୩୩), ''ଆଲେକ୍‌ଜାଣ୍ଡାର ନେଭ୍‌ସ୍କି'' (୧୯୩୮) ଏବଂ ''ଇଭାନ ଦି ଟେରିବେଲ୍'' (୧୯୪୬) । ଏ ଗୁଡ଼ିକରେ କଳା ସର୍ଜନା ସଙ୍ଗେ ସଙ୍ଗେ ଆଇସେନ୍‌ଷ୍ଟାଇନ୍ ଚଳଚ୍ଚିତ୍ର ସଂପର୍କୀୟ ତତ୍ତ୍ୱ ମଧ୍ୟ ପ୍ରତିଫଳିତ କରାଇ ପାରିଥିଲେ । ସିନେମା ସମାଲୋଚକମାନେ ତାଙ୍କର ଶ୍ରେଷ୍ଠ କୃତି ରୂପେ ''ବେଟେଲ୍‌ସିପ୍ ପଟେମ୍‌କିନ୍''କୁ ଉଲ୍ଲେଖ କରନ୍ତି ।

ଆଇସେନ୍‌ଷ୍ଟାଇନ୍ ସେଇ ସିନେମାଟିରେ ଶ୍ରମିକମାନଙ୍କ ଜାଗରଣ ଓ ଅତ୍ୟାଚାରୀ ଜାର ବାହିନୀ ବିରୁଦ୍ଧରେ ପ୍ରତିଆକ୍ରମଣ ଘଟଣାବଳୀ ଉପସ୍ଥାପିତ କରିଛନ୍ତି । ପଟେମ୍‌କିନ୍ ନାମକ ଯୁଦ୍ଧ ଜାହାଜର ଶ୍ରମିକମାନଙ୍କୁ ପୋକଥିବା ରୋଟି ଖାଇବାକୁ ଦିଆଯାଇଛି ଅଥଚ ସେମାନଙ୍କ ପ୍ରତିବାଦର ଉତ୍ତର ସ୍ୱରୂପ ଗୁଳି ଚଳା ଯାଉଛି । ଏହାଦ୍ୱାରା କେତେକ ଶ୍ରମିକ ପ୍ରାଣ ହାରାଉଛନ୍ତି । ପାଞ୍ଚ ଭାଗରେ ବିଭକ୍ତ ଏହି ଚଳଚ୍ଚିତ୍ରର ଶେଷ ଭାଗରେ ଶ୍ରମିକ ଶକ୍ତିର ସକ୍ରିୟ ଜାଗରଣ ଦେଖାଯାଇଛି । ଏହି ଜାଗରଣକୁ ଚଳଚ୍ଚିତ୍ର ନିର୍ମାତା ଗୋଟାଏ ମଣ୍ଟାଜ୍ କୌଶଳ ଦ୍ୱାରା ଉପସ୍ଥାପିତ କରିଛନ୍ତି । ତିନୋଟି ସଟ୍ ଏକାଦିକ୍ରମେ ସେ କିପରି ବ୍ୟବହାର କରିଛନ୍ତି ତାହା ତାଙ୍କର ବହି **ସିନେମାର କଳେବର** (Film Form)ବହିରେ ନିମ୍ନ ପ୍ରକାରେ ବର୍ଣ୍ଣନା କରିଛନ୍ତି:

''ପଟେମ୍‌କିନ୍‌ର ତୋପ ଗର୍ଜନ ଦ୍ୱାରା ଗୋଟାଏ ମାର୍ବଲ ସିଂହ ସଜାଗ ହୋଇ ଲମ୍ଫ ପ୍ରଦାନ କରୁଛି, ସେ ଡେଉଁଛି ଓଡ଼େଶା ଜାହାଜରେ ଘଟିଥିବା ରକ୍ତପାତର ପ୍ରତିବାଦ କରିବା ପାଇଁ । ଏଇ ସଜାଗ ହୋଇ ଡେଉଁଥିବା ସିଂହ ତିନି ଗୋଟି ଭିନ୍ନ ଭିନ୍ନ ସଟ୍ ଦ୍ୱାରା ସମ୍ଭବ ହୋଇଥିଲା । କ୍ରିମିଆର ଆଲୁପ୍‌କା ରାଜ ପ୍ରସାଦରେ ତିନିଗୋଟି ମାର୍ବଲ ସିଂହ ମୂର୍ତ୍ତି ରହିଛି । ଏହି ମୂର୍ତ୍ତି ତିନୋଟି ଭିନ୍ନ ଭିନ୍ନ ଭଙ୍ଗୀରେ ରହିଛନ୍ତି । ଗୋଟିଏ ରହିଛି ଶୋଇଥିବା ଭଙ୍ଗୀରେ, ଗୋଟିଏ ଉଠୁଥିବା ଭଙ୍ଗୀରେ ଏବଂ ତୃତୀୟଟି ଡେଉଁଥିବା ଭଙ୍ଗୀରେ । ଦୃଶ୍ୟଟି ଦ୍ୱାରା ଯଥାଯଥ ପ୍ରଭାବ ସୃଷ୍ଟି ପାଇଁ ଦ୍ୱିତୀୟ ସଟ୍‌ଟିକୁ ଯେତିକି ଲମ୍ବା କରାଯିବା ଆବଶ୍ୟକ, ତାହା ସୁଚିନ୍ତିତ ରୂପେ କରାଯାଇଛି । ପ୍ରଥମ ସଟ୍ (ଅର୍ଥାତ୍ ଶୋଇଥିବା ସିଂହର ଚିତ୍ର) ଉପରେ ଏହି ଦ୍ୱିତୀୟ ସଟ୍‌ଟିର ଆରୋପଣ ('ସୁପର ଇମ୍ପୋଜିସନ୍') ଦ୍ୱାରା ପ୍ରଥମ ପ୍ରତିକ୍ରିୟା ସମ୍ଭବ ହେଉଛି । ଦର୍ଶକ ମନରେ ସିଂହର ଦ୍ୱିତୀୟ ଅବସ୍ଥା (ବା ସଜାଗ ହେବା କ୍ରିୟା) ଦର୍ଶାଇବା ପାଇଁ ସେହି ଲମ୍ବା ସଟ୍‌ର ସାହାଯ୍ୟ ନିଆଯାଇଛି । ଏହି ଦ୍ୱିତୀୟ ଅବସ୍ଥାର ସଟ୍ ଉପରେ ତୃତୀୟ ଅବସ୍ଥା 'ଲମ୍ଫ ପ୍ରଦାନ କରୁଥିବା ସିଂହର ସଟ୍' ଆରୋପଣ ଦ୍ୱାରା ପରବର୍ତ୍ତୀ କ୍ରିୟା ସୃଷ୍ଟି ହୋଇଛି, ଅର୍ଥାତ୍ ସିଂହ ଶେଷରେ ଡେଇଁଥିବା ଦେଖାଯାଇଛି ।''

ଆଇସେନ୍‌ଷ୍ଟାଇନ୍ ତାଙ୍କ **ଚଳଚ୍ଚିତ୍ରର ଅବୟବ** (ଫିଲ୍ମ ଫୋର୍ମ) ବହିରେ ଅନ୍ୟତ୍ର କହିଛନ୍ତି ''ମଣ୍ଟାଜ୍ ଯଦି କାହା ସହ ତୁଳନୀୟ ହୋଇପାରେ ତା 'କମ୍ବାଷ୍ଟନ୍ ଇଂଜିନ୍'ର କ୍ରମାଗତ ବିସ୍ଫୋରଣ ସହ ତୁଳନୀୟ। ଏଇ ଅର୍ନ୍ତନିହିତ କ୍ରମାଗତ ବିସ୍ଫୋରଣ ଦ୍ୱାରା ମଟର ଗାଡ଼ି କିମ୍ବା ଟ୍ରାକ୍ଟର ଗତିଶୀଳ ହୁଏ। ସେହିପରି ମଣ୍ଟାଜ୍‌ର ଗତିଶୀଳତା ଚଳଚ୍ଚିତ୍ରର ପ୍ରାଣସ୍ପନ୍ଦନ ପରି କାମ କରି ସମଗ୍ର ସିନେମାର ଅଗ୍ରଗତି କରାଏ।'' (" If montage is to be compared with something it should be compared to the series of explosions of an internal combustion engine, driving forward its automobile or tractor; for similarly the dynamics of montage serve as impulses driving forward the total film").

## ଚିତ୍ରର ଯାଦୁ ଶକ୍ତି

ସିନେମା ମାଧ୍ୟମର ଅନ୍ୟ ଏକ ବିଶେଷତ୍ୱ ହେଲା ଯେ, ସାଧାରଣ ଦର୍ଶକମାନଙ୍କୁ ଏହା ଅତି ସହଜରେ ଆକର୍ଷିତ କରିପାରେ। ଚିତ୍ର ଓ ଶବ୍ଦ (ବା ସଂଗୀତ)ର ଏକକାଳୀନ ପ୍ରଦର୍ଶନ ଚଳଚ୍ଚିତ୍ରର ଆକର୍ଷଣ ଶକ୍ତି ବଢ଼ାଏ। ତେବେ ପୂର୍ବରୁ ଯାହା କୁହାଯାଇଛି - ଚିତ୍ର ସିନେମାର ପ୍ରଧାନ ବିଶେଷତ୍ୱ ଏବଂ ସିନେମାର ଚିତ୍ରଗୁଡ଼ିକ ବାସ୍ତବ ଜୀବନରେ ଆମେ ଦେଖୁଥିବା ବସ୍ତୁ, ପ୍ରାଣୀ ବା ବୃକ୍ଷର କେବଳ ଅବିକଳ ପ୍ରତିବିମ୍ବ ନୁହେଁ; ତା ଠାରୁ କିଛି ପୃଥକ ଓ ସ୍ୱାତନ୍ତ୍ର୍ୟ ସମ୍ପନ୍ନ। ଆକୃତି ଦୃଷ୍ଟିରୁ ଅବଶ୍ୟ ସିନେମାର ଚିତ୍ରଗୁଡ଼ିକ ବାସ୍ତବ ଜଗତର ବସ୍ତୁ, ପ୍ରାଣୀ, ବୃକ୍ଷର ଆକୃତି ପରି। କିନ୍ତୁ ଯେଉଁ ଉଜ୍ଜଳ ଆଲୋକ ଦ୍ୱାରା ଏ ସମସ୍ତ ପରଦାରେ ଝଲସିତ ହୁଅନ୍ତି ତା ଦ୍ୱାରା ଏ ସମସ୍ତଙ୍କର ଆକୃତି ଆପେ ଆପେ ଅଧିକ ମନୋରମ ହୋଇଯାଏ। ତାପରେ ଯେ କୌଣସି ବସ୍ତୁ (ବାସ୍ତବ ଜଗତରେ ଯେତେ ଅବିଚଳ ଥିଲେ ମଧ) ସିନେମା ପରଦାରେ ଗତିଶୀଳ କରି ପ୍ରଦର୍ଶିତ ହୋଇପାରେ। ପାହାଡ଼ଟିଏ ସ୍ଥିର ଥିଲେ ମଧ, ସିନେମା ପରଦାରେ ତାର ଚିତ୍ରକୁ ଗତିଶୀଳ କରି ଦେଖାଯାଇପାରେ। ସିନେମା ଚିତ୍ରର ଉଜ୍ଜଳତା ସହ ଗତିଶୀଳତା ଚଳଚ୍ଚିତ୍ରର ଯାଦୁକାରୀ ଗୁଣ ଅନେକାଂଶରେ ବଢ଼େଇ ଦେବାରେ ସାହାଯ୍ୟ କରେ। ପୁଣି ସିନେମା ଚିତ୍ର ବ୍ୟବହାରରେ ଗୋଟିଏ ସୁବିଧା ହେଉଛି ଯେ, ଚଳଚ୍ଚିତ୍ର ନିର୍ମାତା ଯେଉଁ ବସ୍ତୁଟି ପ୍ରତି ଦର୍ଶକର ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ, କେବଳ ସେଇ ଜିନିଷଟିର ନିକଟ ଚିତ୍ର ''କ୍ଲୋଜ୍ ଅପ୍'' ଦେଇ ଦର୍ଶକ ଦୃଷ୍ଟି ସମ୍ମୁଖରୁ ଅନ୍ୟ ସମସ୍ତ ହଟାଇ ଦେଇପାରେ। ବାସ୍ତବ ଜୀବନରେ ମଣିଷର ମନ ଚାହିଁଲେ ଏକାଗ୍ରତା ଦ୍ୱାରା ହିଁ ଏହା ସମ୍ଭବ, କିନ୍ତୁ ସିନେମାରେ ଚିତ୍ରଦ୍ୱାରା ମିଣିଷର ମନକୁ ନିୟନ୍ତ୍ରିତ କରିଦିଆଯାଇପାରେ। ସିନେମା ଚିତ୍ରର ଏଇସବୁ ଗୁଣ ବା ଅବିଗୁଣ ଚଳଚ୍ଚିତ୍ରର ଯେତିକି ସହାୟକ ସେତିକି ବିପଦର ହେତୁ ବି ହୋଇଥାଏ।

ଏଣୁ ମନେ ରଖିବା ଉଚିତ୍ ଯେ ଚଳଚ୍ଚିତ୍ରର ଏସବୁ ବୈଶିଷ୍ଟ୍ୟ ଯୋଗୁଁ ସିନେମା ଅତି ଶସ୍ତା ମନୋରଂଜନରେ ପର୍ଯ୍ୟବେସିତ ହୋଇଯାଇପାରେ। ଫଳତଃ ବହୁଳଭାବେ ସିନେମା ତାହା ହିଁ ହୋଇଛି। ପୃଥିବୀରେ ପ୍ରତିବର୍ଷ ଯେଉଁ କେତେ ହଜାର ଚଳଚ୍ଚିତ୍ର

ନିର୍ମିତ ହୁଏ ସେଥିରୁ ଏକ ଶତାଂଶ ବି କଳାତ୍ମକ ହେଉଥିବ କି ନାହିଁ ସନ୍ଦେହ । ଅଧିକାଂଶ ସିନେମା ଦର୍ଶକଙ୍କୁ ଆକୃଷ୍ଟ କରି ଆମୋଦିତ କରି ସହଜ ଅର୍ଥ ପାଇଁ ଉଦ୍ଦିଷ୍ଟ ।

## କଳାତ୍ମକ ଚଳଚ୍ଚିତ୍ର କ'ଣ ?

ଏଠାରେ ହୁଏତ ଏକ ଅପରିହାର୍ଯ୍ୟ ପ୍ରଶ୍ନ ଉଠିପାରେ ଯେ, ସିନେମାଟିଏ ଦର୍ଶକଙ୍କ ମନୋରଂଜନ କଲେ ତାହା କଣ କଳାତ୍ମକ ହୋଇ ନ ପାରେ ? କଳାତ୍ମକ ସିନେମାର କିଛି ଗୋଟାଏ ସଜ୍ଞା ଥାଇପାରେ କି ?

ଏପରି ଏକ ସଜ୍ଞା ନିରୂପଣ ଅବଶ୍ୟ ସହଜ ନୁହେଁ । ତେବେ ଟିକିଏ ବିଶ୍ଳେଷଣାତ୍ମକ ମନ ନେଇ ସିନେମା ଦେଖିଲେ କଳାତ୍ମକ ଚଳଚ୍ଚିତ୍ରର ବିଶେଷତ୍ୱ ହୃଦ୍‌ବୋଧ କରିହୁଏ । ପ୍ରଧାନ କଥା ହେଲା ଯେ, ଯେଉଁ ପ୍ରାଣବସ୍ତୁ କଳାତ୍ମକ କଥାଚିତ୍ରର ଉପଜୀବ୍ୟ ସେଇ ପ୍ରାଣବସ୍ତୁ (ବା ବିଷୟ ବସ୍ତୁ)ର ସ୍ୱରୂପ ଉଦ୍‌ଘାଟନ ଲକ୍ଷ୍ୟରେ ତାହା ନିର୍ମିତ ହୋଇଥାଏ । ଏପରି ସିନେମା ସଚଳଚିତ୍ର ମାନଙ୍କ ଦ୍ୱାରା ବାସ୍ତବତା ରୂପାୟିତ କରେ (ତାହା ସାମାଜିକ ବ୍ୟକ୍ତି-କେନ୍ଦ୍ରିକ, ଐତିହାସିକ, ଏପରିକି ପଶୁପକ୍ଷୀ ବୃକ୍ଷ ସଂପର୍କୀୟ ହୋଇପାରେ)ବାସ୍ତବ ଜୀବନର ଆଲେଖ୍ୟ ଦିଏ ।

କିନ୍ତୁ ଦର୍ଶକମାନଙ୍କୁ ଆମୋଦିତ କରିବା ପାଇଁ ଉଦ୍‌ଯୋଗ କରିଥିବା ଚିତ୍ର ନିର୍ମାତାମାନଙ୍କ ଆଭିମୁଖ୍ୟ ଠିକ୍ ବିପରୀତ । ବାସ୍ତବତାର ସ୍ୱରୂପ ଉଦ୍‌ଘାଟନ ନୁହେଁ ବାସ୍ତବତାରୁ ପଳାୟନ ହିଁ ଏପରି ନିର୍ମାତାମାନଙ୍କ ସିନେମାର ଆଭିମୁଖ୍ୟ । ସେ ସବୁ ଚିତ୍ରପାଇଁ ଯେଉଁ ବିଷୟବସ୍ତୁ ନିରୂପିତ ହୋଇଥାଏ ତାର ବିଭିନ୍ନ ଦିଗ ରୂପେଲି ପରଦାରେ ଫୁଟାଇ ଦର୍ଶକଙ୍କୁ ସେସବୁ ପ୍ରତି ସଚେତନ କରାଇବାର ଅଭିଳାଷ ଏଥିରେ ନ ଥାଏ । ଏଭଳି ଚିତ୍ରର ନିର୍ମାତାମାନେ ବରଂ ବିଷୟବସ୍ତୁର ସେଇ ଦିଗଟି ପ୍ରତି ଦୃଷ୍ଟି ଦେଇଥାଆନ୍ତି ଯାହାକୁ ଅତିରଂଜିତ କରି ପ୍ରଦର୍ଶିତ କଲେ ଦର୍ଶକମାନେ ତାର ମାଦକତାରେ ସବୁ କିଛି ଭୁଲି ଆମୋଦିତ ହେବେ । କଳାତ୍ମକ ସିନେମା ବାସ୍ତବତା ପ୍ରତି ସଚେତନ କରେ; ବ୍ୟବସାୟ ବା ମନୋରଂଜନ ଲକ୍ଷ୍ୟରେ ନିର୍ମିତ ଚଳଚ୍ଚିତ୍ର ଦର୍ଶକଙ୍କ ଆତ୍ମବିସ୍ମୃତି ଘଟାଇବା ପାଇଁ ଅଭିପ୍ରେତ । ଦର୍ଶକମାନଙ୍କୁ ହରେକ୍ ପ୍ରକାରେ ଚମତ୍କୃତ କରିବା ଏବଂ ଆମୋଦିତ କରିବା ଏହି ଦ୍ୱିତୀୟୋକ୍ତ ସିନେମାର ଉଦ୍ଦେଶ୍ୟ । ମୁଭି-କ୍ୟାମେରାର କୌଶଳ, ଚିତ୍ର ସମ୍ପାଦନାର କୌଶଳ, ପରଦାରେ ଉଦ୍‌ଭାସିତ ହେଉଥିବା ଉଜ୍ଜଳ ପ୍ରତିବିମ୍ବ, ସଂଗୀତର ସ୍ୱର ଲହରୀ ପ୍ରଭୃତି ସିନେମା ଜଗତର ସପନ-ବଣିକ ମାନଙ୍କ ପାଇଁ ଖୁବ୍ ସହାୟକ ହୋଇଥାଏ ।

## ସ୍ପେସେଲ୍ ଏଫେକ୍ଟ (ବିଶେଷ କରାମତି)

କେବଳ ଏତିକି ନୁହେଁ, ଦର୍ଶକମାନଙ୍କୁ ଚମତ୍କୃତ କରିଦେବା ପାଇଁ ସିନେମା ନିର୍ମାତାମାନେ ଅନ୍ୟ ଏକ କୌଶଳ ଅବଲମ୍ବନ କରନ୍ତି ଯାହାକୁ ''ସ୍ପେସେଲ୍ ଏଫେକ୍ଟସ୍''

(ବିଶେଷ କରାମତି) କୁହାଯାଏ । ବିଶେଷ କରାମତି ଦ୍ୱାରା ସିନେମା ପରଦାରେ ବହୁ ଅଦ୍ଭୁତ କଥା ଦେଖାଇବା ସମ୍ଭବ ହୁଏ; ମହାନଗର ଉପରେ ପକ୍ଷୀଟିଏ ପରି ଉଡ଼ିପାରେ ମଣିଷ; ଛ'ଫୁଟ ଉଚ୍ଚର ମଣିଷ ଛ' ଇଞ୍ଚ ଉଚ୍ଚା ଦେଖାଯାଇପାରେ, ଚାହୁଁ ଚାହୁଁ ଗୋଟାଏ ଲୋକ ପବନ ପରି ମିଳାଇ ଯାଇପାରେ, ନାରୀଟିଏ ସୁରା ପୂର୍ଣ୍ଣ ପାତ୍ର ଉପରେ କ୍ୟାବାରେଟ୍ ନାଚ ଆରମ୍ଭ କରିପାରେ; ଏପରିକି ସମୁଦ୍ରଟିଏ ମଧ୍ୟ ଦି ଭାଗ ହୋଇଯିବା ଦେଖାଯାଇପାରେ । ସିନେମା ଜଗତର କିଛି ବ୍ୟକ୍ତିଙ୍କ ବେଉସା କେବଳ ଏଇ "ବିଶେଷ ପ୍ରଭାବ ବା କରାମତି" ପାଇଁ ପନ୍ଥା ବତାଇ ଦେବା । ବିଶେଷ ପ୍ରଭାବର କୌଶଳ ଦ୍ୱାରା "ଜେମ୍‌ସ୍ ବଣ୍ଡ" ସିନେମା ଗୁଡ଼ିକ ଭଲ ବ୍ୟବସାୟ ଜମେଇ ପାରୁଛନ୍ତି ।

ପୁଣି ଗତ କିଛିବର୍ଷ ହେଲା, ଚଳଚ୍ଚିତ୍ରକୁ ଅଧିକ ଚମକ୍‌ପ୍ରଦ କରିବା ପାଇଁ ଯାନ୍ତ୍ରିକ କଣ୍ଢେଇ ବି କେତେକ ବ୍ୟବହାର କରୁଛନ୍ତି । ହଲିଉଡ୍‌ର ଚଳଚ୍ଚିତ୍ର ନିର୍ଦ୍ଦେଶକ ଷ୍ଟିଭେନ୍ ସ୍ପିଲ୍‌ବର୍ଗ "ଜସ୍" ଚିତ୍ରରେ ଏକ ଯନ୍ତ୍ର-ଚାଳିତ କୃତ୍ରିମ ସାର୍କମାଛ ବ୍ୟବହାର କରି ରୂପେଲି ପରଦାରେ କେତେକ ଚାଞ୍ଚଲ୍ୟକାରୀ ଦୃଶ୍ୟ ଦେଖାଇଥିଲେ । ତାଙ୍କର ଅନ୍ୟ ଏକ ଚିତ୍ର "ଇ.ଟି." କମ୍ପ୍ୟୁଟର-ଚାଳିତ ଏକ ଯାନ୍ତ୍ରିକ-ଜୀବ ଉପରେ ହିଁ ସଂପୂର୍ଣ୍ଣରୂପେ ଆଧାରିତ ।

କହିବା ଅନାବଶ୍ୟକ, ଉପରେ କଥିତ ବିଭିନ୍ନ କୌଶଳ ସିନେମାକୁ କଳାତ୍ମକ କରିବା ପାଇଁ ଅଭିପ୍ରେତ ନୁହେଁ - ବରଂ ଚମକପ୍ରଦ ଦୃଶ୍ୟ ସର୍ଜନା କରି ଦର୍ଶକମାନଙ୍କୁ ସିନେମା ହଲକୁ ଟାଣିବା ପାଇଁ ଅବଲମ୍ବନ ମାତ୍ର । ଚଳଚ୍ଚିତ୍ରର ଅର୍ଥନୀତି ହୁଏତ ଦାବୀ କରେ ଯେ, ଯେମିତି ହେଉ ପଛେ ଦର୍ଶକମାନଙ୍କୁ ସିନେମା ହଲକୁ ଟାଣିବାକୁ ହେବ । ଏଣୁ ଚାଞ୍ଚଲ୍ୟ ଓ ଶସ୍ତା ଆବେଦନ ଅଧିକାଂଶ ସିନେମାକୁ ଅନ୍ତଃସାର ଶୂନ୍ୟ କରିଥାଏ । ପୁଣି ସିନେମା ଜଗତରେ ପ୍ରଚଳିତ "ଷ୍ଟାର-ସିଷ୍ଟମ୍" ବହୁ ସିନେମାକୁ ଅଧିକ ସାର-ଶୂନ୍ୟ କରିଥାଏ । ଚଳଚ୍ଚିତ୍ରର କିଛି ନାୟକ-ନାୟିକା ରୂପେଲି ପରଦାରେ ଏପରି ଝଲସିତ ହେଉଥାନ୍ତି ଯେ, ବିପୁଳ ଜନତା ସେମାନଙ୍କ ପାଇଁ ଏକରକମ ପାଗଳ ହୋଇଯା'ନ୍ତି । ସେମାନଙ୍କ ନାମ ଶୁଣି ବି ବହୁ ସିନେମାପ୍ରେମୀ ସିନେମା ହଲ ଆଗରେ କ୍ୟୁ ଲଗାନ୍ତି । ଭୂମିକାଟିଏ ତାରକାଙ୍କ ପାଇଁ ଉପଯୁକ୍ତ ନ ହୋଇଥିଲେ ବି ତାରକା ସେଥିରେ ଓହ୍ଲାଇ ଥାଆନ୍ତି, କାରଣ ନିର୍ମାତାଙ୍କ ବିଚାର ହେଲା ଯେ, ତାଙ୍କ ଅର୍ଥନୀତି ପ୍ରତି ରହିଥିବା ବିପଦ ତାରକାଙ୍କ ପ୍ରଭାବରେ କଟିଯିବ । ସିନେମା ବହୁଳଭାବେ ଶସ୍ତା ମନୋରଂଜନ ହେଉଥିବାର ଏ ମଧ୍ୟ ଗୋଟାଏ ହେତୁ ।

## ଅନେକ ଶ୍ରେଣୀର ସୃଷ୍ଟି

ଚଳଚ୍ଚିତ୍ର ଆଲୋଚକମାନେ ସିନେମାର ଶ୍ରେଣୀ ବିଭାଗ ନେଇ ଅନେକ ସମୟରେ ବାଦାନୁବାଦ କରନ୍ତି । କେତେକ ଉଲ୍ଲେଖ କରିନ୍ତି ଦୁଇ କିସମର ସିନେମା– ପଳାୟନଧର୍ମୀ ଓ ବାସ୍ତବଧର୍ମୀ । ଆଉ କେତେକଙ୍କର ଶ୍ରେଣୀ ବିଭାଗ ହେଲା–ଅସୂଚନଶୀଳ ଅର୍ଥାତ୍

ଅବାସ୍ତବ ସିନେମା ଏବଂ ସୃଜନଶୀଳ ଅର୍ଥାତ୍ ବାସ୍ତବଧର୍ମୀ ସିନେମା । ଅନ୍ୟ କେତେକଙ୍କର ବିଭାଗୀକରଣ ହେଲା–ଗତାନୁଗତିକ ସିନେମା ଏବଂ ନୂଆ ସିନେମା ଅର୍ଥାତ୍ ''ନ୍ୟୁ ୱେଭ୍ ଫିଲ୍ମ'' । ପୁଣି କେତେକ ବି ଖୁବ୍ ସହଜ ଶବ୍ଦରେ ବ୍ୟକ୍ତ କରନ୍ତିଯେ ଯେତେ ସିନେମା ନିର୍ମିତ ହେଉଛି ତାହା ଭଲ ପର୍ଯ୍ୟାୟରେ ନତୁବା ଖରାପ ପର୍ଯ୍ୟାୟରେ ଅର୍ନ୍ତଭୁକ୍ତ କରାଯାଇପାରେ ।

ତେବେ, ମନେହୁଏ, ସମଗ୍ର ଚଳଚ୍ଚିତ୍ର ସୃଷ୍ଟିକୁ ତିନିଶ୍ରେଣୀରେ ବିଭକ୍ତ କରାଯିବା ଅଧିକ ଯୁକ୍ତିଯୁକ୍ତ । ବିଭାଗ ଏକ–କଳାତ୍ମକ ମୂଲ୍ୟ ଥିବା ବାସ୍ତବଧର୍ମୀ, ସୃଜନଶୀଳ ସିନେମା; ବିଭାଗ ଦୁଇ–ମନୋରଂଜନଧର୍ମୀ କିନ୍ତୁ ଭଲ ରୁଚିବୋଧର ଚଳଚ୍ଚିତ୍ର; ଏବଂ ବିଭାଗ ତିନି –ସୃଜନହୀନ, ମୂଲ୍ୟହୀନ ସିନେମା । ପ୍ରତିଟି ବିଭାଗ ସଂପର୍କରେ ସଂକ୍ଷିପ୍ତ ବୟାନ ଆବଶ୍ୟକ ।

ରୂପାୟନରେ ବାସ୍ତବ ହୋଇଗଲେ ଯେ ସିନେମାଟିଏ ''ଆର୍ଟ ଫିଲ୍ମ'' ବା କଳାତ୍ମକ ଚଳଚ୍ଚିତ୍ର ହୋଇଯିବ, ତା' ନୁହେଁ । ସିନେମାକୁ କଳାତ୍ମକ କରିବାକୁ ବିଷୟବସ୍ତୁର ବାସ୍ତବଧର୍ମୀ ରୂପାୟନ ଗୋଟାଏ ''ଟେକ୍‌ନିକ୍'' ବା ଉପକରଣ ମାତ୍ର । କେବଳ ବାସ୍ତବଧର୍ମୀ ପରିବେଷଣ ଉନ୍ନତ କଳାର ପରିମାପକ ରୂପେ ଗୃହୀତ ହେଉଥିଲେ ''ଡକ୍ୟୁମେଣ୍ଟାରୀ'' ବା ପ୍ରାମାଣିକ ଚଳଚ୍ଚିତ୍ର ଗୁଡ଼ିକ ଉଚ୍ଚମାନର କଳାସର୍ଜନା ରୂପେ ଗୃହୀତ ହୁଅନ୍ତେ । ସୃଷ୍ଟିଟିଏ କଳାରୂପେ ପରିଗଣିତ ହେବାକୁ ହେଲେ ସେଥିରେ ଯାହା ରହିବା ଆବଶ୍ୟକ ତାହାକୁ ଭାରତୀୟ ଆଳଂକାରୀକମାନେ ''ରସ'' ବୋଲି ଅଭିହିତ କରିଛନ୍ତି । ରସର ପ୍ରକାର ଭେଦ ମଧ ସେମାନେ ଦର୍ଶାଇଛନ୍ତି, ଯଥା: ଶୃଙ୍ଗାର, ହାସ୍ୟ, କରୁଣ, ଆଶ୍ଚର୍ଯ୍ୟ, ବୀର, ବାତ୍ସଲ୍ୟ, ବିଭତ୍ସ, ଭୟାନକ, ଶାନ୍ତ ଇତ୍ୟାଦି । ପାଠକ, ଦର୍ଶକ ବା ଶ୍ରୋତା ଅନ୍ତରରେ ସର୍ଜନାଟିଏ ଯଦି ରସସଞ୍ଚାର କରିବାକୁ ସମର୍ଥ ତା'ହେଲେ ହିଁ ଭାରତୀୟ ସମାଲୋଚନା ପରଂପରା ତାକୁ ମର୍ଯ୍ୟାଦା ଦିଏ । ଆମ ଶାଂସ୍ତ୍ରକାର ମାନଙ୍କର ପର୍ଯ୍ୟାଲୋଚନା ସାହିତ୍ୟ ଓ ନାଟକ ରଚନାରେ ପ୍ରଧାନତଃ ସୀମିତ ହୋଇଥିଲେ ହେଁ ସେମାନଙ୍କ ପରିମାପକ ଯେ କୌଣସି ସାଂସ୍କୃତିକ ଅଭିବ୍ୟକ୍ତି ପ୍ରତି ପ୍ରଯୁଜ୍ୟ, ଏପରିକି ଯନ୍ତ-ନିର୍ଭର କଳା ସିନେମା ପ୍ରତି ମଧ । ଅବଶ୍ୟ କଳାର ଉପଜୀବ୍ୟ ତଥାକଥିତ ନବରସ ମାତ୍ର ନୁହେଁ; ମଣିଷ ପାଇଁ ମୂଲ୍ୟବାନ ଯେ କୌଣସି ଅନୁଭୂତି, ଏପରିକି ଚିନ୍ତା ମଧ କଳା ସର୍ଜନା ପାଇଁ ଗୃହୀତ ହୋଇ ପାରେ । ଏଠାରେ ସ୍ପଷ୍ଟ କରି ଦିଆଯିବା ଉଚିତ୍ ଯେ କଳାକୁ ଯାହା ଜୀବନ୍ତ କରେ ତାହା ହେଲା ଭାବର ବା ଆବେଗର ବ୍ୟଞ୍ଜନା; ଚିନ୍ତା ସେଠାରେ ଅପ୍ରଧାନ । କଳା ଓ ଦର୍ଶନ ମଧରେ ଏହା ହିଁ ପ୍ରଧାନ ପାର୍ଥକ୍ୟ–ଦର୍ଶନ ଚିନ୍ତାରାଜିକୁ ଆଧାରିତ କରି ରଚିତ, କଳା ଆଧାର କରେ ଅନୁଭୂତି ରାଜିକୁ, ଆବେଗର ଉତ୍ସକୁ । ସିନେମାଟିଏ ଯେତିକି କଳାତ୍ମକ, ତାହା ଦର୍ଶକ ଉପରେ ସେତିକି ପ୍ରଭାବ ପକାଏ । ତେବେ ଶାସ୍ତ୍ରୀୟ ନୃତ୍ୟ ବା ସଂଗୀତର ଆଦର ପାଇଁ ଯେପରି ରୁଚିବୋଧକୁ ମାର୍ଜିତ ଓ ବିକଶିତ କରିବାର

ଆବଶ୍ୟକତା ରହିଛି, ଉନ୍ନତ ମାନର କଳାତ୍ମକ ଚଳଚ୍ଚିତ୍ରର ପୂର୍ଣ୍ଣ ସୌନ୍ଦର୍ଯ୍ୟ ଉପଭୋଗ ପାଇଁ ମଧ୍ୟ ରୁଚିବୋଧର ବିକାଶ ଆବଶ୍ୟକ ।

ମାର୍ଜିତ ରୁଚିବୋଧର ମନୋରଂଜନଧର୍ମୀ ସିନେମା ମୂଲ୍ୟବୋଧ ବିଚାରରେ ଦ୍ୱିତୀୟ ସ୍ଥାନ ଦାବୀ କରିପାରେ । ରୁଚିପୂର୍ଣ୍ଣ ଚଳଚ୍ଚିତ୍ର ମନୋରଂଜନର ଗୋଟାଏ ସାମାଜିକ ଆବଶ୍ୟକତା ରହିଛି । ଏପରି ଚଳଚ୍ଚିତ୍ର କୌଣସି ମାନବିକ ସମସ୍ୟା, ସାମାଜିକ ସମସ୍ୟା କିମ୍ବା ଚିରନ୍ତନ ଅନୁଭୂତିକୁ ନେଇ ମନୋରଂଜନଧର୍ମୀ ଶୈଳୀରେ ନିର୍ମିତ ହୋଇଥାଏ । ରାଜ୍‌କାପୁରଙ୍କ ''ଆୱାରା'' ଗୁରୁଦତ୍ତଙ୍କ ''ପ୍ୟାସା'', ଭି. ସାନ୍ତାରାମଙ୍କ ''ତୁଫାନ୍ ଔର ଦିଆ'', ହୃଷିକେଶ ମୁଖାର୍ଜୀଙ୍କ ''ଆନନ୍ଦ୍'' ଏଇ ଶ୍ରେଣୀୟ ସିନେମା । ତେବେ ଉପରୋକ୍ତ ମନ୍ତବ୍ୟରୁ କେହି ଯେପରି ମନେ ନ କରନ୍ତି ଯେ, ଖବର କାଗଜର ଲେଖାପରି ଏପରି ସିନେମା ମଧ୍ୟ କ୍ଷଣିକ ଓ ତାର ଜୀବନ ଦିନକରେ ଶେଷ ହୋଇଯାଏ । ବକ୍ତବ୍ୟ ହେଲା, ଏପରି ସିନେମା ମାନଙ୍କର ମଧ୍ୟ ଗୋଟାଏ ସାମାଜିକ ଭୂମିକା ରହିଛି । କାରଣ ମଣିଷ ତାର ଜୈବିକ ଆବଶ୍ୟକତା ଗୁଡ଼ିକ ପୂରଣ କରିସାରିବା ପରେ, ଖୋଜେ କିଛି ମନୋରଂଜନ । (ଏ ପରିପ୍ରେକ୍ଷିରେ ସମରସେଟ୍ ମମ୍‌ଙ୍କ ''ସାମିଙ୍ଗ ଆପ୍'' ବହି ଦ୍ରଷ୍ଟବ୍ୟ) । ଏଣୁ ମୂଲ୍ୟବୋଧ ସଂପନ୍ନ କିନ୍ତୁ ମନୋରଂଜନ ଧର୍ମୀ ସିନେମା ଗୁଡ଼ିକ ଗୋଟାଏ ସାର୍ବଜନୀନ ସ୍ପୃହା ପୂରଣ କରନ୍ତି । ଏପରି ସିନେମା ଖାଦ-ମିଶ୍ରିତ ସୁନା ଅଳଙ୍କାର ସହ ତୁଳନୀୟ । ଖାଣ୍ଟି ସୁନାରେ ତିଆରି ଅଳଙ୍କାରର ଦାମ ଅଧିକ ନିଶ୍ଚୟ । କିନ୍ତୁ ଖାଦ ମିଶା ସୁନା ହିଁ ଅଧିକ ଜକ ଜକ, ଅଧିକ ଆକର୍ଷଣୀୟ; ଏଣୁ ଏହି ଦ୍ୱିତୀୟ ଶ୍ରେଣୀୟ ସିନେମା ନିଛକ ବାସ୍ତବଧର୍ମୀ ସିନେମା ଅପେକ୍ଷା ଯଥେଷ୍ଟ ଅଧିକ ସିନେମା ପ୍ରେମୀଙ୍କୁ ଆକୃଷ୍ଟ କରେ । ସମୂହ ରୁଚିକୁ ନିମ୍ନଗାମୀ ନ କରି, ଟେଲିଭିଜନ୍‌ର ପ୍ରତିଯୋଗିତାର ସମ୍ମୁଖୀନ ହୋଇ, ଶିଳ୍ପ ଓ ବ୍ୟବସାୟ ରୂପେ ସିନେମା ବଞ୍ଚିବାକୁ ହେଲେ, ଏପରି ଚଳଚ୍ଚିତ୍ର ସୃଷ୍ଟିର ଆବଶ୍ୟକତା ଯଥେଷ୍ଟ । ଏହି ଶ୍ରେଣୀୟ କଥାଚିତ୍ର ନିର୍ମାତାମାନେ ପ୍ରଥମ ଶ୍ରେଣୀୟ ସିନେମା ନିର୍ମତାମାନଙ୍କ ଅପେକ୍ଷା ଯେ କମ୍ କଳା-କୁଶଳୀ ('ଟେଲେଣ୍ଟେଡ୍,) ତାନୁହେଁ; କଳା ନିର୍ମାଣ ଉଦ୍‌ଯୋଗରେ ପ୍ରଥମ ଶ୍ରେଣୀୟ ନିର୍ମାତାମାନେ ଅଧିକ ସଂହତି ସଂପନ୍ନ; ଏହି ଦ୍ୱିତୀୟୋକ୍ତ ନିର୍ମତାମାନେ ଅପେକ୍ଷାକୃତ କମ୍ ସଂହତି ସଂପନ୍ନ । କିନ୍ତୁ ଏଇ ଦ୍ୱିତୀୟ ଶ୍ରେଣୀର ସୃଷ୍ଟି ହିଁ ସମାଜ ଉପରେ ଯଥେଷ୍ଟ ଅଧିଭ ପ୍ରଭାବ ବିସ୍ତାର କରେ ।

ଶେଷରେ ନିମ୍ନ ରୁଚିର ଚଳଚ୍ଚିତ୍ର । ଏସବୁକୁ ଅସାର ସିନେମା ନାମରେ ଅଭିହିତ କରାଯାଇପାରେ । ଏପରି ଚିତ୍ରର ନିର୍ମାତାମାନେ ସେମାନଙ୍କର ସୃଷ୍ଟି ଅର୍ଥାତ୍ ଅପସୃଷ୍ଟି ଗୁଡ଼ିକରେ କୌଣସି ମୂଲ୍ୟବାନ ଅନୁଭୂତି ଦେବାର ଲକ୍ଷ୍ୟ ରଖି ନଥା'ନ୍ତି । ସେମାନେ ଚଳଚ୍ଚିତ୍ର ମାନଙ୍କରେ କେବଳ ଭରିଦିଅନ୍ତି କେତେକ ବାରମ୍ବାର ବ୍ୟବହୃତ ଉପାଦାନ ଏବଂ ଦୃଶ୍ୟ ଯଥା– ଫାଇଟିଂ ଦୃଶ୍ୟ, ଯୌନ ଆବେଦନ ଦୃଶ୍ୟ, ଅନୁଧାମନ ଦୃଶ୍ୟ (ସେ ଅନୁଧାବନ ହୋଇପାରେ ଘୋଡ଼ାଦ୍ୱାରା, କାରଦ୍ୱାରା, ଏପରିକି ବ୍ୟୋମଯାନ ଦ୍ୱାରା),

ବଳତ୍କାର ଦୃଶ୍ୟ ଇତ୍ୟାଦି । ଦର୍ଶକମାନଙ୍କୁ ଅମୋଦିତ, ରୋମାଞ୍ଚିତ ଓ ଚମତ୍କୃତ କରିବା ପାଇଁ ଯେତେ ଉପାଦାନ ସମ୍ଭବ ରୂପେଲି ପରଦାରେ ସେମାନେ ସେସବୁ ପରଷିଦିଅନ୍ତି । ବ୍ୟବସାୟିକ ସଫଳତା ସେମାନଙ୍କର ପରମ ଲକ୍ଷ୍ୟ ହୋଇଥାଏ । ସେଇ ଲକ୍ଷ୍ୟ ଓ ସୃଜନହୀନତାର ପରିଣାମ ସ୍ୱରୂପ ସୃଷ୍ଟି ହୁଏ, "ଡଷ୍ଟବିନ୍" ସିନେମା ବା କୂଢ଼ କୁଢ଼ ଆବର୍ଜନା । ଏବେ ତିଆରି ହେଉଥିବା ଶତକଡ଼ା ୯୯ ଭାଗ ସିନେମା ଏଇ ଶ୍ରେଣୀୟ । ସମୂହ ରଚିକୁ ନିମ୍ନଗାମୀ କରିବା ପାଇଁ ଏ ଗୋତ୍ରୀୟ ସିନେମା ଅତ୍ୟଧିକ ଦାୟୀ ।

ଏହି ତିନି ଶ୍ରେଣୀର ସିନେମା ବ୍ୟତୀତ ପ୍ରାମାଣିକ ଚଳଚ୍ଚିତ୍ର (ବା 'ଡକ୍ୟୁମେଣ୍ଟାରୀ ସିନେମା') ନାମକ ଏକ ସ୍ୱତନ୍ତ୍ର ଗୋଷ୍ଠୀର ସିନେମା ମଧ୍ୟ ରହିଛି । ଏହି ଶ୍ରେଣୀୟ ସିନେମାର ବିଶେଷତ୍ୱ ହେଲା ଯେ, ଏହା ସାମାଜିକ ବାସ୍ତବତା (କିମ୍ୱା ସ୍ଥଳ ବିଶେଷରେ ବ୍ୟକ୍ତିଗତ ଜୀବନ)ର ନିରାଭରଣ ଚିତ୍ର ଉପସ୍ଥାପିତ କରେ । ପ୍ରାମାଣିକ ଚଳଚ୍ଚିତ୍ର ଖବରକାଗଜ ମାନଙ୍କରେ ପ୍ରକାଶ ପାଉଥିବା ଖବର ଅନ୍ତର, ଟୀକ୍କାଟୀପଣୀ ମାନଙ୍କ ସହ ତୁଳନୀୟ । ଖବରକାଗଜ ମାନଙ୍କ ପୃଷ୍ଠା ମଣ୍ଡନ କରୁଥିବା ଲେଖା ଗୁଡ଼ିକ ସାହିତ୍ୟ ସୃଷ୍ଟିର ଜ୍ୟୋତିରେ ପ୍ରାୟ ଝଲସିତ ହୁଅନ୍ତି ନାହିଁ; ଅଥଚ ସମାଜ ସେଗୁଡ଼ିକ ଆବଶ୍ୟକ କରେ; ସେସବୁର ନିର୍ଦ୍ଦିଷ୍ଟ ଭୂମିକା ରହିଛି । ସେହିପରି ପ୍ରାମାଣିକ ଚଳଚ୍ଚିତ୍ର ଦର୍ଶକମାନଙ୍କ ଆଗରେ ବିଭିନ୍ନ ସ୍ତରର ଆଭରଣହୀନ, ନିରୋଳା ବାସ୍ତବତା ଉପସ୍ଥାପିତ କରେ । କଳ୍ପନାଦ୍ୱାରା ରଂଜିତ କରି ବାସ୍ତବତା ଉପସ୍ଥାପିତ କଲେ ସେ ସିନେମା ଡକ୍ୟୁମେଣ୍ଟାରୀ ନାମ ପାଇଁ ଅଯୋଗ୍ୟ ।

ପ୍ରକୃତରେ ପୃଥିବୀର ପ୍ରଥମ ସିନେମା ଗୋଟିଏ ଛୋଟକାରର ପ୍ରାମାଣିକ ଚଳଚ୍ଚିତ୍ର ବ୍ୟତୀତ ଅନ୍ୟକିଛି ନୁହେଁ । ଲୁମିଏର୍ ଭ୍ରାତାଦ୍ୱୟଙ୍କ ୧୮୯୫ରେ ନିର୍ମିତ "କାରଖାନାରୁ ପ୍ରତ୍ୟାଗତ କରୁଥିବା ଶ୍ରମିକମାନେ" ଗୋଟିଏ ପ୍ରକାରର ପ୍ରାମାଣିକ ଚଳଚ୍ଚିତ୍ର ମାତ୍ର । ପ୍ରଥମ ବିଶ୍ୱ ଯୁଦ୍ଧ ବେଳେ କେତୋଟି ପ୍ରଭାବଶାଳୀ ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଥିଲା । ବ୍ରିଟିଶ ଚଳଚ୍ଚିତ୍ର ନିର୍ମାତା ଗ୍ରିୟର ସେନ୍ ପ୍ରାମାଣିକ ଚଳଚ୍ଚିତ୍ରକୁ ପ୍ରଭାବଶାଳୀ ମାଧମରେ ପରିଣତ କରିଥିଲେ ।

ପୃଥିବୀରେ ଆଜିମଧ୍ୟ ସିନେମା ହିଁ ସବୁଠୁ ଅଧିକ ପରିବ୍ୟାପ୍ତ ମନୋରଂଜନର ମାଧମ; ତଥାପି ଚଳଚ୍ଚିତ୍ର କଳା ଓ ବ୍ୟବସାୟର ଗତି ପ୍ରତି ପଦେପଦେ ଅନିଶ୍ଚିତତା ସଂକୁଳ । ଅବଶ୍ୟ ସିନେମାର ଅର୍ଥନୈତିକ ଭାଗ୍ୟ କ୍ରମଶଃ ଚଳଚିତ୍ର-ହଲ୍ ଦ୍ୱାରାହିଁ ସଂପୂର୍ଣ୍ଣ ନିରୂପିତ ହେଉନି; ଆନ୍ତର୍ଜାତିକ ପ୍ରତିଯୋଗିତାରେ ସଫଳ ହେଲେ କିମ୍ୱା ଟି.ଭି.ରେ ପ୍ରଦର୍ଶିତ ହେଲେ ହଲ୍-ଅସଫଳ ସିନେମାର ଭାଗ୍ୟ ପରିବର୍ତ୍ତନ ହୋଇ ଯାଉଛି । ସତ୍ୟଜିତ ରାୟ, ଇଙ୍ଗ୍ମାବୋଲ ଭାବୋ, ଫ୍ରେଡ଼େରିକୋ ଫେଲିନି ପ୍ରଭୃତିଙ୍କ ଚଳଚ୍ଚିତ୍ର କୃତି ସେମାନଙ୍କ ମାତୃଭାଷା ମାନଙ୍କରେ ହୁଏ, ଅଥଚ ସମଗ୍ର ପୃଥିବୀର ବିଦଗ୍ଧ ସିନେମା ପ୍ରେମୀମାନେ ସେଇ ସବୁ ସିନେମା ଦେଖନ୍ତି । ତେବେ ଗୋଟିଏ ବି ଚଳଚ୍ଚିତ୍ର ଅର୍ଗଳ-ମୁକ୍ତ ନୁହେଁ ।

ସିନେମା ଐତିହାସିକ ଡେଭିଡ୍ ରବିନ୍‌ସନ୍ ଯଥାର୍ଥରେ କହିଛନ୍ତି : ''ଚଳଚ୍ଚିତ୍ର ସହ ବହୁ ଉପାଦାନ ଜଡ଼ିତ ସୃଜନକଳା, କାରିଗରୀ କୌଶଳ, ଅର୍ଥନୀତି ଏବଂ ଦର୍ଶକମଣ୍ଡଳୀ। ସଚଳଚିତ୍ର ଗୁଡ଼ିକ କେଉଁ ନିର୍ଦ୍ଦିଷ୍ଟ ସମୟରେ ଓ ସ୍ଥାନରେ କେଉଁ ରୂପ ନେବ, ତାହା ଏଇ ଚାରୋଟିଯାକ ଉପାଦାନର ପ୍ରଭାବରେ ନିୟନ୍ତ୍ରିତ ହୁଏ। "The cinema involves an aesthetic, a technology, an economy and an audience, and all four of these elements will condition what moving images appear upon the screen at any particular place and in any particular period" -David Robinson, *World Cinema* P.I.)

ସିନେମା ନିର୍ମାଣରେ ବହୁ ପ୍ରକାରର ପ୍ରଭାବ, ଚଳଚ୍ଚିତ୍ର ନିର୍ମାତା (ନିର୍ଦ୍ଦେଶକ ହିଁ ସିନେମାର ପ୍ରକୃତ ନିର୍ମାତା) ଉପରେ ଅହରହ ଚାପ ପକାଏ। ନିଜ ସୃଷ୍ଟି ପ୍ରେରଣା ପ୍ରତି ସଂପୂର୍ଣ୍ଣ ବିଶ୍ୱସ୍ତ ରହିବା କଳାତ୍ମକ ସିନେମା ନିର୍ମାତା ପାଇଁ ଏକ ଚାଲେଞ୍ଜ୍। ସୃଷ୍ଟି ପ୍ରେରଣା ପ୍ରତି ସଂପୂର୍ଣ୍ଣ ବିଶ୍ୱସ୍ତ ରହି ବିଷୟବସ୍ତୁର ଦାବୀ ଅନୁରୂପ ଚଳଚ୍ଚିତ୍ର ନିର୍ମାଣ କଲେ ହିଁ ଜଣେ ଚଳଚ୍ଚିତ୍ର ଜଗତରେ ଉନ୍ନତ ସ୍ରଷ୍ଟାରୂପେ ପରିଗଣିତ ହୋଇପାରେ। କେବଳ ବୌଦ୍ଧିକ ସାଧୁତା ନୁହେଁ, ଏପରି ସୃଜନଶୀଳତା ଦାବୀ କରେ ଏକ ପ୍ରକାରର ଚାରିତ୍ରିକ ସାଧୁତା ଯାହା କ୍ୱଚିତ୍ ଦେଖିବାକୁ ମିଳେ। ପୁଣି ମଣିଷ ଜୀବନର ସତ୍ୟ ଉଦ୍‌ଘାଟନ ପାଇଁ ଉଦ୍ଦିଷ୍ଟ ଏସବୁ ସିନେମା, ଚଳଚ୍ଚିତ୍ର ପ୍ରେକ୍ଷାଳୟ ମାନଙ୍କରେ ବ୍ୟବସାୟିକ ବିଫଳତାର ଶିକାର ହେଉଥିବାରୁ ସେଗୁଡ଼ିକ ଅଧିକ ଦୁଷ୍ପ୍ରାପ୍ୟ। ତେବେ କେତେକ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବରେ ଏପରି ସୃଷ୍ଟି ଲାଭଜନକ ପୁରସ୍କାର ହାସଲ କରିବାର ସମ୍ଭାବନା ଥିବାରୁ ଓ ପୁରସ୍କାର ହାସଲ କଲେ ତଦ୍‌ଜନିତ ବ୍ୟବସାୟିକ କ୍ଷେତ୍ର ପ୍ରସ୍ତୁତ ହେଉଥିବାରୁ, ପୃଥିବୀର କେତେକ ନିର୍ମାତା ଉନ୍ନତ ସିନେମା ନିର୍ମାଣ ପାଇଁ ଉଦ୍‌ଯୋଗ କରିଥାନ୍ତି। ଅବଶ୍ୟ ସଂଖ୍ୟା ଦୃଷ୍ଟିରୁ ମନୋରଂଜନଧର୍ମୀ ସିନେମା ନିର୍ମାତାଙ୍କ ତୁଳନାରେ ଏମାନେ ଯଥେଷ୍ଟ କମ୍।

ମୋଟ ଉପରେ, ସିନେମା ଏକ ଅଦ୍ଭୁତ ପ୍ରକାରର କଳା, ଯାହା କାରିଗରୀ ବିଦ୍ୟାର ସୃଜନଶୀଳ ବ୍ୟବହାର କରିପାରେ। ନବୋ ନବୋ ଉନ୍ମେଷ ଶାଳିନୀ ସୃଷ୍ଟି ପ୍ରକ୍ରିୟା ପାଇଁ ଚଳଚ୍ଚିତ୍ର ରୂପକ ଯୌଥକଳା ଅନ୍ୟ ବହୁ କଳାର ଶକ୍ତି ସଂଗ୍ରହ କରି ଅଧିକରୁ ଅଧିକ ପ୍ରଭାବଶାଳୀ ହୋଇପାରେ। ପ୍ରକୃତରେ ଗୋଟିଏ କଳା ଅନ୍ୟ କଳାଦ୍ୱାରା ପରିପୁଷ୍ଟ ହୋଇପାରେ। ଭାରତର ଅନ୍ୟତମ ସିନେମା ନିର୍ମାତା ମୃଣାଳ ସେନ୍ ଯଥାର୍ଥରେ କହିଛନ୍ତି : ''ଯେ କୌଣସି କଳା ଯଦି ଅଧିକରୁ ଅଧିକ ଶକ୍ତିଶାଳୀ ହେବାକୁ ଚାହେଁ, କ୍ରମାଗତ ବିକଶିତ ହେବାକୁ ଚାହେଁ, ତାହା ଅନ୍ୟ କଳାମାନଙ୍କ ଦ୍ୱାରା ପରିପୁଷ୍ଟ ହେବାର ଆବଶ୍ୟକତା ବି ରହିଛି।'' "... all arts, if they have to grow from strength to strength and grow into continuously developing phenomena need to be cross-fertilized all the times" - A Film Miscellany, International Film Festival, Calcutta, 1975, Page 20). □

# ଓଡ଼ିଆ ଚଳଚ୍ଚିତ୍ରର ଆଦିପର୍ବ



ମୋହନ ସୁନ୍ଦର ଗୋସ୍ୱାମୀ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ''ସୀତା ବିବାହ''ର ନିର୍ମାତା

ସାରା ପୃଥିବୀରେ ଚମକ ସୃଷ୍ଟିକଲା ''ଦି ଗ୍ରେଟ୍ ଟ୍ରେନ୍ ରୋବେରୀ''। କରିବାର କଥା; ତା' ଥିଲା ପୃଥିବୀର ପ୍ରଥମ ବିଧିବଦ୍ଧ ଚଳଚ୍ଚିତ୍ର।

ଗିଲ୍‌ଟିଏ ଲମ୍ବା ଏକ ଫିଲ୍ମ ଦେହରେ ଚାଞ୍ଚଲ୍ୟକର ଗୋଟିଏ କାହାଣୀର ରୂପାୟନ ଜନମାନସକୁ ଆକର୍ଷଣ କରିବାପାଇଁ ଯଥେଷ୍ଟ ଥିଲା। ''ଦି ଗ୍ରେଟ୍ ଟ୍ରେନ୍ ରୋବେରୀ'' ଆମେରିକୀୟ ସିଡ୍‌ନୀ ପୋର୍ଟର୍ ୧୯୦୩ରେ ସମାପ୍ତ କରିଥିଲେ। ପ୍ରଥମେ ଯେତେବେଳେ ଆମେରିକାର ଫିଲୋଡେ଼ଲ୍‌ଫିଆରେ ସେ ସିନେମା ମୁକ୍ତି ପାଏ ତାହା ''ହିଟ୍'' ଚିତ୍ର ବୋଲି ପ୍ରମାଣିତ ହୋଇଥିଲା। ସେ ଥିଲା ବିଂଶ ଶତାବ୍ଦୀର ପ୍ରଥମ ଦଶକର ଘଟଣା।

ପାଶ୍ଚାତ୍ୟ ଉଦ୍ଭାବନ ଗୁଡ଼ିକ ଓଡ଼ିଶା ମାଟିରେ ପହଞ୍ଚିବାକୁ ଡେରିଲାଗେ। ପ୍ରଥମ ଓଡ଼ିଆ ବ୍ଲକଚିତ୍ର ପ୍ରସ୍ତୁତ ହେବା ବେଳକୁ ବିଶ୍ୱ ଚଳଚ୍ଚିତ୍ର ଦ୍ୱିତୀୟ ପର୍ଯ୍ୟାୟରେ ପଦାର୍ପଣ କଲାଣି। ପ୍ରଥମ ଭାରତୀୟ କଥାଚିତ୍ର ''ରାଜା ହରିଶ୍ଚନ୍ଦ୍ର'' ନିର୍ମିତ ହୋଇ ମଧ୍ୟ ୨୩ ବର୍ଷ

ବିତିଯାଇଥିଲା । ବାକ୍‌ହୀନ ଚଳଚ୍ଚିତ୍ର ଅଧ୍ୟାୟ ସରିଯାଇ, ଆଠ ବର୍ଷ ଅତିକ୍ରାନ୍ତ ହେବାପରେ ୧୯୩୬ ସାଲ୍ ବେଳକୁ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇ ଆତ୍ମପ୍ରକାଶ କଲା । ଛବିଟିର ବିଷୟବସ୍ତୁ ଥିଲା ପୌରାଣିକ –''ସୀତା ବିବାହ'' । ଦୁଇଘଣ୍ଟା ଦୀର୍ଘ ଏଇ ଚଳଚ୍ଚିତ୍ରଟି ଯେହେତୁ ଓଡ଼ିଆ ଭାଷାର ପ୍ରଥମ ସିନେମା ''ସୀତା ବିବାହ'' ସମ୍ପର୍କରେ ଏଠାରେ ସବିଶେଷ ବିବରଣୀ ପ୍ରଦାନର ଉଦ୍ୟମ ହେବ, କିନ୍ତୁ ତା ପୂର୍ବରୁ ଓଡ଼ିଶାରେ ତତ୍‌କାଳୀନ ସିନେମା ଅବହାୱାର ଯତ୍‌କିଞ୍ଚିତ୍ ଉଲ୍ଲେଖ ଆବଶ୍ୟକ ।

ଓଡ଼ିଶା ଭୂଇଁରେ ସିନେମା ହଲ୍‌ମାନ ଗଢ଼ି ଉଠିବା ଆଗରୁ ଟୁରିଂ ସିନେମା ବା ଭ୍ରାମ୍ୟମାଣ ସିନେମା ହିଁ ଥିଲା ଓଡ଼ିଶାର କେତେକ ଅଞ୍ଚଳର ଲୋକଙ୍କ ପାଇଁ ଚଳଚ୍ଚିତ୍ର ମନୋରଂଜନର ଏକମାତ୍ର ପନ୍ଥା । ପ୍ରଧାନତଃ କଲିକତାର କେତେକ ସଂସ୍ଥା ଦ୍ୱାରା ଏହି ଭ୍ରାମ୍ୟମାଣ ସିନେମା ସଂସ୍ଥା ବିଭିନ୍ନ ସ୍ଥାନରେ ତମ୍ବୁ ପକାଇ ସିନେମା ଦେଖାଉଥିଲେ । ପୂର୍ବ ଉପକୂଳବର୍ତ୍ତୀ ସହର ମାନଙ୍କରେ ଏମାନେ ବ୍ୟବସାୟ ଚାଲୁ ରଖୁଥିଲେ । କ୍ରମଶଃ କେତୋଟି ସହରରେ ଅଳ୍ପ କିଛି ସିନେମା ହଲ୍ ମୁଣ୍ଡ ଟେକିଲା । ଏହି ହଲ୍ ମାନଙ୍କ ମଧ୍ୟରେ ସର୍ବପ୍ରଥମ ଥିଲା ବ୍ରହ୍ମପୁରର ଶ୍ରୀ ସୀତାରାମ ବିଳାସ ଟକିଜ୍ (ଏସ୍.ଏସ୍.ଭି.ଟି) ଯାହା ନିର୍ମିତ ହୋଇଥିଲା ୧୯୨୭ ସାଲ୍‌ରେ । ଏ ହଲ୍‌ର ମାଲିକ ଥିଲେ ସ୍ୱର୍ଗତ ଏ. ବୁଚେୟା ଛେଟୀ । ଏବେ ବି ଏହି ପ୍ରେକ୍ଷାଳୟଟି ତାର ପ୍ରଥମ ଆକାରରେ ଦଣ୍ଡାୟମାନ ଯଦିଓ ଆକୃତିରେ ସାମାନ୍ୟ ପରିବର୍ତ୍ତନ ଘଟିଛି । ପରେ ପରେ କଟକରେ ମୁଣ୍ଡ ଟେକିଲା ସିନେମା ପେଲେସ୍ ନାମକ ପ୍ରେକ୍ଷାଳୟ । ଏହି ହଲ୍‌ଟି ଥିଲା ବକ୍ସି ବଜାରରେ ଏବଂ ତାର ମାଲିକ ଥିଲେ ଫ୍ରାନ୍‌ସିସ୍ ନାମକ ଜଣେ ଇଙ୍ଗ୍-ଭାରତୀୟ ମୋଟର ମେକାନିକ୍ । କଟକରେ ଏକ ଦ୍ୱିତୀୟ ହଲ୍ ମଧ୍ୟ ଗଢ଼ି ଉଠିଲା ଅନ୍ୟଜଣେ ଓଡ଼ିଆ ମୋଟର ମେକାନିକ୍‌ଙ୍କ ଦ୍ୱାରା ଯାହାର ନାମ ଥିଲା ଏକ୍‌ମି ସିନେମା । ମୋଟର ମେକାନିକ୍‌ମାନେ ହଲ୍ ନିର୍ମାଣ କରିବାର କାରଣ ହୁଏତ ରହିଥିଲା । ସେତେବେଳେ ପ୍ରଜେକ୍ଟର ଥିଲା ଡାଇନେମୋ ଚାଳିତ । ପୁରୀରେ ମଧ୍ୟ ଗୋଟିଏ ସିନେମା ହଲ ନିର୍ମିତ ହେଲା ଯାହାର ନାମ ଲକ୍ଷ୍ମୀ । ଏହି ପ୍ରେକ୍ଷାଳୟରେ ''ସୀତା ବିବାହ'' ପ୍ରଦର୍ଶିତ ହୋଇଥିବାର ପ୍ରମାଣ ରହିଛି । ଏତଦ୍ ବ୍ୟତୀତ ବଲାଙ୍ଗୀରରେ ଏବଂ ସୋନ୍‌ପୁର ସହରରେ  ମଧ୍ୟ ଦୁଇଟି ସିନେମା ପ୍ରେକ୍ଷାଳୟ ନିର୍ମିତ ହୋଇଥିଲା । (ଉପରୋକ୍ତ ବିବରଣୀ ''ସୀତା ବିବାହ''ରେ ଅଭିନୟ କରିଥିବା ଶ୍ରୀ ନନ୍ଦନଲାଲ ଶର୍ମା ଅକ୍ଟୋବର ୧୦, ୧୯୮୯ ରେ ତାଙ୍କ ପୁରୀସ୍ଥ ବାସଭବନରେ ଲେଖକଙ୍କୁ ଦେଇଥିବା ତଥ୍ୟାନୁଯାୟୀ ପ୍ରଦତ୍ତ ହୋଇଛି) ।

ସେହି ସମୟର ସିନେମା ବାତାବରଣ ସଂପର୍କରେ ଅଧିକ ଆଲୋକପାତ କରିଥିଲେ କଟକ-ନିବାସୀ ଶ୍ରୀ ଗୋପାଳ ଘୋଷ । ୧୯୨୦ ସାଲ୍‌ରେ ଜନ୍ମିତ ଓ ଓଡ଼ିଆ ଚଳଚ୍ଚିତ୍ର ସହ ଦୀର୍ଘ ଦିନ ସଂପୃକ୍ତ ଶ୍ରୀ ଘୋଷ ତାଙ୍କ ପିଲାଦିନିଆ ସିନେମା ଅନୁଭୂତିର ସ୍ମୃତି ରୋମନ୍ଥନ କରି କହିଲେ  ''ସିନେମା ପେଲେସ୍‌ରେ ବାଲ୍‌କୋନି ଥିଲା । ସେଥିରେ

ମଧ୍ୟ ରହିଥିଲା ସିନେମା ପ୍ରଦର୍ଶନ ପାଇଁ ଦୁଇଟି ପ୍ରଜେକ୍ଟର । ସେଇ ହଲକୁ ପ୍ରଧାନତଃ ଇଂରାଜୀ ସିନେମା ଦର୍ଶକମାନେ ଆସୁଥିଲେ । କଟକରେ ଦୁଇଟି ସିନେମା ହଲ ଥିଲେ ବି ସହରକୁ ବହୁ ସମୟରେ କଲିକତାରୁ ଭ୍ରାମ୍ୟମାଣ ସିନେମା ଆସୁଥିଲା । ଟୁରିଂ ସିନେମାରେ ମୋର ଅନେକ ଚଳଚ୍ଚିତ୍ର ଦେଖାହୋଇଛି । କଟକର ମ୍ୟୁନିସିପାଲ୍‌ଟି ପଡ଼ିଆରେ ତମ୍ବୁ ପକାଇ ସିନେମା ପ୍ରଦର୍ଶୀତ ହେଉଥିଲା । ଅନେକ ସାଇଲେଣ୍ଟ ସିନେମା (ବାକ୍‌ହୀନ ସିନେମା) ମୁଁ ଏହି ତମ୍ବୁମାନଙ୍କରେ ଦେଖିଛି । ପ୍ରଧାନତଃ ବିଦେଶୀ ଓ କଲିକତା ସିନେମା ଚାଲୁଥିଲା । ଏସବୁ ସିନେମା ସୋରେ ପରଦା ରହୁଥିଲା ମଝିରେ, ଦୁଇପଟେ ବସୁଥିଲେ ଦର୍ଶକମାନେ – ପୁରୁଷ ପୃଥକ୍ ଓ ମହିଳା ପୃଥକ୍ । ସ୍କ୍ରିନ୍‌ର ବିପରୀତ ପଟେ ବସିଲେ ଡାହାଣ ପଟଟି ବାଁ ପଟ ପରି ଦିଶେ, ଡାହାଣ ହାତଟି ବାମ ହାତ ଭଳି ଲାଗେ । ଏହି ବିପରୀତ ପଟେ ବସି ନାରୀମାନେ ସିନେମା ଦେଖୁଥିଲେ । ସ୍ତ୍ରୀ ଲୋକମାନଙ୍କ ସହ ଥିବା ପିଲାଗୁଡ଼ିକ ମଧ୍ୟ ସେହିପଟେ ରହି ସିନେମା ଦେଖନ୍ତି । ମୁଁ ମଧ୍ୟ ଏପରି ବହୁ ସିନେମା ଦେଖିଥିବା ମନେ ପଡୁଛି ।

''ସାଇଲେଣ୍ଟ୍ ସିନେମା ସହ ସଂଗୀତ ପରିବେଷଣ ପାଇଁ କେତେକ କଳାକାର ରହିଥିଲେ । ସାଧାରଣତଃ ତବଲା, ଭାଓଲିନ୍ ଓ ହାର୍‌ମୋନିୟମ୍ ବାଦକମାନେ ସଂଗୀତ ପରିବେଷଣ କରୁଥିଲେ । ସିନେମା ଯେତେଯାଏଁ ଚାଲୁଥିଲା ସେତେଯାଏଁ ସିନେମା ସହ ସଂଗୀତ ପରିବେଷଣ ମଧ୍ୟ ହେଉଥିଲା ।

''ସଂଳାପହୀନ ସିନେମାର ବିଷୟବସ୍ତୁ ବୁଝାଇଦେବା ପାଇଁ ଜଣେ ଜଣେ 'ଇଣ୍ଟରପ୍ରେଟର' (ବ୍ୟାଖ୍ୟାକାରୀ) ରହୁଥିଲେ । ସୋ ମଝିରେ ମଝିରେ ପ୍ରଜେକ୍ଟର ବନ୍ଦ ରହୁଥିଲା (ରହିବା ପାଇଁ ବାଧ, କାରଣ ଦୁଇଟି ପ୍ରଜେକ୍ଟରର ବ୍ୟବସ୍ଥା ନ ଥିଲା) ଓ ବ୍ୟାଖ୍ୟାକାରୀ କାହାଣୀର ବିଭିନ୍ନ ଘଟଣା ବୁଝାଇ ଦେଉଥିଲେ । ସିନେମା ଗୁଡ଼ିକ ହଲିଉଡ୍, ଲଣ୍ଡନ ବା କଲିକତାରେ ନିର୍ମିତ ହୋଇପାରେ; କିନ୍ତୁ, ବ୍ୟାଖ୍ୟାକାରୀମାନେ ପ୍ରାୟ ତେଲୁଗୁଭାଷୀ ଥିଲେ । ସେମାନଙ୍କର ଭଙ୍ଗୀ ଓ ଅଶୁଦ୍ଧ ଉଚାରଣ ମଧ୍ୟ ହାସ୍ୟ ଉଦ୍ରେକ କରୁଥିଲା...

''ମୋର ମନେ ଅଛି, ପ୍ରଥମ ଓଡ଼ିଆ ଛବି 'ସୀତା ବିବାହ' ମୁଁ ଗୋଟାଏ ଟୁରିଂ ସିନେମାରେ ଦେଖିଥିଲି । ସେଇ ଟୁରିଂ ସିନେମାର ନାମ ଥିଲା, 'ରାଧାକିଶନ ଚାମେଲିଆ ଟୁରିଂ ସିନେମା' । ଏହା କଲିକତାରୁ ଆସି କଟକର ମ୍ୟୁନିସିପାଲ୍‌ଟି ପଡ଼ିଆରେ ଡେରା ପକାଇଥିଲା । ଏତେ ଭିଡ଼ ହେଉଥିଲା ଯେ, ପ୍ରଥମ ଅନେକ ଦିନ 'ସୀତା ବିବାହ'ର ଟିକେଟ୍ ପାଇବା ସମ୍ଭବ ହୋଇ ନଥିଲା । ପରେ କିନ୍ତୁ ସିନେମାଟି ମୁଁ ଦୁଇଥର ଦେଖିଥିଲି, ଥରେ ବାପାଙ୍କ ସହ ଓ ପୁଣି ଥରେ ଘରର ମହିଳାମାନଙ୍କ ସହ ।''

ସିନେମା ଦେଖିବା ପାଇଁ ପ୍ରବେଶ ମୂଲ୍ୟ ସେତେବେଳେ ସର୍ବତ୍ର ନିଶ୍ଚୟ ଏକା ନଥିଲା । ଶ୍ରୀ କାର୍ତ୍ତିକ କୁମାର ଘୋଷ **ଓଡ଼ିଆ ଚଳଚ୍ଚିତ୍ରର ଇତିହାସ** (୧୯୮୪)ରେ

ଉଲ୍ଲେଖ କରିଛନ୍ତି, ''ସିନେମା ପାଲେସ୍ ଷ୍ଟୁଆର୍ଟ ସ୍କୁଲ୍ ହତାର ପୂର୍ବ ଦିଗକୁ ଥିଲା । ଫ୍ରାନ୍‌ସିସ୍ ଥିଲେ ଜଣେ ମୋଟର ମେକାନିକ୍ । ସିନେମା ଘରଟି ପକ୍‌କା ଥିଲେ ମଧ ଟିକଟର ଦର ଥିଲା ଦୁଇ ଅଣା, ଚାରଣା, ଆଠଣା ଓ ଟଙ୍କାଏ'' (ପୃଷ୍ଠା ୮) ।

ଶ୍ରୀ ଘୋଷ ଅନ୍ୟତ୍ର ''ସୀତା ବିବାହ''ର ଅଭିନେତା ମାଖନ୍‌ଲାଲ୍ ବାନାର୍ଜୀଙ୍କ ସହଧର୍ମିଣୀଙ୍କ ସ୍ମୃତି ଉଲ୍ଲେଖ କରି ଲେଖିଛନ୍ତି : ''ସେ କହନ୍ତି ୧୯୩୫ ମସିହାରେ ପୁରୀରେ ଏକ ଟୁରିଂ ସିନେମାରେ 'ସୀତା ବିବାହ' ଚିତ୍ର ଦେଖିଛନ୍ତି । ତଳ ଚାରି ପଇସା, ବିଛଣା ଦୁଇଅଣା ଏହିପରି ଭାବେ ସେତେବେଳେ ଟିକେଟ୍‌ର ମୂଲ୍ୟ ଧାର୍ଯ୍ୟ ହୋଇଥିଲା'' (ପୃଷ୍ଠା ୨) ।

ଓଡ଼ିଶାର ପ୍ରଥମ ଚଳଚ୍ଚିତ୍ର ପ୍ରେକ୍ଷାଳୟ ଶ୍ରୀସୀତାରାମ୍ ବିଳାସ ସହରର ଏକ ବ୍ୟବସାୟ–ପ୍ରଧାନ ଅଞ୍ଚଳରେ ଗଢ଼ିଉଠିଥିଲା । ସ୍ୱର୍ଗତ ଶଶିଭୂଷଣ ରଥଙ୍କ ଦୈନିକ ପତ୍ରିକା ''ଆଶା''ର କାର୍ଯ୍ୟାଳୟ ଏହି ସିନେମା ହଲଠାରୁ ବିଶେଷ ଦୂରରେ ନ ଥିଲା । ସେତେବେଳେ ପତ୍ରିକା କାର୍ଯ୍ୟାଳୟରେ ନିଯୁକ୍ତ ଥିବା ପଣ୍ଡିତ ଚନ୍ଦ୍ରଶେଖର ମହାପାତ୍ର ପ୍ରତିମାସରେ ଦୁଇତିନି ଥର ଚଳଚ୍ଚିତ୍ର ଦେଖିବାକୁ ଯାଉଥିଲେ ବୋଲି ଏ ବହି ପାଇଁ ନଭେମ୍ବର ୧୯୮୯ରେ ଏକ ସାକ୍ଷାତକାରରେ ଲେଖକଙ୍କୁ କହିଥିଲେ । ୧୯୦୫ରେ ଜନ୍ମ ଗ୍ରହଣ କରିଥିବା ଶ୍ରୀ ମହାପାତ୍ର ଦୀର୍ଘ ଦିନର ସ୍ମୃତିଚାରଣ କରି ଲେଖକଙ୍କୁ କହିଥିଲେ: ହଲ୍‌ଟି ପ୍ରଧାନତଃ ଟିଣରେ ନିର୍ମିତ ହୋଇଥିଲା; କେବଳ ଛାତଟି ନୁହେଁ କାନ୍ଥ ସ୍ଥାନରେ ଟିଣ ବାଡ଼ ହିଁ ଦିଆଯାଇଥିଲା । ଏଥିରେ ବାଲ୍‌କୋନି ନଥିଲା (ଏବେ ବି ପ୍ରେକ୍ଷାଳୟରେ ବାଲ୍‌କୋନି ନାହିଁ); ତିନି ଶ୍ରେଣୀର ସିଟିଂ-ଏରେଞ୍ଜମେଣ୍ଟ (ସ୍ଥାନ ବ୍ୟବସ୍ଥା) ରହିଥିଲା । ତଳ ଦୁଇ ପଇସା (ବର୍ତ୍ତମାନ ତିନି ପଇସା), ବେଞ୍ଚ ଅଣାଟିଏ (ବର୍ତ୍ତମାନ ଛ ପଇସା) ଏବଂ ଚେୟାର ଦୁଇ ଅଣା । ଟିକେଟ୍ ବୋଲି କିଛି ବିକ୍ରୟ ହେଉନଥିଲା । ଗେଟ୍ କିପର (ଦ୍ୱାର ରକ୍ଷକ) ହିଁ ଦେଖଣାହାରିଙ୍କ ଠାରୁ ପଇସା ସଂଗ୍ରହ କରୁଥିଲେ । କିନ୍ତୁ ବଡ଼ କୌତୁହଳର ବିଷୟ ଯେ ସବୁଠୁ ଅଧିକା ପଇସା ଦେବା ଲୋକ ଆଗରେ ବସୁଥିଲେ । ଆଉ ସବୁଠୁ କମ୍ ଅର୍ଥ ଦେଉଥିବା ଦର୍ଶକଶ୍ରେଣୀ ପଛରେ ବସୁଥିଲେ । ଏପରି ହେବାର କାରଣ ସମ୍ଭବତଃ ଏୟା ଯେ ପ୍ରତିଦିନ ସିନେମା ପ୍ରଦର୍ଶନ ହୋଇ ପାରୁନଥିଲା । ପ୍ରାୟ ପ୍ରତି ମାସ କିଛିଟା ନାଟକ ମଧ ପରିବେଷିତ ହେଉଥିଲା । ଏଇ ପ୍ରେକ୍ଷାଳୟରେ ମୁଁ ''ସୀତା ବିବାହ'' ଦେଖିଥିବା ମନେ ପଡୁଛି । ସାଲ ଠିକ୍ ମନେ ପଡୁନି ।

ପ୍ରଥମ ଓଡ଼ିଆ ଚଳଚ୍ଚିତ୍ରର ପ୍ରଯୋଜକ ମୋହନ ସୁନ୍ଦର ଦେବ ଗୋସ୍ୱାମୀ ନିଜର ଜୀବନ କାଳ (ତାଙ୍କ ଜନ୍ମ ତାରିଖ ଥିଲା ୭ ଅଗଷ୍ଟ, ୧୮୯୨ସାଲ୍ ଓ ତାଙ୍କ ଇହଲୀଳା ସମ୍ବରଣ ଦିବସ ଥିଲା ୧୧ ଜାନୁଆରୀ ୧୯୪୮) ଭିତରେ ସମ୍ଭବତଃ ଜଣେ ବିବଦମାନ ପୁରୁଷ ନଥିଲେ । କିନ୍ତୁ ମୃତ୍ୟୁପରେ, ବିଶେଷତଃ ଓଡ଼ିଆ ସିନେମାର ଆଦି ସ୍ରଷ୍ଟା କିଏ ସେଇ ପ୍ରଶ୍ନର ସମାଧାନ କରାଯିବା ବେଳେ, ଦେଖାଗଲା ଯେ ମୋହନ ସୁନ୍ଦର ବିବଦମାନ !

ପରଂପରା କ୍ରମେ ତାଙ୍କୁ ଅନେକେ ''ସୀତା ବିବାହ''ର ପ୍ରଯୋଜକ ଓ ନିର୍ଦ୍ଦେଶକର ଗୌରବ ଦେଉଥିବାବେଳେ ଅନ୍ୟ କେତେକ ତାଙ୍କୁ ସେ ଗୌରବ ଦେବାକୁ ଜମାରୁ ପ୍ରସ୍ତୁତ ନ ଥିଲେ । ଅବଶ୍ୟ ପ୍ରଥମ ଗୋଷ୍ଠୀ କୌଣସି ପ୍ରମାଣ, ରେକର୍ଡ୍ ଯାଞ୍ଚ ନ କରି ଅବାଧରେ ମୋହନ ସୁନ୍ଦରଙ୍କୁ ସେହି ଗୌରବ ମଣ୍ଡିତ କରି ଲେଖାଲେଖି କରୁଥିବା ବେଳେ ଦ୍ୱିତୀୟ ଗୋଷ୍ଠୀ ସେମାନଙ୍କ ମତାମତ ପ୍ରଧାନତଃ ବ୍ୟକ୍ତିଗତ କଥାବାର୍ତ୍ତା ମଧ୍ୟରେ ସୀମିତ ରଖିଥିଲେ । ଏମାନଙ୍କ ମତଥିଲା ଯେ, କଲିକତାର କାଳୀ ଫିଲ୍ମସ୍ ହିଁ ''ସୀତା ବିବାହ''ର ପ୍ରକୃତ ପ୍ରଯୋଜକ ଓ ମାଲିକ । ଏପରିକି ନିର୍ଦ୍ଦେଶକର ଗୌରବ ପାଇଁ ମଧ୍ୟ ମୋହନ ସୁନ୍ଦର ହକ୍‌ଦାର ନୁହନ୍ତି । ପୁରୀରେ ରାସପାର୍ଟି ଗଢ଼ି, ଓଡ଼ିଶା ସାରା ରାସଲୀଳା ପରିବେଷଣ କରୁଥିବା ନାଟ-ମାଷ୍ଟ୍ର କିପରି ବା ଗଢ଼ି ପାରନ୍ତି ସିନେମା ଯାହା ଯନ୍ତ୍ର-ଜ୍ଞାନ ଓ କାରିଗରୀ ଦକ୍ଷତା ଆବଶ୍ୟକ କରେ ବହୁଳ ପରିମାଣରେ ? ଏଣୁ ମୋହନ ସୁନ୍ଦର ''ସୀତା ବିବାହ''ର ନିର୍ଦ୍ଦେଶକ ହୋଇ ନ ପାରନ୍ତି ବୋଲି ସେମାନେ ପ୍ରତିପାଦିତ କରନ୍ତି ।

ଏଣୁ ଏ ବହି ଲେଖିବା ବେଳେ ଏକ ଅନ୍ୱେଷଣ ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । ସେହି ଅନ୍ୱେଷଣ ପୁଣି ଥିଲା ବହୁତ ସମୟ-ସାପେକ୍ଷ ଓ ଖର୍ଚ୍ଚ-ସାପେକ୍ଷ : ପୁରୀ, କଟକ କଲିକତା ପ୍ରଭୃତି ବହୁ ସ୍ଥାନକୁ ପ୍ରସରିଥିଲା ସେହି ଅନ୍ୱେଷଣ-ଉଦ୍ୟମ । ପୁରୀର ମରିଚ୍‌କୋଟ୍ ଲେନ୍‌ରେ ଥିବା ମୋହନ ସୁନ୍ଦରଙ୍କ ପ୍ରପୌତ୍ର ଶ୍ରୀ ବଟରାଜ ଦେବ ଗୋସ୍ୱାମୀଙ୍କଠାରୁ ଆରମ୍ଭ କରି କଟକ ରାଣୀହାଟର ରେକର୍ଡ୍ ସଂଗ୍ରାହକ ଶ୍ରୀ ଇନ୍ଦ୍ରମଣି ସାହୁ ଏବଂ କଲିକତାରେ ଏକଦା ସିନେମା କଂପାନି ଗଢ଼ିଥିବା ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓଙ୍କ ଯାଏଁ ବହୁ ବ୍ୟକ୍ତିଙ୍କ ସହ ଏକାଧିକ ଥର ଜିଜ୍ଞାସା-ଯାତ୍ରାରେ ଯିବାକୁ ପଡ଼ିଥିଲା । ''ସୀତା ବିବାହ''ର ଶ୍ରେଷ୍ଠ କଳାକାର ରୂପେ ''ଉତ୍କଳ ଦୀପିକା'' (ମେ' ପହିଲା ୧୯୩୬ ସଂଖ୍ୟା) ଦ୍ୱାରା ଭୂୟସୀ ପ୍ରଶଂସିତ ନରସିଂହ ନନ୍ଦଶର୍ମାଙ୍କୁ ମଧ୍ୟ ଅନେକବାର ସାକ୍ଷାତ କରି ବିବରଣୀ ସଂଗ୍ରହ କରା ହୋଇଥିଲା । ଅବଶ୍ୟ କିଛି ଦଲୀଲ୍ ନଥିପତ୍ର ଯାଞ୍ଚ୍ କରିବାକୁ ପଡ଼ିଥିଲା । ଏ ସମସ୍ତ ଦ୍ୱାରା ସମ୍ଭବ ହୋଇଛି ନିମ୍ନୋକ୍ତ ବିବରଣୀ ।

ଶ୍ରୀମନ୍ଦିରର ଉତ୍ତର-ପୂର୍ବ ଦିଗରେ, ସିଂହଦ୍ୱାରଠାରୁ ପ୍ରାୟ ଦୁଇ ଫର୍ଲଙ୍ଗ ଦୂରରେ ଥିବା ତତ୍‌କାଳୀନ କଣ୍ଟେଇ ବେଣ୍ଟ ସାହି (ପରେ ଏହି ସାହିଟି ମରିଚକୋଟ୍ ଲେନ୍ ନାମରେ ପରିଚିତ ହୋଇଛି) ମଝିରେ ଥିବା ଏକ ଚାଳ ଛପର କିନ୍ତୁ ଅପେକ୍ଷାକୃତ ପ୍ରଶସ୍ତ ଗୋସ୍ୱାମୀ ନିବାସରେ ମୋହନ ସୁନ୍ଦର ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତା ଥିଲେ ହରିଦେବ ଗୋସ୍ୱାମୀ ଓ ମାତା ଥିଲେ ସୁଲକ୍ଷଣା ଦେବୀ । ସେ ମାତ୍ର ଷଷ୍ଠ ଶ୍ରେଣୀଯାଏଁ ପାଠ ପଢ଼ିଥିଲେ । ବୈଷ୍ଣବ ଭାବଧାରା ତାଙ୍କୁ ପିଲାଟି ଦିନରୁ ଅନୁପ୍ରାଣିତ କରିଥିଲା । ବିଶେଷତଃ ଗୃହ ପରିସରରେ ଥିବା ଶ୍ରୀରାଧା କୁଞ୍ଜବିହାରୀ ମନ୍ଦିରରେ ପିତା ଶ୍ରୀ ହରିଦେବଙ୍କର ନିତ୍ୟ ପଜୂାର୍ଚ୍ଚନା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ଗୋସ୍ୱାମୀ ପରିବାରର

ପୂର୍ବପୁରୁଷମାନେ ସୁଦୂର ଅତୀତରେ ବଙ୍ଗଦେଶରୁ ଆସିଥିଲେ ମଧ୍ୟ କାଳକ୍ରମେ ଉକ୍ତ ପରିବାର ପୁରୀ ଜଗନ୍ନାଥ ମନ୍ଦିରରେ କେତେକ ସେବା ଅଧିକାର ପାଇଥିଲେ । ସେହି ସେବା ଗୁଡ଼ିକ ହେଲା: କାର୍ତ୍ତିକ ମାସରେ ପୂର୍ବାହ୍ନର ବାଲଧୂପ ସେବା କୀର୍ତ୍ତନ, ଚନ୍ଦନ ଯାତ୍ରା ସମୟରେ ଚାମର ସେବା, ରୁକ୍ମିଣୀ ହରଣ (ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ) ରୀତିରେ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନ ମୋହନଙ୍କ ବାତୁଅ ପାଣି ଏବଂ ସୁବର୍ଣ୍ଣ ଚାମର ସେବା । ମୋହନ ସୁନ୍ଦରଙ୍କ ଜନକ ଏଇ ସେବାଗୁଡ଼ିକ ନିଷ୍ଠାର ସହ କରୁଥିବାରୁ ସେ ସମସ୍ତ ତାଙ୍କ ବାଳକ ମନକୁ ପ୍ରଭାବିତ କରିଥିଲା । ପୁରୀ ଓ ପାରିବାରିକ ପରିବେଶ ମୋହନ ସୁନ୍ଦରଙ୍କ କଳା ମାନସକୁ ସ୍ୱଭାବତଃ ସଂଗୀତ ଓ ନୃତ୍ୟପ୍ରତି ଆକର୍ଷିତ କରିଥିଲା । ମାତ୍ର ଷଷ୍ଠ ଶ୍ରେଣୀ ଯାଏଁ ପାଠ ପଢ଼ିଥିଲେ ବି ଯଥା ସମୟରେ ସାମର୍ଥ୍ୟ ଆହରଣ ପରେ ସେ ଗୋଟିଏ ଦଳ ଗଢ଼ି ତାର ନାମ ଦେଇଥିଲେ ''ଶ୍ରୀରାଧା କୁଞ୍ଜବିହାରୀ ରାସ ଲୀଳା'' । ଦୀନକୃଷ୍ଣ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳି ପ୍ରଭୃତି ଓଡ଼ିଆଭାଷାର କବିମାନଙ୍କର କାବ୍ୟ-କବିତା ଓ ଗୀତାବଳି ଭଲରୂପେ ଅଧ୍ୟୟନ କରି, ତାଙ୍କ ରାସପାର୍ଟିରେ ''ମାନ ଭଞ୍ଜନ'' ବା ରାଧାକୃଷ୍ଣ ପ୍ରେମଲୀଳାରେ ଆମର ଅମର କବିମାନଙ୍କର ଭାବ-ସଂଚାରୀ ଗୀତ ଗୁଡ଼ିକ ବ୍ୟବହାର କରୁଥିଲେ । ୧୯୨୨ରେ ତାଙ୍କ ଦ୍ୱାରା ସ୍ଥାପିତ ହୋଇଥିବା ସେଇ ନୃତ୍ୟ-ସଂଗୀତ ଦଳ ସମଗ୍ର ଓଡ଼ିଶାରେ ଜନପ୍ରିୟ ହୋଇଥିଲା । ପ୍ରଧାନତଃ ଛୋଟ ଛୋଟ ପୁଅମାନଙ୍କୁ ନେଇ ତାଙ୍କ ଦଳ ଗଢ଼ା ହୋଇଥିଲା ଓ ନିଜ ଦି' ମହଲା ଘରର କେତୋଟି କୋଠରୀରେ ରାସ ଦଳର କଳାକାରମାନଙ୍କୁ ସେ ଅବସ୍ଥାପିତ କରାଇଥିଲେ । ତେବେ ୧୯୩୪ ବେଳକୁ ସେ ଚଳଚ୍ଚିତ୍ର ପ୍ରତି ଗଭୀର ଭାବେ ଆଗ୍ରହୀ ହୋଇ ଉଠିଥିଲେ । ଏପରି ଆଗ୍ରହ ପଛାଦ୍‌ରେ ମଧ୍ୟ କିଛି ପାରିପାର୍ଶ୍ୱିକ କାରଣ ରହିଥିଲା ।

ଅବଶ୍ୟ ଯଥେଷ୍ଟ ପୂର୍ବରୁ ପୁରୀରେ ବାଇସ୍କୋପ୍ ଚାଲି ଆସିଥିଲା । ଲକ୍ଷ୍ମୀ ଟକି ନାମକ ସିନେମା ହଲ୍ ସହରରେ ମୁଣ୍ଡ ଟେକିବା ପୂର୍ବରୁ ମଧ୍ୟ ପୁରୀକୁ ଟୁରିଂ ସିନେମାମାନ ଆସି, ମୋଚି ସାହି ଛକରେ ଟେଣ୍ଟମାରି, ପ୍ରଥମେ ନିଃଶବ୍ଦ ଚଳଚ୍ଚିତ୍ର ଓ ପରେ ସବାକ୍ ଚଳଚ୍ଚିତ୍ର ସବୁ ପ୍ରଦର୍ଶନ କରୁଥିଲେ । ତେବେ ୧୯୩୪ ବେଳର ଗୋଟିଏ ଘଟଣାଦ୍ୱାରା ମୋହନ ସୁନ୍ଦର ଚଳଚ୍ଚିତ୍ର ପ୍ରତି ଅଧିକ ଆକୃଷ୍ଟ ହୋଇ ପଡ଼ିଥିଲେ ।

୧୯୩୩ ବେଳକୁ ପୁରୀ ବଡ଼ଦାଣ୍ଡରେ ଅନ୍ନପୂର୍ଣ୍ଣା ରଂଗମଞ୍ଚ ସ୍ଥାପିତ ହୋଇ ସାରିଥାଏ ଓ ସେହି ଦଳ ପୁରୀ ଓ ଅନ୍ୟତ୍ର ନାଟକ ପରିବେଷଣ କରୁଥାଆନ୍ତି । ୧୯୩୪ କାର୍ତ୍ତିକ ମାସ ବେଳକୁ ଥରେ ପ୍ରଚଣ୍ଡ ତୋଫାନ୍ ଆସି ମୋଚିସାହି ଛକରେ ଆସ୍ଥାନ ଜମାଇଥିବା ଟୁରିଂ ସିନେମାର ତମ୍ବୁ ଉଡ଼ାଇନେଲା । ଭ୍ରାମ୍ୟମାଣ ଅନ୍ନପୂର୍ଣ୍ଣା ରଂଗମଞ୍ଚ ସେତେବେଳକୁ ପୁରୀ ବାହାରେ ନାଟକ ପରିବେଷଣ କରିବାକୁ ଯାଇଥାଏ । ଏଣୁ ଏକ ସାମୟିକ ବିକଳ୍ପ ରୂପେ ଅନ୍ନପୂର୍ଣ୍ଣା ପରିସରରେ ଟୁରିଂସିନେମା କିଛି ସପ୍ତାହ ପାଇଁ ଚାଲିଲା ।

ମୋହନ ସୁନ୍ଦରଙ୍କ ଘରର ପଛପଟ ଅନ୍ନପୂର୍ଣ୍ଣା ପରିସରକୁ ଲାଗିଛି କହିଲେ ଚଳେ । ସେହି କେତୋଟି ସପ୍ତାହ ମଧ୍ୟରେ ମୋହନ ସୁନ୍ଦର ବହୁତ ସିନେମା ଦେଖିଥିଲେ, ବିଶେଷତଃ ଚାର୍ଲି ଚାପ୍ଲିନ୍ ଚଳଚ୍ଚିତ୍ର ଗୁଡ଼ିକ ତାଙ୍କୁ ପ୍ରଭାବିତ କରିଥିବା ତାଙ୍କ ପତ୍ନୀ ଦୁର୍ଗାରାଣୀ ଦେବୀ (ମୃତ୍ୟୁ ସାଲ ୧୯୭୧) କହିଥିଲେ । ସେଇ ସମୟରେ ସେ ବହୁତ ଥର ଅନମନା ରହୁଥିଲେ ବୋଲି ନାତି ବଟରାଜଙ୍କୁ ଦୁର୍ଗାରାଣୀ ଦେବୀ ଏକାଧିକ ଥର କହିଥିଲେ । ଓଡ଼ିଆରେ ଗୋଟିଏ ଚଳଚ୍ଚିତ୍ର ପ୍ରଯୋଜନା କରିବା ଇଚ୍ଛା ଏତିକି ବେଳେ ମୋହନ ସୁନ୍ଦରଙ୍କ ମନରେ ଜନ୍ମ ନେଇଥିଲା ଓ କ୍ରମେ ବଳବତ୍ତର ହୋଇଥିଲା ।

୧୯୩୫ ପ୍ରଥମାର୍ଦ୍ଧର କେତୋଟି ଘଟଣା ରାସ-ଗୁରୁ ମୋହନ ସୁନ୍ଦରଙ୍କ ଇଚ୍ଛା-ଅନୁକୂଳ ହୋଇଥିଲା । ପୁରୀକୁ ଆସୁଥିବା କେତେକ ବଙ୍ଗୀୟ ଜଗନ୍ନାଥ ଭକ୍ତ ପରଂପରା କ୍ରମେ ଗୋସ୍ୱାମୀ ପରିବାର-ମୁଖ୍ୟଙ୍କୁ ଗୁରୁବୋଲି ମାନନ୍ତି । ମୋହନ ସୁନ୍ଦରଙ୍କ ଜଣେ କଲିକତି ଶିଷ୍ୟ ଚଣ୍ଡୀଚରଣ ଶାହା ସେ ବର୍ଷ ଏକ ବିଶେଷ ପ୍ରୟୋଜନରେ ପୁରୀ ଆସିଥାନ୍ତି । ମୋହନ ସୁନ୍ଦର ଜାଣିଥିଲେ ଯେ ଶ୍ରୀ ଶାହା କଲିକତାର ଟଲିଗଞ୍ଜରେ ଥିବା କାଳୀ ଫିଲ୍ମସ୍‌ର ମାଲିକ ପ୍ରିୟନାଥ ଗାଂଗୁଲିଙ୍କର ଘନିଷ୍ଠ ବଂଧୁ । କାଳୀଫିଲ୍ମସ୍ କାଳେ ତାଙ୍କ ଇଚ୍ଛାକୁ ସାକାର କରିପାରେ, ଏଇ ଆଶାରେ ମୋହନ ସୁନ୍ଦର ଶ୍ରୀ ଶାହାଙ୍କୁ ମନୋବାଞ୍ଛା ପ୍ରକାଶ କଲେ । କର୍ଣ୍ଣ ଗୁରୁଙ୍କ ଅଭିପ୍ରାୟ ଶାହା ମହାଶୟ ତାଙ୍କ ବଂଧୁ ପ୍ରିୟନାଥ ଗାଂଗୁଲିଙ୍କୁ ଯଥା ଯୁକ୍ତ ଗୁରୁତ୍ୱ ଦେଇ ଜଣାଇଥିଲେ ।

ଷ୍ଟୁଡ଼ିଓ ଓ ଲେବୋରେଟରୀ ସମନ୍ୱିତ କାଳୀ ଫିଲ୍ମସ୍ (ସେ ସଂସ୍ଥାର ଜନ୍ମ ୧୯୩୧) ମୋହନ ସୁନ୍ଦରଙ୍କୁ ବ୍ୟବହାର କରି ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ କରିବାର ଗୋଟିଏ ଖସଡ଼ା ପ୍ରସ୍ତୁତ କଲା । ଫିଲ୍ମୀ-ଚାଲ୍‌ଦ୍ୱାରା ସଂକ୍ରମିତ ସେହି ଖସଡ଼ା ଅନୁଯାୟୀ, କାଳୀ ଫିଲ୍ମସ୍ କେତେକ ଆନୁସଙ୍ଗିକ ଖର୍ଚ୍ଚ ପାଇଁ ମୋହନ ସୁନ୍ଦରଙ୍କୁ ୪,୫୦୦ ଟଙ୍କା ଦେବ (ଯଥା କଳାକାରମାନେ ଓଡ଼ିଶାରୁ କଲିକତା ଯିବା-ଆସିବା ବ୍ୟୟ ବହନ ପ୍ରଭୃତି ପାଇଁ); ଏବଂ ବାକି ଟଙ୍କା ଖଟାଇବେ ମୋହନ ସୁନ୍ଦର । ନିର୍ମାଣ-ପୂର୍ବ ପ୍ରସ୍ତୁତି ରୂପେ ଏକ ବିଷୟବସ୍ତୁ ନିରୂପଣ ପାଇଁ ଚଣ୍ଡିଚରଣ ଶାହା ପୁନଶ୍ଚ ପୁରୀ ଆସି ମୋହନ ସୁନ୍ଦରଙ୍କ ପରିବେଷିତ କେତୋଟି ନାଟକ ଦେଖିଥିଲେ । ସେହି ନାଟକ ଗୁଡ଼ିକ ମଧ୍ୟରେ ଅର୍ନ୍ତଭୁକ୍ତ ଥିଲା ଅମିତାକ୍ଷର ଛନ୍ଦରେ ଲିଖିତ ଶ୍ରୀ କାମପାଳ ମିଶ୍ରଙ୍କ ''ସୀତା ବିବାହ'' । ରାମାୟଣର ସେହି ବିଷୟବସ୍ତୁକୁ ଆଧାର କରି ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ କରିବା ସ୍ଥିର ହେଲା । ତେବେ ଚିତ୍ରନାଟ୍ୟରେ ସଂଳାପ ଇତ୍ୟାଦିର ଅନେକ ପରିବର୍ତ୍ତନ କରାଗଲା । ବଟରାଜବାବୁ ତାଙ୍କ ଘରେ ଥିବା ଗୋଟିଏ ଚିତ୍ରନାଟ୍ୟ ମୋତେ ଦେଖାଇଥିଲେ । ସେହି ଚିତ୍ରନାଟ୍ୟଟି ୨୯ଗୋଟି ଦୃଶ୍ୟ ସମ୍ବଳିତ; ତେବେ ସେଥିରେ ଗୀତ ଗୁଡ଼ିକର ଉଲ୍ଲେଖ ପ୍ରାୟ ନାହିଁ । ସେହି ଚିତ୍ରନାଟ୍ୟ ଅନୁଧ୍ୟାନରୁ ମନେହେଲା, ବହୁ ପର୍ଯ୍ୟାୟ ଦେଇ ''ସୀତା ବିବାହ''ର ଚିତ୍ରନାଟ୍ୟ ଲେଖା ହୋଇଥିଲା ଓ ତିଷ୍ଠି ରହିଥିବା ସେଇ ଲେଖାଟି ପ୍ରାଥମିକ ପର୍ଯ୍ୟାୟର

ଚିତ୍ରନାଟ୍ୟ । ଅମିତ୍ରାକ୍ଷର ଛନ୍ଦରେ ଲିଖିତ କାମପାଳ ମିଶ୍ରଙ୍କ ସଂଳାପ ଗୁଡ଼ିକୁ ସରଳ ରୂପରେ ରୂପାନ୍ତରୀତ କରିଥିଲେ ମୋହନ ସୁନ୍ଦର ।

ଅବଶ୍ୟ ସିନେମା ନିର୍ମାଣ ଆରମ୍ଭ ହେବା ପୂର୍ବରୁ ସୁଚତୁର କାଳୀ ଫିଲ୍ମିସ୍‌ର ମାଲିକ ମୋହନ ସୁନ୍ଦରଙ୍କ ସହ କଲିକତାରେ ଗୋଟିଏ ଚୁକ୍ତିନାମା (''ଏଗ୍ରିମେଣ୍ଟ'') ଆଇନ-ସମ୍ମତ ଷ୍ଟାମ୍ପ୍ ପେପାର୍‌ରେ କରାଇ ନେଇଥିଲେ । ବର୍ତ୍ତମାନ୍ ସୁଦ୍ଧା ଶ୍ରୀ ବଟରାଜ୍ ଦେବଗୋସ୍ୱାମୀଙ୍କ ପାଖରେ ସଂରକ୍ଷିତ ସେହି ଚୁକ୍ତିନାମା ଏ ବହି ପାଇଁ ତଥ୍ୟ ସଂଗ୍ରହ ବେଳେ ପଢ଼ିବାର ସୁଯୋଗ ପାଇଥିଲି । ୨୯ ଜୁଲାଇ ୧୯୩୫ରେ କଲିକତାରେ ସ୍ୱାକ୍ଷରିତ ସେହି ଚୁକ୍ତିନାମାରେ ମୋହନ ସୁନ୍ଦରଙ୍କୁ ''କଣ୍ଟ୍ରାକ୍ଟର୍'' ବୋଲି କୁହାଯାଇ ଉଲ୍ଲେଖ ହୋଇଛି ଯେ,

''... କେତୋଟି ନାଟକ ମଞ୍ଚସ୍ଥ କରାଇ ଓଡ଼ିଆ କଥାଚିତ୍ର ପ୍ରସ୍ତୁତ କରିବା ପାଇଁ କଂପାନି ଚାହୁଁଛି ଏବଂ ଯେହେତୁ କଣ୍ଟ୍ରାକ୍ଟର୍‌ଙ୍କ ଅକ୍ତିଆରରେ ଉତ୍ତମ କଳାକାର ଓ କିଛି ଅନ୍ୟାନ୍ୟ ଉପାଦାନ ରହିଛି, ଉପରୋକ୍ତ ଲକ୍ଷ୍ୟରେ (କଂପାନି) ତାଙ୍କ ସହ ନିମ୍ନଲିଖିତ ସର୍ତ୍ତାବଳିରେ ଚୁକ୍ତିନାମା କରୁଛି–

୧. ଯେ, କଂପାନି ସର୍ବମୋଟ ୪,୫୦୦ ଟଙ୍କା (ଚାରି ହଜାର ପାଞ୍ଚଶହ ଟଙ୍କା ମାତ୍ର) ଠିକାଦାରଙ୍କୁ ଦେବ ଏବଂ ସେ ସବାକ୍ ଚିତ୍ର 'ସୀତା ବିବାହ' ପ୍ରସ୍ତୁତ କାରିବା ଦାୟିତ୍ୱ ନେବେ ।

୨. ଯେ, କଳାକାରମାନେ ସେମାନଙ୍କ ଆବାସରୁ କଂପାନିର ଷ୍ଟୁଡ଼ିଓକୁ ଆସିବା ଓ ଫେରିବା ଖର୍ଚ୍ଚ ସେଇ ଅର୍ଥରୁ ବହନ କରାଯିବ ।''

ଇଂରାଜିରେ ଟାଇପ୍ ହୋଇଥିବା ଚାରିପୃଷ୍ଠା ଦୀର୍ଘ ସେହି ଚୁକ୍ତିନାମାରେ ସମୁଦାୟ ୧୯ଗୋଟି ସର୍ତ୍ତର ଉଲ୍ଲେଖ ରହିଛି । ପଞ୍ଚମ ସର୍ତ୍ତ ରୂପେ ଲେଖାଅଛି–

''ଯେ ସବାକ୍ ଚଳଚ୍ଚିତ୍ର 'ସୀତା ବିବାହ' ପାଇଁ ସର୍ବୋତ୍ତମ କଳାକାରଗଣଙ୍କୁ ନିଜ ଖର୍ଚ୍ଚରେ ଠିକଦାର୍ ସଂଗ୍ରହ କରିବେ ଏବଂ ସେମାନଙ୍କ ପ୍ରାପ୍ୟ ଓ ଆନୁସଙ୍ଗିକ ଖର୍ଚ୍ଚ ବହନ କରିବେ ।''

ଚତୁର୍ଦ୍ଦଶ ସର୍ତ୍ତ ରୂପେ ଲେଖାଅଛି ''ଯେ ସିନେମାଟି ଉପରେ କଂପାନିର ହିଁ ରହିବ ପରିପୂର୍ଣ୍ଣ ଅଧିକାର ଏବଂ ସେଇ ଫିଲ୍ମକୁ ଯେପରି ଇଚ୍ଛା ବ୍ୟବହାର କରିବା ପାଇଁ କଂପାନି ହକ୍‌ଦାର ହେବ; ଏବଂ ଠିକାଦାର୍ ବା ତାଙ୍କ କଳାକାର ବା ତାଙ୍କର ଅନ୍ୟ କେହି ସିନେମା ଉପରେ କୌଣସି ଅଧିକାର ସାବ୍ୟସ୍ତ କରିପାରିବେନି ...।''

୨୯ ଜୁଲାଇ ୧୯୩୫ ସାଲରେ ଚୁକ୍ତିନାମା (ଇଂରାଜୀରେ ଟାଇପ୍‌କୃତ ଦଲିଲ୍‌ର ଆଂଶିକ ଫୋଟ ଚିତ୍ର ଏ ବହିରେ ସନ୍ନିବେଶିତ) ସଂପନ୍ନ ହେବାପରେ ମୋହନ ସୁନ୍ଦର



THIS AGREEMENT made this 27th day of July One Thousand Nine Hundred and Thirty-five Between MESSRS. KALI FILMS carrying on business at 36B Protapaditya Road, Kalighat, Calcutta on the first part hereinafter called the Company and [handwritten] on the second part hereinafter referred to as the Contractor WHEREAS the Company is desirous of having certain plays enacted and made ready for having Talkie Films thereof in Oriya language and WHEREAS the Contractor has best artistes and resources in his disposal for the above purpose the following terms and conditions are mutually agreed upon:-

1. That the Company will pay the consolidated sum of Rs. 4500/- (Rupees Four Thousand and five hundred only) to the Contractor in full payment of ... and the Contractor undertakes to complete the Talkie Film of "SITAH BIBAHA" in Oriya language by the aid of the best artistes (male and female).

2. That the Company shall supply conveyance to the artistes for coming to the Studio of the Company form their residence ... and vice versa free of charge.

3. That out of the said sum of Rs. 4500/- (Rupees Four thousand and five hundred only) a sum of Rs.500/- (Rupees Five hundred only) will be paid to the Contractor on ...

''ସୀତା ବିବାହ''ର ଦଲିଲ୍

କଳାକାରମାନଙ୍କୁ ସଂଗ୍ରହ କଲେ । କଟକରେ ଓକିଲାତି କରୁଥିବା ମାଖନ୍‌ଲାଲ୍ ବାନାର୍ଜୀ ଶ୍ରୀରାମ ଭୂମିକାରେ ଅଭିନୟ କରିବା ସ୍ଥିର ହେଲା । ସୀତା ଭୂମିକା ପାଇଁ ମଧ୍ୟ ନିରୂପିତ

ହେଲେ ସେହି କଟକର ପ୍ରଭାବତୀ ଦେବୀ । ନିଜେ ମୋହନ ସୁନ୍ଦର ବିଶ୍ୱାମିତ୍ର ଭୂମିକାରେ ରୋଲ୍ କରିବା ପାଇଁ ମନସ୍ଥ କରିଥିଲେ । ଧୀବର ଭୂମିକା ପାଇଁ ବଛାଗଲା ନରସିଂହ ନନ୍ଦଶର୍ମାଙ୍କୁ (ଦିବ୍ୟସିଂହପୁରରେ ଜନ୍ମିତ ନନ୍ଦଶର୍ମା ସେତେବେଳକୁ ରାସଦଳରେ ସାମିଲ୍ ଥାଆନ୍ତି) । ଅଦ୍ୱୈତ୍ୟ ବଲ୍ଲଭ ମହାନ୍ତି (''ତଅପୋଇ''ର ନାଟ୍ୟକାର) ଲକ୍ଷ୍ମଣ ଭୂମିକା ପାଇଁ ନିରୂପିତ ହେଲେ । କୁମୁଦ ନାମ୍ନି ଅଭିନେତ୍ରୀ କେଉଟୁଣୀ ପାର୍ଟ କରିବା ସ୍ଥିର ହେଲା । ସମସ୍ତ କଳାକାର ନିରୂପିତ ହେବାପରେ ସେହି ୧୯୩୫ ସାଲର ସେପ୍ଟେମ୍ବର ମାସରେ ସମସ୍ତ କଳାକାରଙ୍କୁ ନେଇ ମୋହନ ସୁନ୍ଦର ଚାଲିଲେ କଲିକତା ।

ନାଟ୍ୟକାର କାର୍ତ୍ତିକ କୁମାର ଘୋଷ ସେ ସମୟର ସ୍ମୃତି-ରୋମନ୍ଥନ କରି ଲେଖିଛନ୍ତି– ''କଲିକତାର ଭବାନୀପୁରସ୍ଥ ହରିଶ୍ ମୁଖାର୍ଜି ରୋଡ଼ର ଏକ ତିନି ମହଲା ଘରେ ସବୁ କଳାକାର - ସ୍ତ୍ରୀ ଓ ପୁରୁଷ ରହିଥିଲେ । ସେହିଠାରେ ହିଁ ଖାଦ୍ୟ ପ୍ରସ୍ତୁତିର ବ୍ୟବସ୍ଥା ହୋଇଥିଲା । ପୁରୀରୁ ଦୁଇ ସୁଆର ମଧ୍ୟ ସେଠାରେ କାର୍ଯ୍ୟ ତୁଲାଇବା ଲାଗି ରହିଥିଲେ । ...ସେହି ସମୟରେ ଶ୍ରୀ ଗୋସ୍ୱାମୀଙ୍କର ଅନୁରୋଧକ୍ରମେ ମୁଁ ଯାଇଥିଲି; କିନ୍ତୁ ମାତ୍ର ତିନି ଚାରି ଦିନ ରହି ଫେରି ଆସିଥିଲି । (ପୃଷ୍ଠା. ୬, **ଓଡ଼ିଆ ଚଳଚ୍ଚିତ୍ରର ଇତିହାସ** ।)

''ସୀତା ବିବାହ''ରୁ ସର୍ବାଧିକ ଲାଭ ପାଇଁ କାଳୀ ଫିଲ୍ମସ୍‌ର କିଛି ସୁପରିକଳ୍ପିତ ଯୋଜନା ନିଶ୍ଚୟ ଥିଲା । ସିନେମାଟି ମୁକ୍ତି ପାଇବା ପୂର୍ବରୁ ତାର ଗ୍ରାମଫୋନ୍ ରେକର୍ଡ୍ ସେମାନେ ବଜାରକୁ ଛାଡ଼ିବା ପରିକଳ୍ପନା କରିଥିଲେ । ତେଣୁ ଦୁଇ ଘଣ୍ଟା ଦୀର୍ଘ ''ସୀତା ବିବାହ'' ଚଳଚ୍ଚିତ୍ରର ଏକ ଚବିଶ୍-ମିନିଟିଆ ନାଟ୍ୟ ରୂପ ଚାରୋଟି ଗ୍ରାମଫୋନ୍ ରେକର୍ଡ୍‌ରେ ଯଥାରୀତି ରିହାରର୍ସଲ ପରେ ସେମାନେ ପ୍ରସ୍ତୁତ କଲେ (ସେତେବେଳେ ରେକର୍ଡ଼ ସମୁଦାୟ ଛଅ ମିନିଟ୍ ବାଜୁଥିଲା) । ତା'ପରେ ଆରମ୍ଭ ହେଲା ସିନେମା ସୁଟିଂ ।

କ୍ୟାମେରାମେନ୍ ଥିଲେ ଶ୍ରୀ ନନି ସନ୍ୟାଲ୍ । ଚଳଚ୍ଚିତ୍ର ନିର୍ଦ୍ଦେଶନାରେ ଅନଭ୍ୟସ୍ତ ମୋହନ ସୁନ୍ଦରଙ୍କୁ ମୁଭିଫୋଟଗ୍ରାଫ୍‌ର ସନ୍ୟାଲ୍ ଯେ ଅନେକ ସହାୟକ ହୋଇଥିବେ ଏଥିରେ ସନ୍ଦେହ ନାହିଁ । ଅଧିକାଂଶ ଦୃଶ୍ୟର ଚିତ୍ର ଗ୍ରହଣ ଷ୍ଟୁଡ଼ିଓ ପରିସରରେ ହିଁ ହୋଇଥିଲା । ତେବେ ଗଙ୍ଗା କୂଳର ଏକ ଦୃଶ୍ୟ ପାଇଁ ''ଆଉଟ୍‌ଡ଼ୋର୍ ସୁଟିଂ'' (ଷ୍ଟୁଡ଼ିଓ ବାହାରେ ଚିତ୍ର ଗ୍ରହଣ) ହୋଇଥିଲା । ଶ୍ରୀ ନରସିଂହ ନନ୍ଦଶର୍ମା ଦୀର୍ଘ ଦିନ ତଳର ସ୍ମୃତି-ରୋମନ୍ଥନ କରି (୧୦ ଅକ୍ଟୋବର ୧୯୮୯ ସାଲରେ) ପୁରୀର କାଳୀକା ଦେବୀ ସାହିରେ ସାକ୍ଷାତ ବେଳେ ଲେଖକଙ୍କୁ କହିଥିଲେ–

''ସମୁଦାୟ ସୁଟିଂ ମାସେରୁ ଅଧିକ ସମୟ ଲାଗିଥିଲା । ଅଭିନୟ ସମୟରେ ଯେ ଯାହା ଗୀତ ଗାଉଥିଲେ । ନାଉରୀ ଭୂମିକାରେ ଅଭିନୟ କରି ମୁଁ ଦୁଇଟି ଗୀତ ଗାଇଥିଲି; ସେଥିରୁ ଗୋଟିଏ ଥିଲା 'ଡୁଏଟ'–କେଉଟ ଭୂମିକାରେ ମୁଁ ଆଉ କେଉଟୁଣୀ

ଭୂମିକାରେ ଅଭିନେତ୍ରୀ କୁମୁଦ ଗାଇଥିଲେ । ଗଙ୍ଗା ନଦୀରେ ନଉକା ବାହିବା ବେଳେ ମୁଁ ଗାଇଥିଲି, 'ଇନ୍ଦ୍ରନୀଳମଣି ଗୃହରେ ଶୋଇଛି ସହି ସୁନା-ଗୋରୀ ସୀତା' ଗୀତଟି । ...ମୋର ମନେ ଅଛି, ଆମ ଫଲ୍ମ ସୁଟିଂ ଚାଲିଥିବା ବେଳେ ସେହି ଷ୍ଟୁଡ଼ିଓରେ ତେଲୁଗୁ ଚିତ୍ର 'କବୀର' ଓ ଗୋଟିଏ ବଙ୍ଗଳା ସାମାଜିକ 'ପ୍ରଫୁଲ୍ଲ'ର ସୁଟିଂ ମଧ୍ଯ ଚାଲିଥିଲା । ସେତେବେଳ ଯାଏଁ ମାଡ୍ରାସ୍ ସିନେମା ନିର୍ମାଣରେ ପ୍ରାଧାନ୍ୟ ହାସଲ କରି ନ ଥିଲା । ପରେ ଶୁଣିଲି କବୀର ଅସମାପ୍ତ ହୋଇ ରହିଗଲା ।''

ଦୁଇଟି ଅର୍ଥପ୍ରାପ୍ତି ସ୍ବୀକାର ଚିରକୁଟ

ସମଗ୍ର ସିନେମାଟିର ଚିତ୍ର ଗ୍ରହଣ ପର୍ଯ୍ୟାୟ ମାସେରୁ ସାମାନ୍ୟ ଅଧିକା ସମୟରେ ସମ୍ଭବତଃ ସରି ଯାଇଥିଲା । ଆଜିକାଲିକା ଚଳଚ୍ଚିତ୍ର ନିର୍ମାଣର ''ଡ଼ବିଂ, ମିକ୍ସିଂ'' ପ୍ରଭୃତିର ସୁବିଧା ସେତେବେଳେ ନ ଥିଲେ ମଧ୍ଯ ପ୍ରସେସିଂ, ଏଡ଼ିଟିଂ(ସଂପାଦନା) ଏବଂ ପ୍ରିଣ୍ଟିଂ ବା ରିଲ୍ ନିର୍ମାଣ ପାଇଁ ନିଶ୍ଚୟ କିଛି ମାସ ଲାଗିଥିଲା । ''ସୀତା ବିବାହ''ର ପ୍ରଯୋଜନା ଦାୟିତ୍ୱ ପ୍ରଧାନତଃ ମୋହନ ସୁନ୍ଦର ବହନ କରିଥିବାରୁ ଚୁକ୍ତି ଅନୁଯାୟୀ ଅନ୍ୟାନ୍ୟ ଖର୍ଚ୍ଚ

ସହ କଳାକାରମାନଙ୍କ ଦେୟ ମଧ୍ୟ ସେ ଦେଇଥିଲେ । ଏଥି ପାଇଁ ତାଙ୍କୁ କିଛି କରଜ ମଧ୍ୟ କରିବାକୁ ପଡ଼ିଥିଲା । କଳାକାରମାନେ ସ୍ୱ-ହସ୍ତାକ୍ଷରରେ ଦେଇଥିବା ଅର୍ଥପ୍ରାପ୍ତି ରସିଦ୍ ବା ''ଭାଉଚେର୍'' ଏବେ ମଧ୍ୟ ଗୋସ୍ୱାମୀ ନିବାସରେ ରହିଛି ଯାହା ବଟରାଜବାବୁଙ୍କ ସହଯୋଗରେ ଲେଖକ ଦେଖିବାକୁ ପାଇଥିଲା । କେତୋଟି ରସିଦ୍ ଅନୁଯାୟୀ ଶ୍ରୀରାମ ଭୂମିକାରେ ଅଭିନୟ କରିଥିବା ମାଖନ୍‌ଲାଲ୍ ପାଇଥିଲେ ୧୨୦ଟଙ୍କା (ରସିଦ୍ ତାରିଖ ୩୦.୧୦.୧୯୩୫) । ଲକ୍ଷ୍ମଣ ଭୂମିକାରେ ଅଭିନୟ କରିଥିବା ଅଦ୍ୱୈତ୍ୟ ବଲ୍ଲଭ ମହାନ୍ତି କେବଳ ଯାତାୟତ ଖର୍ଚ୍ଚ ତୁଲାଇବା ପାଇଁ ପାଇଥିଲେ ୩୮ଟଙ୍କା (ରସିଦ୍ ତାରିଖ ୨.୧୨.୧୯୩୫) । ସୀତା ଭୂମିକାରେ ଅଭିନୟ କରିଥିବା ପ୍ରଭାବତୀ ପାଇଥିଲେ ୧୫୦ଟଙ୍କା (ରସିଦ୍ ତାରିଖ ୩୦.୧୦.୧୯୩୫) । ନାଉରୀ ଭୂମିକାରେ ଅଭିନୟ କରିଥିବା ନନ୍ଦଶର୍ମା ତାଙ୍କ ରସିଦ୍‌ରେ ଲେଖିଛନ୍ତି ଯେ ସେ ଅଭିନୟ ପାଇଁ ଓ ସିନେମାରେ ବ୍ୟବହୃତ ଦୁଇଟି ଗୀତ ରଚନା ପାଇଁ ପାଇଥିଲେ ସର୍ବମୋଟ ୧୮୬ ଟଙ୍କା । (ଗୀତଦ୍ୱୟ ପାଇଁ ୨୦ ଟଙ୍କା ପାଇଥିବା ସେ ୧୧.୧୨.୧୯୩୫ ତାରିଖ ରସିଦରେ ଉଲ୍ଲେଖ କରିଛନ୍ତି) ।

ସମଗ୍ର ଖର୍ଚ୍ଚର ହିସାବ ମଧ୍ୟ ମୋହନ ସୁନ୍ଦର ରଖିଥିଲେ । ସେହି ହିସାବ ଅନୁଯାୟୀ ''ସୀତା ବିବାହ'' ନିର୍ମାଣର ମୋଟ ବ୍ୟୟ ଥିଲା ୨୯, ୬୮୧ ଟଙ୍କା ୧୦ଅଣା (ପ୍ରଚଳିତ ମୁଦ୍ରା ଅନୁଯାୟୀ ଦଶ ଅଣାର ମୂଲ୍ୟ ୬୩ ନୂଆ ପଇସା) ।

ସମାପ୍ତ ହେବାପରେ ''ସୀତା ବିବାହ'' ବେଙ୍ଗଲ୍ ବୋର୍ଡ୍ ଅଫ୍ ଫିଲ୍ମ ସାର୍ଟିଫିକେଟ୍ ପାଇଁ ପେଶ୍ କରାଯାଇଥିଲା । କଲିକତାର ଲାଲ୍‌ବଜାରରେ ଥିବା ପୁଲିସ୍ କମିଶନର୍ ସେନ୍‌ସର୍ ସାର୍ଟିଫିକେଟ୍ ଦେଉଥିଲେ; କାରଣ ସେତେବେଳେ ସେନ୍‌ସର୍ ବୋର୍ଡ୍ ବୋଲି କିଛି ନ ଥିଲା । ପୁଲିସ୍ କମିଶନରମାନେ ହିଁ ଦେଉଥିଲେ ସେନ୍‌ସର୍ ସାର୍ଟିଫିକେଟ୍ । କଲିକତା, ବମ୍ବେ ଓ ମାଡ୍ରାସରେ ଏହି ସାର୍ଟିଫିକେଟ୍ ପୁଲିସ କମିଶନର ହାତରେ ବ୍ରିଟିଶ ସରକାର ରଖିବାର କାରଣ ଜାଣିବା କଷ୍ଟକର ନୁହେଁ; ବିଦେଶୀ ଶାସକ ବିରୋଧୀ କିଛି ଉପାଦାନ ଯେପରି ନିର୍ମିତ ଚଳଚ୍ଚିତ୍ରରେ ନରହେ ସେଥିପ୍ରତି ସେମାନେ ସଜାଗ ରହୁଥିଲେ; କିଛିଥିଲେ ତା'ବିରୁଦ୍ଧରେ ଅସ୍ତ୍ର ଚଳାଇବା ଅଧିକାର ତାଙ୍କୁ ଦିଆଯାଇଥିଲା ।

ମାତ୍ର ୩୦ ହଜାର ଟଙ୍କା ଖର୍ଚ୍ଚରେ ନିର୍ମିତ ''ସୀତା ବିବାହ'' ସେନ୍‌ସର୍ ସାର୍ଟିଫିକେଟ୍ ପାଇଥିଲା କଲିକତାର ଲାଲ୍‌ବାଗ୍ ପୁଲିଶ୍ କମିଶନ୍‌ଙ୍କ ଅଫିସରୁ । ଉକ୍ତ ସେନ୍‌ସର୍ ସାର୍ଟିଫିକେଟ୍‌ରେ କଲିକତାର କାଳୀଫିଲ୍ମସ୍ ସିନେମାର ନିର୍ମାତା ବୋଲି ଉଲ୍ଲେଖ ରହିଛି ।

କେଉଁପ୍ରକାର ନିର୍ଦ୍ଦେଶନା ଚାତୁରୀ, କି ସ୍ତରର ଦୃଶ୍ୟାୟନ, କିପରି ଅଭିନୟ, କି ପ୍ରକାରର ସଂପାଦନା କୌଶଳ ପ୍ରଭୃତି ଦ୍ୱାରା ପରିପୁଷ୍ଟ ହୋଇଥିଲା ''ସୀତା ବିବାହ'' ସିନେମା ଆଜି ଏ ସମୀକ୍ଷକ ଜାଣିବାକୁ ଅକ୍ଷମ । ''ସୀତା ବିବାହ''ର ଗୋଟିଏ ମଧ୍ୟ

ପ୍ରିଣ୍ଟ ଏବେ ବଞ୍ଚି ନାହିଁ, ଏପରିକି ତାର ନେଗେଟିଭ୍ ମଧ୍ୟ ବହୁ ପୂର୍ବରୁ ନଷ୍ଟ ହୋଇ ଯାଇଛି । ସିନେମାଟି କେବେ ମୁକ୍ତି ପାଇଥିଲା ତାହା ଗୋଟିଏ ଖବର କାଗଜ ବିବରଣୀରୁ ଜାଣିବା ସମ୍ଭବ ହେଉଛି । ସେହି ଖବର କାଗଜ ''ଉତ୍କଳ ଦୀପିକା'' ତାର ୧ମେ ୧୯୩୬ ସଂଖ୍ୟାରେ ଆମ ପ୍ରଥମ ଚଳଚ୍ଚିତ୍ର ଉପରେ ଗୋଟିଏ ସମୀକ୍ଷା ମଧ୍ୟ ପ୍ରକାଶ କରିଥିଲା । (ସେଇ ସମୀକ୍ଷାର କିଛି ଅଂଶ ପରେ ପ୍ରକାଶ କରାଯିବ) । ପ୍ରଥମେ ''ସୀତା ବିବାହ''ର କାହାଣୀ-ବିନ୍ୟାସ କି ପ୍ରକାରର ହୋଇଥିଲା ଜାଣିବାକୁ ଏଠାରେ ଉଦ୍ୟମ ହେବ । ଏଇ ଉଦ୍ୟମର ସହାୟକ ହୋଇଛି ଏବେ ମଧ୍ୟ ''ସୀତା ବିବାହ''ର ସଂଗୀତ ଓ ସଂଳାପକୁ ଆଧାର କରି କାଳୀ ଫିଲ୍ମସ୍ ସେତେବେଳେ ପ୍ରସ୍ତୁତ କରିଥିବା ଚାରି ଗୋଟି ଗ୍ରାମଫୋନ୍ ରେକର୍ଡ୍ ଦ୍ୱାରା । ସୁଖର କଥା କଟକର ରାଣୀହାଟ ନିବାସୀ ଶ୍ରୀ ଇନ୍ଦ୍ରମଣି ସାହୁ ତାଙ୍କ ଗ୍ରାମଫୋନ୍ ରେକର୍ଡ଼ ଲାଇବ୍ରେରୀରେ ଏବେ ମଧ୍ୟ ସୁରକ୍ଷିତ ରଖିଛନ୍ତି ରେକର୍ଡ଼ ଗୁଡ଼ିକ । ଦୁଇ ଘଣ୍ଟା ଦୀର୍ଘ ''ସୀତା ବିବାହ'' ଚଳଚ୍ଚିତ୍ରର ୧୪ ଗୋଟି ଗୀତରୁ କିଛି କିଛି ଅଂଶ ଏବଂ କିଛି ସଂଳାପ ଦ୍ୱାରା ସେହି ରେକର୍ଡ୍ ଚାରୋଟି ପ୍ରସ୍ତୁତ ହୋଇଛି । ପ୍ରତିଟି ରେକର୍ଡ୍ ଉପରେ ଲେଖା ହୋଇଛି ''କାଳୀ ଫିଲ୍ମସ୍ ରେକର୍ଡ୍ସ୍ ଫ୍ରମ ଦି ଫିଲ୍ମ ସୀତା ବିବାହ'' । ଇନ୍ଦ୍ରମଣି ବାବୁଙ୍କ ସୌଜନ୍ୟରୁ ତାଙ୍କ ସଯତ୍ନ ସାଇତା ଗ୍ରାମଫୋନ୍‌ର ସେହି ରେକର୍ଡ୍ ଗୁଡ଼ିକ ବାରମ୍ବାର ଶୁଣିବା ମୋ ପକ୍ଷେ ସମ୍ଭବ ହୋଇଥିଲା । ସେହି ରେକର୍ଡ୍ ଗୁଡ଼ିକଦ୍ୱାରା ସିନେମାଟିର ଘଟଣା ବିନ୍ୟାସ ଯେତିକି ଜାଣିବା ସମ୍ଭବ ହେଉଛି, ତା' ଉପରେ ଆଧାର କରି ପ୍ରଦାନ କରା ଯାଉଛି ନିମ୍ନୋକ୍ତ ବିବରଣୀ ।

ରାଜସଭା ଅଳଙ୍କୃତ କରିଛନ୍ତି ମହାରାଜ ଦଶରଥ । ରାଜନର୍ତ୍ତକୀମାନେ ଗାଉଛନ୍ତି ଗୋଟିଏ ମିଳିତ ଗୀତ, ରାଜା ଓ ସଭାସଦ୍‌ଙ୍କ ମନୋରଞ୍ଜନ ପାଇଁ (ମିଳିତ କଣ୍ଠର ଗୀତଟି ସମ୍ଭବତଃ ସିନେମାର ନାଚ ସହ ପରିବେଷିତ ହୋଇଥିଲା) । ପରେ ପରେ ପହଞ୍ଚିଛନ୍ତି ଋଷି ବିଶ୍ୱାମିତ୍ର । ଦଶରଥ ତାଙ୍କୁ ଯଥାଯୁକ୍ତ ସମାଦରେ ଆସନ ଗ୍ରହଣ କରିବାକୁ କହିଛନ୍ତି ଓ ଆଗମନର କାରଣ ଜିଜ୍ଞାସା କରିଛନ୍ତି । ବିଶ୍ୱାମିତ୍ର କହିଛନ୍ତି ଯେ ରାକ୍ଷସ ନିଧନ ପାଇଁ ସେ ଚାହାନ୍ତି ତାଙ୍କର ଦୁଇ ପୁତ୍ର, ରାମ ଓ ଲକ୍ଷ୍ମଣଙ୍କର ସାହାଯ୍ୟ; କାରଣ ତପସ୍ୱୀମାନଙ୍କର ତପଃଭଙ୍ଗ କରୁଛନ୍ତି ରାକ୍ଷସମାନେ । ଋଷିଙ୍କ ନିବେଦନରେ ରାଜି ହୋଇଛନ୍ତି ଦଶରଥ ସୁକୁମାର କିନ୍ତୁ ଯୁଦ୍ଧବିଦ୍ୟା-କୁଶଳୀ ରାମ, ଲକ୍ଷ୍ମଣ ଅନୁଗମନ କରିଛନ୍ତି ବିଶ୍ୱାମିତ୍ରଙ୍କୁ ।

ଶ୍ଳୋକଗାନରେ ମୁଖରିତ ଏକ ଆଶ୍ରମରେ ପହଞ୍ଚିଛନ୍ତି ତିନିହେଁ । ଖୁବ୍ ଶୀଘ୍ର ସେମାନଙ୍କୁ ମୁକାବିଲା କରିବାକୁ ପଡ଼ିଛି ଯଜ୍ଞ-ଭ୍ରଷ୍ଟ କରିବାକୁ ଆସୁଥିବା ତାଡ଼କା ଓ ସୁବାହୁକୁ । ସେମାନଙ୍କ ରଡ଼ି ଶୁଣା ଯାଉଛି । ତେଜସ୍ୱୀ ରାମ ଧର୍ନୁବାଣରେ ହତ୍ୟା କରିଛନ୍ତି ତାଡ଼କାକୁ । ଆଉ ଏକ ନାରାଚ ବିନ୍ଧି ସେ ସୁବାହୁକୁ ଉଡ଼ାଇ ଦେଇଛନ୍ତି ଯୋଜନ, ଯୋଜନ ଦୂରକୁ ।

''ସୀତା ବିବାହ''ର ଗ୍ରାମଫୋନ୍ ରେକର୍ଡ୍
ଏବଂ ରେକର୍ଡ୍ ସଂଗ୍ରାହକ ଇନ୍ଦ୍ରମଣି ସାହୁ



ବିଶ୍ୱାମିତ୍ର ଖୁସି ହୋଇ ରାଜପୁତ୍ର ଦ୍ୱୟଙ୍କୁ ନେଇଛନ୍ତି ଗୌତମଙ୍କ ଆଶ୍ରମ ଦେଖାଇବାକୁ । ସେମାନଙ୍କୁ ସେ ଗୋଟିଏ ଗୀତ ''ଏଇ ଯେ ଆଶ୍ରମ ଦେଖୁଛ ଶ୍ରୀରାମ ଏ ଯେ ଗଉତମ ବାସ'' ଗାଇ ଗାଇ ଆଶ୍ରମ ବୁଲାଉଛନ୍ତି । ପରେ ପରେ ରହିଛି ପୁରୁଷ କଣ୍ଠରେ ଅନ୍ୟ ଏକ ଗୀତ, ''ଦେବଙ୍କ ତାରଣେ, ଦନୁଜ ମାରଣେ'' ଯାହା ଶ୍ରୀରାମଙ୍କ ପ୍ରଶସ୍ତିରେ ଭରପୂର । ସେତିକି ବେଳେ ରାମଙ୍କ ଦୃଷ୍ଟିରେ ପଡ଼ିଛନ୍ତି ପଥର ଅହଲ୍ୟା, ଗୌତମଙ୍କ ଅଭିଶାପରେ ପ୍ରସ୍ତର ପାଲଟିଥିବା ଋଷିପତ୍ନୀ । ଶ୍ରୀରାମ ତାଙ୍କୁ ଛୁଇଁ ଦେବା ମାତ୍ରେ ସେ ପୁନଶ୍ଚ ଫେରି ପାଇଛନ୍ତି ଜୀବନ ଓ ଗାଇଛନ୍ତି ରାମ ବନ୍ଦନାଟିଏ ।

ତାପରର ଦୃଶ୍ୟଟି ହାସ୍ୟରସ ପାଇଁ ଉଦ୍ଦିଷ୍ଟ  କାରଣ ଜଣେ ଧୀବର ଓ ତା'ର ପତ୍ନୀ ମଧ୍ୟରେ ଦାମ୍ପତ୍ୟ କଳହ ହାସ୍ୟ ଉଦ୍ରେକକାରୀ ସଂଳାପ ଓ ଦ୍ୱୈତ-କଣ୍ଠର ଗୀତ (''ଡୁଏଟ୍'') ମାଧ୍ୟମରେ ପରିବେଷିତ ହୋଇଛି ।

ଯା ପରେ ରହିଛି ଜନକଙ୍କ ରାଜସଭାର ଦୃଶ୍ୟ । ରାଜ ଦରବାରରେ ପହଞ୍ଚିଛନ୍ତି ନାରଦ । ସୀତା-ପରିଣୟର ପଛା ଚର୍ଚ୍ଚା କରିଛନ୍ତି ଜନକ ଓ ନାରଦ । ପରେ ପରେ ସୀତା ଗୀତଟିଏ ଗାଉଥିବା ଶୁଣା ଯାଉଛି ।

ତେଣେ ରାମ, ଲକ୍ଷ୍ମଣ ଓ ବିଶ୍ୱାମିତ୍ର ପ୍ରବେଶ କରିଛନ୍ତି ଜନକଙ୍କ ରାଜ୍ୟରେ । ସୀତା ସ୍ୱୟଂବର ସଂବାଦ ଶୁଣିପାରିଛନ୍ତି ସେମାନେ । ଜାନକୀଙ୍କ ରୂପ ଲାବଣ୍ୟ ବର୍ଣ୍ଣନା କରି ବିଶ୍ୱାମିତ୍ର ଗାଉଛନ୍ତି ''ଅପୂର୍ବ କୁମାରୀ ତ୍ରିପୁରା ସୁନ୍ଦରୀ...'' ନାମକ ଗୀତ । ରାମଙ୍କୁ ସେ ପ୍ରସ୍ତାବ ଦେଉଛନ୍ତି ଯେ, ସୀତା ପାଣିଗ୍ରହଣ ପାଇଁ ସେ ଯତ୍ନବାନ ହୁଅନ୍ତୁ ।

ସେମାନଙ୍କ ଯାତ୍ରା ପଥରେ ପଡ଼ିଛି ଗଙ୍ଗା । ନଦୀ ପାର ହେବା ପାଇଁ ନାଆରେ ବସିବାକୁ ହେବ । ନାଉରିଆ କିନ୍ତୁ ଅଡ଼ି ବସୁଛି ''ବସାଇ ନ ଦେବି ନାବେ ନ ଧୋଇ ପାଦ... ।'' ଶ୍ରୀରାମଙ୍କ ଚରଣ ଧୋଇ ଦେଇ କେଉଟ ସେମାନଙ୍କୁ ନାଆରେ ବସାଇ ଗାଉଛି, ''ଇନ୍ଦ୍ରନୀଳ ମଣି ଗୃହରେ ଶୋଇଛି ସହି ସୁନାଗୋରୀ ସୀତା...'' ।

ରାଜବାଟିକାରେ ସୀତାଙ୍କ ସଖିମାନେ ମିଳିତ କଣ୍ଠରେ ଗାଉଛନ୍ତି, ''ଦୂର ଶଇଳ ଚୂଳେ'' ନାମକ ଗୀତଟିଏ । ପରେ ପରେ ସଖିମାନଙ୍କ ଗହଣରେ ପ୍ରବେଶ କରିଛନ୍ତି ସୀତା । ସେମାନେ ସମସ୍ତେ ଚର୍ଚ୍ଚା କରିଛନ୍ତି ଆଗତ-ପ୍ରାୟ ସୀତା-ପରିଣୟ ବିଷୟ । ସୀତା ଗାଇଛନ୍ତି ଗୀତଟିଏ ''କାଲି ଦେଖିଲିଟି ମଧୁର ଚାଲିକି...'' । ସଖିମାନେ ମଧ ମିଳିତ କଣ୍ଠରେ, ''କାହିଁକି ଗୋ ପ୍ରିୟ ସଖି'' ବୋଲି ସୀତୟା-ତୋଷକ ଗୀତଟିଏ ଗାଇଛନ୍ତି ।



''ସୀତା ବିବାହ''ର ଶ୍ରୀରାମ ଭୂମିକାରେ ମାଖନ୍‌ଲାଲ୍ ବାନାର୍ଜି

ଉପସ୍ଥିତ ହୋଇଛି ସ୍ୱୟଂବର ଦିବସ । ରଜସଭାରେ ପ୍ରବେଶ କରିଛନ୍ତି ବିଶ୍ୱାମିତ୍ର, ''ମରକତ ହେମ ବେନି କଳେବର' ରାମ ଲକ୍ଷ୍ମଣଙ୍କୁ ନେଇ । ଜନକ ସମ୍ମାନ ଦେଇଛନ୍ତି ବିଶ୍ୱାମିତ୍ରଙ୍କୁ, ସ୍ୱାଗତ କରିଛନ୍ତି ରାଜପୁତ୍ର ଦ୍ୱୟଙ୍କୁ । ଶିବଧନୁ ଉତ୍ତୋଳନର ଉଦ୍ୟମ କରି ବିଫଳ ହୋଇଛନ୍ତି ଜଣକ ପରେ ଜଣେ ରାଜା । ଶ୍ରୀରାମ କିନ୍ତୁ ଏମିତି ଅନାୟସରେ ଉଠାଇ ଦେଉଛନ୍ତି ଧନୁଟି ଯେ ତାହା ଭାଙ୍ଗି ପଡୁଛି ଦି'ଖଣ୍ଡ ହୋଇ । ଜନକ ନନ୍ଦନୀ ଏଣୁ ବରଣମାଳା ଲମ୍ବାଇ ଦେଉଛନ୍ତି ଅଯୋଧ୍ୟା ଯୁବରାଜଙ୍କ ଗଳାରେ । ସଖିମାନେ ମିଳିତ କଣ୍ଠରେ ଗାଉଛନ୍ତି, ''ଶୁଭେ ସିମନ୍ତିନି ଧ୍ୱନି...'' ।

ନବ ପରିଣିତା ସୀତାଙ୍କୁ ନେଇ ଗଲାବେଳେ ଶ୍ରୀରାମଙ୍କ ପଥରୋଧ କରିଛନ୍ତି ପର୍ଶୁରାମ । ଏଣୁ ଦୁଇ ବୀରଙ୍କ ମଧ୍ୟରେ ହୋଇଛି ଏକ ଅପରିହାର୍ଯ୍ୟ ଯୁଦ୍ଧ ଓ ସେଥିରେ ପରାଭବ ପାଇଛନ୍ତି ପର୍ଶୁରାମ । ସୂର୍ଯ୍ୟବଂଶର ଗର୍ବରୂପେ ଶ୍ରୀରାମ ସୀତୟାଙ୍କୁ ନେଇ ପ୍ରବେଶ କରିଛନ୍ତି ଅଯୋଧ୍ୟାରେ...।

ଚଉଦ ଗୋଟି ଗୀତର ଝଙ୍କାରରେ ଝଙ୍କୃତ ଥିଲା ''ସୀତା ବିବାହ'' ସିନେମା । ଶ୍ରୀରାମ ଓ ନାଉରୀ ମଧ୍ୟରେ ଆଳାପ ବେଳେ ଉପେନ୍ଦ୍ରଭଞ୍ଜଙ୍କ ବୈଦେହୀଶ ବିଳାସର କିଛି ପଦ ବ୍ୟବହୃତ ହୋଇଛି । ଅଧିକାଂଶ ଗୀତ ଲେଖିଥିଲେ ମୋହନ ସୁନ୍ଦର; ଧୀବର ଭୂମିକା ନେଇଥିବା ନନ୍ଦଶର୍ମା ଲେଖିଥିଲେ ଦୁଇଟି ଗୀତ । ରେକର୍ଡ଼ରୁ ସଂଗୀତ ଗୁଡ଼ିକ ଶୁଣି ମନେହେଲା, ଓଡ଼ିଶା ମାଟିରେ ପ୍ରଚଳିତ ସଂଗୀତ ପରଂପରା ରକ୍ଷା ପାଇଁ ମୋହନ ସୁନ୍ଦର ଯତ୍ନବାନ ହୋଇଥିଲେ । ସମସ୍ତ ସଂଗୀତଶିଳ୍ପୀଙ୍କୁ ସେ ଓଡ଼ିଶାରୁ ନେଇଥିବାରୁ ଏହା ସମ୍ଭବ ହୋଇଥିଲା ।

ବାର ରିଲ ବିଶିଷ୍ଟ ''ସୀତା ବିବାହ''ର ପ୍ରଥମ ପ୍ରିଣ୍ଟଟି ୨୫ ମାର୍ଚ୍ଚ ୧୯୩୬ ସୁଦ୍ଧା ପ୍ରସ୍ତୁତ ହୋଇ ଯାଇଥିବା ପ୍ରକାଶ । ତେବେ ମୋହନ ସୁନ୍ଦରଙ୍କ ବହୁ ଦିନର ସ୍ୱପ୍ନକୁ ସାକାର କରିଥିବା ସେହି ବାରଟି ରିଲ୍ ଟଲିଗଞ୍ଜରୁ କୁଣ୍ଢେଇବେଣ୍ଟ ସାହିରେ କିପରି ପହଞ୍ଚିଲା, ସେଥି ପାଇଁ ମୋହନ ସୁନ୍ଦର ପୁନଶ୍ଚ କଲିକତା ଯାଇଥିଲେ କି ନାହିଁ, ସେ କଥା ଏବେ ସଠିକ୍ କହି ହେବନି । ତେବେ କଥିତ ଯେ, ରିଲ୍ ଗୁଡ଼ିକ ଏକ ବର୍ତ୍ତୁଳାକାର କାଠ ପେଡ଼ିରେ ସେତେବେଳେ ପୁରୀ-କଲିକତା ମଧ୍ୟରେ ଚଳପ୍ରଚଳ କରୁଥିବା ଏକ୍ସପ୍ରେସ୍‌ରେ ପହଞ୍ଚିଥିଲା । ପୁରୀ ଷ୍ଟେସନ୍‌ରୁ ରିଲ୍ ଗୁଡ଼ିକ ମୋହନ ସୁନ୍ଦର ସେତେବେଳେ ବହୁଳ ବ୍ୟବହୃତ ଘୋଡ଼ାଗାଡ଼ି (ଟାଙ୍ଗା)ରେ ନିଜ ନିବାସକୁ ନେଇ ଯାଇଥିଲେ । ତଥାପି ମାସାଧିକ କାଳର ଉଦ୍ୟମ ପରେ ହିଁ ପୁରୀର ଗୋଟିଏ ନବ ନିର୍ମିତ ସିନେମା ହଲ୍ (ଲକ୍ଷ୍ମୀ ଟକି)ରେ ''ସୀତା ବିବାହ'' ମୁକ୍ତି ପାଇଥିଲା । ସେଇ ପ୍ରେକ୍ଷାଳୟରେ ଟିକେଟ୍ ଖରିଦକାରୀ ଦେଖଣାହାରିମାନଙ୍କ ପାଇଁ ପ୍ରଥମେ ପ୍ରଦର୍ଶିତ ହୋଇଥିଲା ''ସୀତା ବିବାହ'' ।

ତେବେ ସିନେମାଟିର ଶୁଭମୁକ୍ତି ପାଇଁ ପୁଣି ଅଧିକା ଟଙ୍କା ଖଟାଇ ଥିଲେ ମୋହନ ସୁନ୍ଦର । ''ସୀତା ବିବାହ'' ସାତ ଦିନ ପ୍ରଦର୍ଶିତ କରିବା ପାଇଁ ହଲ୍ ଭଡ଼ା ୧୭୫ ଟଙ୍କା

ଦେଇ ଛବିଟିକୁ ସେ ପ୍ରେକ୍ଷାଳୟରେ ଚଳାଇଥିଲେ । ପ୍ରଥମ ଦିନର ସୋ ଦେଖି ସାରି ଅତନୁ ନାମକ ଜଣେ ସମୀକ୍ଷକ ''ସୀତା ବିବାହ'' ଉପରେ ଗୋଟିଏ ସମୀକ୍ଷା ଲେଖିଥିଲେ ''ଉତ୍କଳ ଦୀପିକା''ରେ । କର୍ମବୀର ଗୌରୀ ଶଙ୍କରଙ୍କଦ୍ୱାରା ୧୮୬୬ ସାଲରେ ସାପ୍ତାହିକ ପତ୍ରିକା ରୂପେ ପ୍ରତିଷ୍ଠିତ ସେହି ଓଡ଼ିଆ ସମ୍ବାଦପତ୍ରଟି ସେତେବେଳକୁ ଦୈନିକ ରୂପେ ପ୍ରକାଶ ପାଉଥାଏ । ସେ ସମୟରେ ତାହା ସଂପାଦନା କରୁଥାଆନ୍ତି ଏମ୍. ଏ ଉପାଧିଧାରୀ ଶ୍ରୀ ଜଗନ୍ନାଥ ଦାସ । ମେ' ପହିଲା ୧୯୩୬ ''ଉତ୍କଳ ଦୀପିକା''ର ତୃତୀୟ ପୃଷ୍ଠାରେ ଅତନୁ ଲେଖିଥିବା ସମୀକ୍ଷା ଅନ୍ତତଃ ଦୁଇ କଲମ୍ ମଣ୍ଡନ କରି ଆତ୍ମପ୍ରକାଶ କରିଥିଲା । ନିମ୍ନରେ ପ୍ରଦତ୍ତ ହେଲା ସେହି ବିବରଣୀର ଏକ ବଡ଼ ଅଂଶ

''(ଶିରୋନାମା)'' **ଓଡ଼ିଆ ସବାକ୍ ଚଳଚ୍ଚିତ୍ର - ସୀତା ବିବାହ**

ପୁରୀ, ୨୯/୪ । ଆଶା ଆଶଂକାରେ ଉଦ୍‌ବେଗ ନିରୁଦ୍‌ବେଗରେ ସର୍ବପ୍ରଥମ ଓଡ଼ିଆ ଛାୟାଛବି ଦେଖିବା ପାଇଁ ଅନେକେ ଚାହିଁ ବସିଥିଲେ । ଗଲାକାଲି ପୁରୀର ଲକ୍ଷ୍ମୀ ଟକି ହାଉସ୍ ସେଇ ଛବି 'ସୀତା ବିବାହ' ପ୍ରଥମେ ପରିବେଷଣ କରି ନିଜକୁ ଧନ୍ୟ ମନେ କରିଥିବେ । ଚଳଚ୍ଚିତ୍ର ରାଜ୍ୟରେ ଓଡ଼ିଆର ଏହି ହେଉଛି ସର୍ବ ପ୍ରଥମ ଆତ୍ମପ୍ରକାଶ । ଏଣୁ ଶତ ଦୋଷତ୍ରୁଟି ସତ୍ତ୍ୱେ ଯାକୁ ଅଭିବାଦନ ନ ଜଣାଇ ରହି ପାରୁ ନାହିଁ । ତଥାପି ସମାଲୋଚନା ନିତାନ୍ତ ଆବଶ୍ୟକ । କାଲି ଛବିଟିକୁ ଦେଖିବାର ସୁଯୋଗ ପାଇ ଯାହା ମନରେ ଆସିଛି ଲେଖୁଛି ।

**କଥାବସ୍ତୁ ଓ ପ୍ରଯୋଜନା** : ସୁଲେଖକ ସ୍ୱର୍ଗତ କାମପାଳ ମିଶ୍ରଙ୍କ ସୀତା ବିବାହ ନାଟକଟି ଛାୟାଛବିରେ ପରିଣତ କରି ଉଦ୍ୟୋକ୍ତାମାନେ ସୀତା ବିବାହ ସବାକ୍ ଚିତ୍ର ପ୍ରସ୍ତୁତ କରିଛନ୍ତି । ମାତ୍ର ପ୍ରକୃତରେ ସିନେମାଟି ଭାବସଂଚାରଯୋଗୀ ହୋଇଛି ତ ? ଦୃଢ଼ ସ୍ୱରରେ କହିପାରେ 'ନାଁ' । ଏକେ ତ କାମପାଳ ମିଶ୍ରଙ୍କ ଲେଖା ଆଧୁନିକ ଦୃଷ୍ଟି କୋଣରୁ ଉଚିତ ନୁହେଁ । ସେଥିରେ ପୁଣି ପ୍ରଯୋଜକ ମୋହନ ଗୋସ୍ୱାମୀଙ୍କ ବୁଦ୍ଧିହୀନ ପ୍ରଯୋଜନା– ଯାକୁ ଆହୁରି ବିକୃତ, ଆହୁରି ରସରାଗ ଶୂନ୍ୟ କରି ଦେଇଛି ।... ପ୍ଲଟ୍‌ରେ ଓ ଟେକ୍‌ନିକ୍‌ରେ କର୍ମ କୌଶଳ ନାହିଁ । ମୋହନ ସୁନ୍ଦର ଯଦି ରାସଲୀଳାଟିଏ ଟକିରେ ଦେଇଥାନ୍ତେ ମନ୍ଦ ହୋଇ ନ'ଥାନ୍ତା । ..ମାତ୍ର ରାସଲୀଳା ଓ କାମପାଳ ମିଶ୍ରଙ୍କର କଥାନୁକମ୍ପନ ମିଶି ଗୋଟାଏ ଅଦ୍ଭୁତ ଜିନିଷ ସୃଷ୍ଟି ହୋଇଛି । ଏ ଜିନିଷଟି ସଂସ୍କୃତ ଶ୍ରେଣୀର ମନଲାଖି ନୁହେଁ କି ଗାଉଁଲି ଲୋକର ମନଲାଖି ନୁହେଁ ।...

ଶବ୍ଦ ଗ୍ରହଣ, ଚିତ୍ର ଗ୍ରହଣ ପ୍ରଭୃତି କୌଣସି ଓଡ଼ିଆଙ୍କଦ୍ୱାରା ସଂପନ୍ନ ହୋଇନାହିଁ । ତଥାପି ଏ ଗୁଡ଼ିକ ବି ଉଚ୍ଚଧରଣର ହୋଇପାରି ନାହିଁ ।

ଛବିଟିରେ ଓଡ଼ିଆ ସ୍ୱରରେ କେତେଟା ଗୀତ, ଗୀତରାସର ସମାବେଶ ହୋଇଛି । କିନ୍ତୁ ସ୍ୱର ସଂଯୋଜନା ଦୋଷରୁ ଅଭିନେତା ଅଭିନେତ୍ରୀଙ୍କ ଗାଇବାର କେତେକ ତ୍ରୁଟି

ହେବାରୁ ତାହା ମନୋହର ହୋଇନାହିଁ । କେବଳ ଧୀବର ଓ ଧୀବର ପତ୍ନୀର ଡୁଏଟ୍ ଗୀତ, ଧୀବରର ଅନ୍ୟ ଗୋଟିଏ ଦୁଇଟି ଓ ଅହଲ୍ୟାର ଗୀତଟି ଉପଭୋଗ୍ୟ ବୋଧହୁଏ । ଆଳାପ, ସଂଳାପ-ମନ୍ଥର, ପ୍ରାଣହୀନ, ନିହାତି ପୁରୁଣା କାଳର; ସେଥିରେ ପୁଣି ତାର ଯଥୋପଯୁକ୍ତ ସମାବେଶର ଅଭାବ ରହିଛି ।

ପ୍ରଧାନ ପ୍ରଧାନ ଅଭିନେତା, ଅଭିନେତ୍ରୀଙ୍କ ଭିତରୁ ବିଶ୍ୱାମିତ୍ର ଭୂମିକାରେ ମୋହନ ଗୋସେଇଁ, ସୀତା ଭୂମିକାରେ ମିସ୍ ପ୍ରଭାଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଓଡ଼ିଶାକୁ ଚାହିଁ ଚଳନସଇ ଅଭିନୟ କରିଛନ୍ତି । ରାମ ରୂପରେ ମାଖନ୍‌ଲାଲ୍ ଶର୍ମା ସୁନ୍ଦର, ନିଖୁଣ ଅଭିନୟ ଦେଖାଇ ପାରିଛନ୍ତି । ତାଙ୍କର ଧୀର, ସରଳ, ଉଦାର ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ଅଭିବ୍ୟକ୍ତି ମନୋରମ ବୋଧ ହେଲା । ଡାକ୍ତର ଅଦ୍ୱୈତ ମହାନ୍ତି ଲକ୍ଷ୍ମଣ ଭୂମିକାରେ ମନ ମାଫିକେ ଭଲ ଅଭିନୟ କାଳାଭଳି ସୁଯୋଗ ପାଇ ନାହାନ୍ତି । ତଥାପି ଶେଷରେ ତାଙ୍କର ପଦେ ଦି'ପଦ କଥା କହିବା ଭଙ୍ଗୀରେ ଚମତ୍କାରୀତା ନାହିଁ ବୋଲି କହି ହେବ ନାହିଁ । ଏହି ଦୁଇ ଅଭିନେତାଙ୍କର ଭବିଷ୍ୟତ ଅନୁକୂଳ ନୁହେଁ । ଧୀବର ଭୂମିକାରେ ନରସିଂହ ନନ୍ଦ ସମସ୍ତଙ୍କୁ ଟପି ଯାଇଛନ୍ତି



''ସୀତା ବିବାହ''ର ନାଉରୀ ନରସିଂହ ନନ୍ଦଶର୍ମା ଏକ ପରବର୍ତ୍ତୀ ସିନେମାରେ

ତାଙ୍କର ମୁକ୍ତ, ଅବାଧ ଅଭିନୟରେ । ସୀତା ବିବାହ ଛବିଟିରେ ଯଦି କାହାକୁ ଦେଖି ମୁଗ୍ଧ ହେବାର ସେ ଏ ଧୀବର । ସ୍ୱାଭାବିକ ଭାବ ପ୍ରକାଶରେ ସେ ଯେ କୌଣସି ବଙ୍ଗଳାର ପ୍ରଖ୍ୟାତ କମିକ୍ ଅଭିନେତା ସଙ୍ଗେ ସୁନ୍ଦର ଟକ୍‌କର ଦେବେ । ତାଙ୍କର ଗୀତ ବି ସୁନ୍ଦର ଲାଗିଲା । ତେବେ ଠାଏ ଦି'ଠା ସେ ଅତିଶୟ ଅଭିନୟ କରିଛନ୍ତି । ତଥାପି ସେ ଯେ

ଛବିଟିର ଶ୍ରେଷ୍ଠ ଅଭିନେତା ମୁକ୍ତ କଣ୍ଠରେ ସ୍ୱୀକାର ନ କରି ରହି ପାରୁନାହିଁ । ତାଙ୍କୁ ଅଭିବାଦନ ଜଣାଉଛୁ । ଜନକ ରୂପରେ କୃଷ୍ଣସିଂହ ବିଶେଷ କିଛି କୃତିତ୍ୱ ଦେଖାଇ ନାହାନ୍ତି । ....(ମୋହନ ଗୋସେଇଁଙ୍କ) ଅଭିନୟ ସଂକ୍ଷିପ୍ତ ଇଂରାଜୀରେ କହିବାକୁ ଗଲେ 'କାଡ଼ାଭରସ୍' (Cadavorous)...

ଅଭିନେତ୍ରୀ ସମାଜରେ ସୀତା ଭୂମିକାରେ ମିସ୍ ପ୍ରଭା ଅଭିନୟ କରିବା ଲାଗି ବିଶେଷ ସୁଯୋଗ ପାଇଛନ୍ତି । କିନ୍ତୁ ଶ୍ରୀମତିଙ୍କର ପୃଥୁଳ ଦେହର ଜ୍ୟୋତିବିହୀନ କୋଟରଗତ ଚକ୍ଷୁ ସହିତ ଜୀବନ ରହିତ ଅଭିନୟ ସୀତା ବିବାହ ଛବିଟିକୁ ଅନେକାଂଶରେ ଅନୁପଭୋଗ୍ୟ କରିଛି । ଆଚ୍ଛା, ସଖି ହୋଇଥିବା ମିସ୍ ଚନ୍ଦ୍ରପ୍ରଭାଙ୍କୁ ସୀତା କରିବାକୁ ପ୍ରଯୋଜକଙ୍କୁ ଦିଶିଲା ନାହିଁ ନା' କ'ଣ ?... ଅନ୍ୟ ଅଭିନେତ୍ରୀମାନଙ୍କ ଅଭିନୟରେ ସଂଯମ ନାହିଁ, ଚାଲି ଚଳଣରେ ସ୍ୱାଭାବିକତା ନାହିଁ । ...କେବଳ ଅଭିନେତ୍ରୀମାନଙ୍କ ସାବଲୀଳ ଅଭିନୟାଭବରୁ ଧୀବର ପତ୍ନୀ ଅନେକାଂଶରେ ଧୀବର ସହିତ କାନ୍ଧ ମିଳାଇ ପାରି କୃତିତ୍ୱ ଦେଖାଇ ପାରିଛନ୍ତି ।

*–"ଉତ୍କଳ ଦୀପିକା" (୧ମେ' ୧୯୩୬ ଶେଷ ପୃଷ୍ଠା)*

ଅତନୁଙ୍କ ସେହି ସମୀକ୍ଷା ପ୍ରକାଶ ପାଇବାର ୨୦ ଦିନ ପରେ, "ଉତ୍କଳ ଦୀପିକା"ର ୨୧ମେ' ୧୯୩୬ ସଂଖ୍ୟାରେ ଶ୍ରୀ ଶାରଦା ପ୍ରସାଦ ମହାନ୍ତି, ସମୀକ୍ଷକ ଦେଇଥିବା କେତୋଟି କଟୁ ମନ୍ତବ୍ୟ ଖଣ୍ଡନ କରିବା ପାଇଁ ପ୍ରୟାସୀ ହୋଇଥିଲେ । ତାଙ୍କ ପ୍ରତିକ୍ରିୟାରୁ କିଛି ନିମ୍ନରେ ଉଦ୍ଧାର କରାଯାଉଛି :

"ଅତନୁ ମହାଶୟ ! ଆପଣଙ୍କ ଜନ୍ମଭୂମି ଉତ୍କଳରେ ତ ! ଉତ୍କଳରେ ଯେତେ ଅନୁଷ୍ଠାନ ଅଛି ତା' ମଧ୍ୟରୁ ସଙ୍ଗୀତ କଳା ଗଭୀର ଗିରିଗୁହା ଭିତରେ ଅପ୍ରକାଶ୍ୟ ରହି ବନ କୁସୁମ ପରି ନିଜେ ଫୁଟି ନିଜେ ଝଡ଼ି ପଡୁଛି । ଉତ୍କଳ ଭୂମିର ସର୍ବ ସଂପ୍ରଦାୟ ସମନ୍ୱୟ ପ୍ରେମ, ଧର୍ମର ସ୍ତମ୍ଭ ସ୍ୱରୂପ ନିଳାଦ୍ରୀନାଥଙ୍କର ଯେଉଁ ଶ୍ରୀମନ୍ଦିର ଦଣ୍ଡାୟମାନ ହୋଇ ସର୍ବଚିତ୍ତ ଆକର୍ଷଣ କରୁଛି ସେ କ'ଣ କେବଳ ପ୍ରଥମାନୁଷ୍ଠାନ, ଏକ ଦିନର ଫଳ ?... ଆମ ଦେଶରେ ଏପରି ରଙ୍ଗମଞ୍ଚ ଅଛି କି ଯହିଁରେ ମହିଳାମାନେ ଅଭିନୟ କରି ନାଟ୍ୟକଳାର କୌଶଳ ଲାଭ କରିବେ ?

...ସୀତା ପାର୍ଟରେ ଓଡ଼ିଆ ଦେଶର ଅବଳା ପ୍ରଭା ତାର ସାଧ୍ୟସହକାରେ ଯାହା ଅଭିନୟ କରିଛି ତାହା ଓଡ଼ିଆ ବାଳିକା ପକ୍ଷେ ଯଥେଷ୍ଟ ଓ ଗୌରବର ବିଷୟ ନୁହେଁ କି ? ଯେ ଅନୁଷ୍ଠାତା, ଯାହାର ଅଧ୍ୟବସାୟରେ ଏତେ ଧନ ବ୍ୟୟ ହୋଇ ଉତ୍କଳର ଏ ସର୍ବ ପ୍ରଥମ ଅନୁଷ୍ଠାନଟି ଗଢ଼ା ହେଲା ସେହି ଅଭିନେତା (ପ୍ରଭୁପାଦଗୋସ୍ୱାମୀ) ବିଶ୍ୱାମିତ୍ରଙ୍କୁ ପରଦାରୁ ପୋଛି ଦେବାଟା କେତେଦୂର ସମୀଚିନ ଆପଣ ନିଜେ ବିଚାର କରନ୍ତୁ ।...

...ଆପଣ ପ୍ରାରମ୍ଭରୁ ଯେବେ ଏପରି ବିଷବାଣ ବର୍ଷଣ କରିବେ ତେବେ ଭବିଷ୍ୟତରେ ଆଉ କେହି ଏ ଦିଗରେ ଅଗ୍ରସର ହେବେ ନାହିଁ ।''

*—''ଉତ୍କଳ ଦୀପିକା'', ୨୧.୫.୧୯୩୬ (ଶେଷ ପୃଷ୍ଠା)*

ଶ୍ରୀ ନରସିଂହ ନନ୍ଦଶର୍ମା ଲେଖକକୁ ଦେଇଥିବା ବିବରଣୀରୁ ଅନୁମିତ ହୁଏ ଯେ, ୧୯୩୬ ସାଲର ଶେଷ ଆଡ଼କୁ ''ସୀତା ବିବାହ'' ଟୁରିଂ ସିନେମାରେ ଚାଲିଥିଲା । ସ୍ମୃତି ରୋମନ୍ଥନ କରି ନନ୍ଦଶର୍ମା କହିଲେ ''କଲିକତାରୁ ସୁଟିଂ ସାରି ଫେରି ଆସିବାର କିଛି ମାସ ପରେ ମୁଁ ମୋହନ ସୁନ୍ଦରଙ୍କ ରାସ ପାର୍ଟି ଛାଡ଼ି ନିଜେ ଗୋଟାଏ ପାର୍ଟି ତିଆର୍ କରିବାରେ ବ୍ରତୀ ହେଲି । ଗଞ୍ଜାମ ଜିଲ୍ଲାର ପିତ୍ତଳ (ବ୍ରହ୍ମପୁରରୁ ପ୍ରାୟ ୧୮ ମାଇଲ ଦୂରରେ ଅବସ୍ଥିତ) ଗ୍ରାମରେ ଏହି ପାର୍ଟିର ମୁଖ୍ୟ କାର୍ଯ୍ୟାଳୟ ରଖି କାର୍ଯ୍ୟ ଆରମ୍ଭ କଲି । ତେବେ ମଝିରେ ମଝିରେ ପୁରୀ ଆସୁଥାଏ । ଏତେବେଳର ଗୋଟାଏ ଘଟଣା ମୋର ସ୍ପଷ୍ଟ ମନେ ଅଛି । ସେ ବର୍ଷ କାର୍ତ୍ତିକ ହବିଷ ପାଇଁ ମୋ ବୋଉ ପୁରୀ ଆସିଥାଏ । ସାଥୀ ହୋଇ ଆସିଥିବା ସ୍ତ୍ରୀ ଲୋକମାନଙ୍କ ସହ ସେ 'ସୀତା ବିବାହ' ଦେଖି ଆସିଲା । ଘରକୁ ଆସି ମୋ ଆଗରେ ଆନନ୍ଦରେ ମୋ ପୁଅ କେଡ଼େ ବଡ଼ କାମ କରିଛି କହି ବହୁତ କାନ୍ଦିଲା । ମୁଁ କିନ୍ତୁ 'ସୀତା ବିବାହ' ବ୍ରହ୍ମପୁରରେ ପ୍ରଥମେ ଦେଖିଥିଲି । ସିନେମାଟି ଥିଲା ଦି-ଘଣ୍ଟା ଦୀର୍ଘ । ସେତେବେଳେ ଗୋଟାଏ ସୋ'ର ସମୟ ଥାଏ ତିନି ଘଣ୍ଟା । ଏଣୁ 'ସୀତା ବିବାହ' ସହ ଘଣ୍ଟାଏ ଲମ୍ବା ବଙ୍ଗଳା ସାମାଜିକ ଚିତ୍ର 'ମଣି କାଞ୍ଚନ' ମଧ୍ୟ ପରଷା ଯାଉଥିଲା ।''

ସେତେବେଳକୁ ସମଗ୍ର ଓଡ଼ିଶାରେ ମାତ୍ର ପାଞ୍ଚ ଛଅଟି ସିନେମା ହଲ୍ ଥାଏ । ଏଥିରୁ ଗୋଟିଏ ହେଲା ବ୍ରହ୍ମପୁରର ଶ୍ରୀ ସୀତାରାମ ବିଳାସ ଟକିଜ୍, କଟକରେ ଥିଲା ସିନେମା ପାଲେସ ଆଉ ଏକ୍‌ମୀ ଥିଏଟର, ଆଉ ପୁରୀରେ ଲକ୍ଷ୍ମୀ ଟକିଜ, ଏତଦ୍‌ବ୍ୟତୀତ ବଲାଙ୍ଗୀର ଏବଂ ସୋନପୁରରେ ମଧ୍ୟ ଦୁଇଟି ଚଳଚ୍ଚିତ୍ର ପ୍ରେକ୍ଷାଳୟ ରହିଥିଲା ।

ଦୀର୍ଘ ୧୫ ବର୍ଷ ଧରି ''ସୀତା ବିବାହ'' ହିଁ ଯେହେତୁ ଥିଲା ଓଡ଼ିଆ ଭାଷାର ଏକମାତ୍ର ସିନେମା, ଚଳଚ୍ଚିତ୍ରଟି ପ୍ରଥମ ମୁକ୍ତିର ପରବର୍ତ୍ତୀ ବର୍ଷ ମାନଙ୍କରେ ବିଭିନ୍ନ ପ୍ରେକ୍ଷାଳୟରେ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ସେତେବେଳ ଯାଏଁ ଓଡ଼ିଶାର ସିନେମା ଅବହାଓ୍ୱା ପ୍ରାଥମିକ ପର୍ଯ୍ୟାୟରୁ ବିଶେଷ ଅଗ୍ରଗତି କରି ନଥିଲା ।

''ସୀତା ବିବାହ''ର ବ୍ୟବସାୟ ସଂପର୍କରେ ଶ୍ରୀ କାର୍ତ୍ତିକ ଘୋଷ ଲେଖିଛନ୍ତି : ଚାମେଲିଆ କଂପାନୀ ଗାଁ ଗହଳରେ ଓଡ଼ିଆ ଛବି ଦେଖାଇ ଅର୍ଥ ଉପାର୍ଜନରେ ସକ୍ଷମ ହୋଇଥିଲା । ଏହି ଟୁରିଂ ସିନେମା ସାଫଲ୍ୟରେ ଆଠଗଡ଼ର ଧନୀ ବ୍ୟକ୍ତି ଶ୍ରୀ ଚକ୍ରଧର ମିଶ୍ର ଅନୁପ୍ରାଣୀତ ହୋଇ ତାଙ୍କର ଆତ୍ମୀୟ ଶ୍ରୀ ଦିବ୍ୟସିଂହ ମିଶ୍ରଙ୍କ ସହ ମିଳିତଭାବେ ''କଥାଚିତ୍ର'' ନାମରେ ଏକ ଟୁରିଂ ସିନେମା ଚଳାଇଥିଲେ । ଏଥିଲାଗି ସେ ''ସୀତା

ବିବାହ'' ଚିତ୍ରର ପ୍ରଦର୍ଶନ ସ୍ୱତ୍ତ୍ୱ କାଳୀ ଫିଲ୍ମସ୍ (ଅନେକଙ୍କଠାରୁ ଶୁଣିବାକୁ ମିଳେ ସି.ସି. ସାହା ଏଣ୍ଡକୋର ଚଣ୍ଡୀ ଚରଣ ସାହାଙ୍କ) ଠାରୁ କିଣି ନେଇଥିଲେ ମାତ୍ର ଅଢ଼େଇ ହଜାର ଟଙ୍କାରେ । ...ସେ ୧୯୪୨-୪୩ରେ ଟୁରିଂ ସିନେମା ବନ୍ଦ କରି ଦେଇଥିଲେ ।

**-ଓଡ଼ିଆ ଚଳଚ୍ଚିତ୍ରର ଇତିହାସ, ପୃଷ୍ଠା ୧୨**

ପ୍ରକୃତରେ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ହୋଇ ବି ''ସୀତା ବିବାହ''ର ଇତିହାସଟା ଟିକିଏ ଲମ୍ବା । କାରଣ ୧୯୦୩ରେ ଜନ୍ମିତ କାର୍ତ୍ତିକ ଘୋଷଙ୍କ ଏକ ଯୁଗ ପରେ (ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷ ଆଡ଼କୁ) ଜନ୍ମ ହୋଇଥିବା ଓଡ଼ିଆ ଚଳଚ୍ଚିତ୍ର ଜଗତର ଅନ୍ୟ ଦୁଇ ବ୍ୟକ୍ତିତ୍ୱ ଶ୍ରୀମତୀ ଉମା ବାନାର୍ଜୀ ଏବଂ ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂଦେଓଙ୍କର ମଧ୍ୟ ''ସୀତା ବିବାହ'' ସହ କିଛିଟା ଅନୁଭୂତି ରହିଥିଲା । ଏଇ ଉଭୟଙ୍କ ସହ ୧୯୯୧ର ଶେଷ ଆଡ଼କୁ ଏହି ବହିର ଲେଖକ ସାକ୍ଷାତ କରିଥିଲେ । ଭୁବନେଶ୍ୱରର ଖାରବେଳ ନଗର ନିବାସୀ ଶ୍ରୀମତୀ ବାନାର୍ଜୀ ଥିଲେ ''ସୀତା ବିବାହ''ର ନାୟକ ମାଖନ୍‌ଲାଲ୍‌ଙ୍କ ଧର୍ମପତ୍ନୀ । ସାକ୍ଷାତକାରରେ ସେ ପ୍ରକାଶ କରିଥିଲେ ଯେ ଚଳଚ୍ଚିତ୍ରଟିର ନିର୍ମାଣ ବେଳକୁ ସେ ଥିଲେ ନବ ବିବାହିତା । ସିନେମା ନିର୍ମାଣ ପୂର୍ବରୁ ତିନି ମାସ ପୁରୀରେ ରିର୍ହାସଲ ହୋଇଥିଲା । ମାସକୁ ପାରିଶ୍ରମିକ ୫୦୦ ଟଙ୍କା ହିସାବରେ ଚଳଚ୍ଚିତ୍ରର ନିର୍ମାଣ ଶେଷ ପର୍ଯ୍ୟନ୍ତ ମାଖନଲାଲ୍ ପାଇଥିଲେ । ଉକ୍ତ ସିନେମା ଶ୍ରୀମତୀ ବାନାର୍ଜୀ କଟକ ବକ୍ସି ବଜାରରେ ଥିବା ହଲ୍‌ମୁକ୍ ସିନେମାରେ ଦେଖିଥିଲେ ବୋଲି କହିଥିଲେ । ଏଇ ବୟାନରୁ ସ୍ପଷ୍ଟ ଯେ ''ସୀତା ବିବାହ''ର ପ୍ରଦର୍ଶନ କେବଳ ଟୁରିଂ ସିନେମାରେ ସୀମିତ ନ ଥିଲା ।

ଦ୍ୱିତୀୟ ଓଡ଼ିଆ ଚଳଚ୍ଚିତ୍ରର ପ୍ରଯୋଜକ ଶ୍ରୀ ଗୌରେନ୍ଦ୍ର ପ୍ରତାପ୍ ପ୍ରକାଶ କରିଥିଲେ ଯେ ୧୯୩୬ରେ ସେ କଲିକତା ପ୍ରେସିଡ଼େନ୍‌ସି କଲେଜ୍‌ରେ ବି ଏସ୍‌ସି. ପଢୁଥିବା ବେଳେ ସେଇ ମହାନଗରୀର ବଡ଼ ବଜାରର ଗୋଟାଏ ହଲରେ ''ସୀତା ବିବାହ'' ଦେଖିବାକୁ ପାଇଥିଲେ । ଶ୍ରୀରାମ ଗଙ୍ଗା ପାର ହେବା ଦୃଶ୍ୟ ଓ ଗୀତ ତାଙ୍କର ସ୍ପଷ୍ଟ ମନେ ରହିଛି । ଉକ୍ତ ଚଳଚ୍ଚିତ୍ରଟି ସିନେମା ପ୍ରଯୋଜନା ପାଇଁ ତାଙ୍କୁ ପ୍ରେରଣା ଦେଇଥିବା ସେ ପ୍ରକାଶ କରିଥିଲେ ।

ତେବେ ''ସୀତା ବିବାହ'' ଦେଖିବାର ବହୁ ବର୍ଷ ପରେ ଶ୍ରୀ ସିଂଦେଓ ଗୋଟାଏ ସିନେମା ନିର୍ମାଣ ସଂସ୍ଥା (''ଦି ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ୍'') ଗଢ଼ିବାରେ ସକ୍ଷମ ତ ହୋଇଥିଲେ; ତା' ସଙ୍ଗେ ସଙ୍ଗେ ୧୯୫୧ ସାଲରେ ''ସୀତା ବିବାହ''ର କପିରାଇଟ୍ କାଳୀ ଫିଲ୍ମସ୍‌ରୁ କିଣି ନେଇଥିଲେ ଏବଂ ସେଥିରୁ ତିନୋଟି ପ୍ରିଣ୍ଟ କାଢ଼ି ତାଙ୍କ ପ୍ରତିଷ୍ଠିତ ଟୁରିଂ ସିନେମାରେ ଚଳାଇଥିଲେ । କଲିକତାର ଟଲିଗଞ୍ଜରେ ଥିବା ବେଙ୍ଗଲ୍ ଫିଲ୍ମ ଲାବୋରେଟୋରିରେ ନେଗେଟିଭ୍ ଓ ପଜେଟିଭ୍‌ଗୁଡ଼ିକ ବି ରହିଥିଲା । କିନ୍ତୁ ଉକ୍ତ ଷ୍ଟୁଡ଼ିଓର ମାଲିକାନା ପରିବର୍ତ୍ତନ ପରେ ସେସବୁର ସଂଧାନ ଆଉ ମିଳିଲାନି ।

୧୯୪୩ ସାଲରେ କଲିକତାର ''ଦି ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ୍ ପବ୍ଲିକ୍ ଲିମିଟେଡ୍ କଂପାନୀ'' ଗଠିତ ହୋଇଥିଲା । ଶ୍ରୀ ସିଂଦେଓ ଏ କଂପାନୀର ପରିଚାଳନା ନିର୍ଦ୍ଦେଶକ ହୋଇଥିଲେ । ପ୍ରଖ୍ୟାତ ହିନ୍ଦୀ ଚଳଚ୍ଚିତ୍ର ନିର୍ମାତା ସତ୍ୟ ଦେବ୍ ଦୁବେ କଂପାନୀର ଅନ୍ୟତମ ଡାଇରେକ୍ଟର୍ ଥିଲେ । କଂପାନୀର ଅଫିସ୍ ଚକ୍ରବେରିଆ ରୋଡ୍‌ରେ ଥିଲା, ପରେ ଅଫିସ୍ କଟକ ଘୁଞ୍ଚାଇ ଅଣାଗଲା । କଂପାନୀ ଗଠନର ବର୍ଷକମଧ୍ୟରେ ''ଲଳିତା'' ନିର୍ମାଣର ଉଦ୍‌ଯୋଗ ଚାଲିଲା ।

ବ୍ୟବସାୟ ଦୃଷ୍ଟିରୁ ''ସୀତା ବିବାହ'' ସଫଳ ହୋଇଥିବା ସତ୍ତ୍ୱେ ପରବର୍ତ୍ତୀ ଓଡ଼ିଆ ଚିତ୍ର ପରଦା ଉପରେ ଉଦ୍‌ଭାସିତ ହେବାକୁ ଦୀର୍ଘ ୧୩ ବର୍ଷ ଅପେକ୍ଷା କରିବାକୁ ହେଲା । ୧୯୪୯ରେ ଦ୍ୱିତୀୟ ଓଡ଼ିଆ କଥାଚିତ୍ର ''ଲଳିତା'' ମୁକ୍ତି ପାଇଲା । କିନ୍ତୁ ଆଶ୍ଚର୍ଯ୍ୟ ଲାଗେ, ଏତେ ବର୍ଷ ବ୍ୟବଧାନ ପରେ ଦ୍ୱିତୀୟ ଚଳଚ୍ଚିତ୍ର ନିର୍ମାଣ ହେବା ବେଳକୁ ଏକ ପ୍ରକାରର ପ୍ରତିଯୋଗିତା ଆରମ୍ଭ ହୋଇଗଲା ଦୁଇଟି ନବନିର୍ମିତ ପ୍ରଯୋଜନା ସଂସ୍ଥା ମଧ୍ୟରେ, ଦୁଇଟି ପ୍ରସ୍ତୁତମୁଖୀ ସିନେମାକୁ କେନ୍ଦ୍ର କରି । ଆହୁରି ଆଶ୍ଚର୍ଯ୍ୟ ଲାଗେ, ଏଇ ଉଭୟ ସିନେମା (''ଲଳିତା'' ଏବଂ ''ଶ୍ରୀ ଜଗନ୍ନାଥ'') ଏକା ବିଷୟବସ୍ତୁ ଉପରେ ଆଧାରିତ । ଓଡ଼ିଆ ଜାତିର ଇଷ୍ଟ ଦେବତା ଶ୍ରୀ ଜଗନ୍ନାଥ କିପରି ପୁରୀ ମନ୍ଦିରରେ ଅବସ୍ଥାପିତ ହେଲେ, ତାହା ହିଁ ଥିଲା ଉଭୟର କାହାଣୀ । ଦୁଇ ପ୍ରତିଯୋଗୀ ସଂସ୍ଥାର ନାମ ଥିଲା ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ୍ ଏବଂ ରୂପ ଭାରତୀ ଲିମିଟେଡ୍ ।

ରୂପ ଭାରତୀ ଲିମିଟେଡ୍ କେତେକ ଦୃଷ୍ଟିରୁ ଅନନ୍ୟ । କୁହାଯାଏ ଯେ ସମଗ୍ର ଭାରତରେ ଏ ସଂସ୍ଥାଟି ସିନେମା ନିର୍ମାଣ ପାଇଁ ପ୍ରଥମ ପବ୍ଲିକ୍ ଲିମିଟେଡ୍ କଂପାନୀ । ଏକ କଂପାନୀ ରୂପେ ୧୯୪୭ ସାଲରେ ରେଜିଷ୍ଟ୍ରିଭୁକ୍ତ ହୋଇ ରୂପ ଭାରତୀ ଲିମିଟେଡ୍ ୧୦ ଟଙ୍କିଆ ''ସେଆର'' ବିକିଥିଲା । ଏମିତି ସେଆର୍ ବିକି ପ୍ରାୟ ଚାରି ଲକ୍ଷ ଟଙ୍କା ଆଦାୟ ହୋଇଥିଲା । ସମଗ୍ର ଅର୍ଥର ଅଧା ଆସିଥିଲା କେବଳ ଗଂଜାମ ଜିଲ୍ଲାରେ ସେଆର୍ ବିକ୍ରି ଦ୍ୱାରା । ୧୯୪୮ ସାଲରେ ରୂପ ଭାରତୀ ଲିମିଟେଡ୍ ''ଶ୍ରୀ ଜଗନ୍ନାଥ'' ନାମକ ସିନେମା ପ୍ରସ୍ତୁତ କରିବା ସ୍ଥିର କଲା ।

ନାଟ୍ୟକାର କାଳୀଚରଣ ପଟ୍ଟନାୟକ ସେଇ ସମୟରେ ''ଓଡ଼ିଶା ଥିଏଟର୍'' ନାଟ୍ୟ ସଂସ୍ଥା ଚଳାଉଥାନ୍ତି । ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ୍ ତାର ପ୍ରଥମ ଅବଦାନ ''ଲଳିତା''ର ନିର୍ଦ୍ଦେଶନା ଦାୟିତ୍ୱ କାଳୀଚରଣଙ୍କୁ ଦେଇଥିଲା । ଜଗନ୍ନାଥଙ୍କ ଜନ୍ମବୃତ୍ତାନ୍ତ ହିଁ ଥିଲା ''ଲଳିତା''ର ବିଷୟବସ୍ତୁ ।

ଏକା ବିଷୟବସ୍ତୁକୁ ''ଶ୍ରୀ ଜଗନ୍ନାଥ'' ଏବଂ ''ଲଳିତା'' ଦୁଇ ପ୍ରକାରେ ରୂପାୟିତ କରିଛନ୍ତି । କାଳୀଚରଣଙ୍କ ସିନେମାରେ ଶବର କନ୍ୟା ଲଳିତା ସଖୀମାନଙ୍କ ଗହଣରେ କ୍ରୀଡ଼ାରତ ଥିବାବେଳେ ସେଠାରେ ପହଞ୍ଚି ଯାଇଛନ୍ତି ବିଦ୍ୟାପତି, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ

ବ୍ରାହ୍ମଣବେଶୀ ସେନାପତି । ଆଦିବାସୀ ତରୁଣୀ ଲଳିତା ବିଦ୍ୟାପତିଙ୍କ ଆଗମନ ଉଦ୍ଦେଶ୍ୟ ଜାଣି ନ ଥାଏ । ସେ ନବାଗତ ବିଦ୍ୟାପତିଙ୍କ ସହ ଶୀଘ୍ର ପ୍ରେମ-ପାଶରେ ଆବଦ୍ଧ ହୋଇଯାଏ । ବିଦ୍ୟାପତି ଜାଣିପାରନ୍ତି, ଲଳିତାର ବାପା ଶବର ମୁଖ୍ୟ ବିଶ୍ୱାବସୁ କୌଣସି ନିଭୃତ ସ୍ଥାନରେ ନୀଳ ମାଧବଙ୍କୁ ଉପାସନା କରେ । ଲଳିତାର ଅନୁନୟରେ ବିଦ୍ୟାପତିଙ୍କୁ ବିଶ୍ୱାବସୁ ମାତ୍ର ଥରେ ଉପାସନା ସ୍ଥଳୀକୁ ନିଏ, ତାଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି । ଚତୁର ବିଦ୍ୟାପତି ରାସ୍ତାସାରା ସୋରିଷ ବୁଣି ବୁଣି ଯାଆନ୍ତି । ନୀଳ ମାଧବ ଦର୍ଶନ ପରେ ବିଦ୍ୟାପତି ଲଳିତା ପାଖରୁ ଖସି ଯାଇ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ନୀଳ ମାଧବଙ୍କ ଅବସ୍ଥିତି ଜଣାନ୍ତି । ସୈନ୍ୟସାମନ୍ତ ନେଇ ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ଅପହରଣ ପାଇଁ ଆସି (ଏତେବେଳକୁ ଗୋପନ ରହିପାଏଁ ରାସ୍ତାସାରା ଲମ୍ବିଯାଇଥାଏ ସୋରିଷ ଗଛର ଧାଡ଼ି) ଦେଖନ୍ତି ଯେ, ନୀଳ ମାଧବ ଅନ୍ତର୍ଦ୍ଧାନ । ରାଜା ଶବର ମୁଖ୍ୟ ବିଶ୍ୱାବସୁଙ୍କୁ ଅନୁନୟ କରନ୍ତେ ଶୂନ୍ୟବାଣୀ ହୁଏ ଓ ବିଶ୍ୱାବସୁ ଘରେ ଆତ୍ମ-ପ୍ରକାଶ କରେ ବିରାଟ ଏକ କାଠଖଣ୍ଡ । ସିନେମାଟିରେ ତା'ପରେ ପରେ ଦେଖାଇ ଦିଆଯାଏ ବଡ଼ ଦେଉଳ ଏବଂ ତିନି ମୂର୍ତ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଆଗରେ ମାହାରି ନାଚଟିଏ ।

''ସୀତା ବିବାହ'' ମୁକ୍ତି ପାଇବାର ୧୩ ବର୍ଷ ପରେ ୧୯୪୯ରେ ମୁକ୍ତି ପାଏ ଲଳିତା, କଟକର କ୍ୟାପିଟାଲ୍ ସିନେମାରେ । (ତିନିକୋଣିଆ ବଗିଚା ଅଞ୍ଚଳରେ ଥିବା

ଏହି ସିନେମା ହଲ୍‌ଟି ବର୍ତ୍ତମାନ ଲୋପପାଇ ଯାଇଛି, କାରଣ ୧୯୮୦ ସାଲ ବେଳକୁ ପ୍ରେକ୍ଷାଳୟଟି ବନ୍ଦ କରିଦିଆଯାଇ, ସେ ସ୍ଥାନରେ ଅନ୍ୟ ବ୍ୟବସାୟିକ ସଂସ୍ଥା ପାଇଁ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା) । କାଳୀବାବୁ ଏକ ଗ୍ରାମଫୋନ୍ କଂପାନୀ ପାଇଁ ଲେଖିଥିବା ନାଟିକାର ବିଷୟବସ୍ତୁ ଉପରେ ଆଧାରିତ "ଲଳିତା"ରେ ଅନ୍ୟାନ୍ୟଙ୍କ ମଧ୍ୟରେ ଅଭିନୟ କରିଥିଲେ ଲୋକନାଥ ମିଶ୍ର, ଉମା ଗୋଏଙ୍କା, ନଳିନୀ ତ୍ରିପାଠୀ, ଗିରିଧାରୀ ପଣ୍ଡା, ପଙ୍କଜ ଲୋଚନ ନନ୍ଦ, ଦାମୋଦର ଦାଶ୍, ସୁମତୀ ଦେବୀ ପ୍ରଭୃତି । ଲଳିତା ଭୂମିକାରେ ଅଭିନୟ କରିଥିବା ଉମା "ସୀତା ବିବାହ"ର ନାୟକ ମାଖନ୍‌ଲାଲ୍ ବାନାର୍ଜୀଙ୍କ ପତ୍ନୀ । ଚଳଚ୍ଚିତ୍ରଟିର ସଂଗୀତ ନିର୍ଦ୍ଦେଶକ ଥିଲେ ଗୌର ଗୋସ୍ୱାମୀ ଓ ସୁରେନ୍ଦ୍ର ପାଲ୍ । କଲିକତାର ବେଙ୍ଗଲ୍ ନେସ୍‌ନେଲ୍ ଷ୍ଟୁଡ଼ିଓରେ ଏ ସିନେମାର ସୁଟିଂ ହୋଇଥିଲା । "ଲଳିତା"ର ଗୋଟାଏ ବଡ଼ ଦୋଷ ହେଲା ଯେ, ସିନେମା ମାଧ୍ୟମର ସ୍ୱାତନ୍ତ୍ର୍ୟ ଅପେକ୍ଷା ମଞ୍ଚରେ ବ୍ୟବହୃତ ଶୈଳୀଦ୍ୱାରା ଏହା ଅଧିକ ସଂକ୍ରମିତ । ଚଳଚ୍ଚିତ୍ରଟିର ଘଟଣା ବିନ୍ୟାସ ମଧ୍ୟ ଦର୍ଶକ ମନକୁ ଯଥେଷ୍ଟ ଆକର୍ଷଣ କରିବାକୁ ଅକ୍ଷମ । ସର୍ବୋପରି ଜଗନ୍ନାଥ କିମ୍ବଦନ୍ତୀର ଏହା ସନ୍ତୋଷଜନକ ରୂପାୟନ ନୁହେଁ । ସେଥିପାଇଁ ହୁଏତ "ଲଳିତା" ବ୍ୟବସାୟରେ ବି ସେତେଟା ସଫଳ ହୋଇ ନ ଥିଲା ।

ପରବର୍ତ୍ତୀ ବର୍ଷ ରୂପ ଭାରତୀ ଲିମିଟେଡ୍ ଦ୍ୱାରା ପ୍ରସ୍ତୁତ ହୋଇ ଆତ୍ମ-ପ୍ରକାଶ କଲା କାହାଣୀ ସମ୍ବଳିତ ଦ୍ୱିତୀୟ ଓଡ଼ିଆ କଥାଚିତ୍ର "ଶ୍ରୀ ଜଗନ୍ନାଥ" । ତେବେ ଓଡ଼ିଆ ଭାଷାର ଏହି ଦ୍ୱିତୀୟ ଚିତ୍ରଟି ସଂପର୍କର କିଛି କହିବା ପୂର୍ବରୁ ରୂପ ଭାରତୀ ଲିମିଟେଡ୍ କଂପାନୀର ଜନ୍ମ ସଂପର୍କରେ କିଛି ପ୍ରାକ୍ ବିବରଣୀ ଦିଆଯିବା ଆବଶ୍ୟକ ।

୧୯୪୭ରେ ଜନ୍ମ ନେଇଥିବା ରୂପ ଭାରତୀ ଲିମିଟେଡ୍‌ର ପ୍ରାଣ ପ୍ରତିଷ୍ଠାତା ଥିଲେ ଶ୍ରୀ ସୁରେନ୍ଦ୍ର କୁମାର ଦାଶ୍, ଜେନେରାଲ୍ ଏସୁରେନ୍ସ କଂପାନୀର କଟକ ଶାଖା ମେନେଜର୍ । ସେ ଓ ତାଙ୍କର କେତେକ ବନ୍ଧୁ ସହମତ ହୋଇ ରୂପ ଭାରତୀ ଲିମିଟେଡ୍ ଗଠନ କଲେ । ସେଥିରେ ବୋର୍ଡ଼ ଅଫ୍ ଡାଇରେକ୍ଟର୍‌ସ୍‌ରେ ରହିଲେ ଶ୍ରୀ ଦାଶଙ୍କ ସମେତ ଶ୍ରୀ ଜଗମୋହନ ନନ୍ଦୀ, ଶ୍ରୀ ଧନଞ୍ଜୟ ଲେଙ୍କା, ଶ୍ରୀ ରଘୁନାଥ ରାୟ, ଚୌଧୁରୀ ବଳଭଦ୍ର ପ୍ରସାଦ ଦାଶ, ଶ୍ରୀ ନରେନ୍ଦ୍ର କିଶୋର ଦାଶ ଓ ଶ୍ରୀ ଦୟାନିଧି ମିଶ୍ର । ଏଇ କଂପାନୀ ସଂପର୍କରେ ଶ୍ରୀ କାର୍ତ୍ତିକ କୁମାର ଘୋଷ ଲେଖିଛନ୍ତି :

"କଂପାନୀ ରେଜିଷ୍ଟ୍ରିଭୁକ୍ତ ହେବା ପରେ ପରେ ଏପରି ଚହଳ ପଡ଼ିଲା ଯାହା କହିଲେ ସାଧାରଣତଃ କେହି ବିଶ୍ୱାସ କରିବେ ନାହିଁ । କଂପାନୀ ଅଂଶ ଖରିଦ ଲାଗି ଲୋକେ ସ୍ୱତଃ ପ୍ରବୃତ୍ତ ହୋଇ ଆଗେଇ ଆସିଲେ । ଅତି ଅଳ୍ପ ସମୟ ମଧ୍ୟରେ ପ୍ରାୟ ଏକଲକ୍ଷ ଟଙ୍କାର ଅଂଶ ବିକ୍ରୟ ହୋଇଗଲା ।"

-"ଓଡ଼ିଆ ଚଳଚ୍ଚିତ୍ରର ଇତିହାସ", ପୃଷ୍ଠା ୨୧

ରୂପ ଭାରତୀ ଲିମିଟେଡ୍ ସହିତ ସଂଶ୍ଳିଷ୍ଟ ଓଡ଼ିଶାର ଅନ୍ୟତମ ସିନେମା ବ୍ୟକ୍ତିତ୍ୱ ଶ୍ରୀ ଗୋପାଳ ଘୋଷ ଏଇ ଲେଖକଙ୍କୁ ଅକ୍ଟୋବର ୧୯୮୯ରେ କିଛିଟା ତଥ୍ୟ ଦେଇ କହିଥିଲେ ''ଗୋଟାଏ ଗୋଟାଏ ସେଆର୍‌ର ଦାମ୍ ଥିଲା ମାତ୍ର ଦଶ ଟଙ୍କା । ସମୁଦାୟ ତିନି ଲକ୍ଷରୁ ଅଧିକ ଟଙ୍କାର ସେଆର୍ ବିକ୍ରୀ ହୋଇଥିଲା । କେବଳ ଗଂଜାମ ଜିଲ୍ଲାରେ ଦୁଇଲକ୍ଷ ଟଙ୍କାର ସେଆର ବିକ୍ରୀ ହୋଇଥିଲା । ଅନ୍ତତଃ ଗୋଟାଏ ଦୃଷ୍ଟିରୁ ରୂପ ଭାରତୀ ଅଦ୍ୱିତୀୟ: ସମଗ୍ର ଭାରତ ବର୍ଷରେ ସିନେମା ନିର୍ମାଣ ପାଇଁ ଏହା ପ୍ରଥମ ପବ୍ଲିକ୍ ଲିମିଟେଡ୍ କଂପାନୀ ।''

କାହାଣୀ ସମ୍ବଳିତ ଚଳଚ୍ଚିତ୍ର ପ୍ରସ୍ତୁତ କରିବା ରୂପ ଭାରତୀର ପ୍ରଧାନ ଲକ୍ଷ୍ୟଥିଲେ ମଧ, ଏହି ସଂସ୍ଥା ଗୋଟାଏ ''ଡକ୍ୟୁମେଣ୍ଟାରୀ'' ବା ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତ କରିବାର ନିଷ୍ପତ୍ତି ନେଲା । ଏପରି ନିଷ୍ପତ୍ତିର ପଶ୍ଚାତରେ ଥିଲା ଗୋଟାଏ ଅସାଧାରଣ ଘଟଣାକୁ ଫିଲ୍ମ ଦେହରେ ସଂଜୀବିତ ରଖିବାର ଇଚ୍ଛା । ଘଟଣାଟି ଥିଲା ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ଜବାହର୍‌ଲାଲ୍ ନେହେରୁଙ୍କର ଓଡ଼ିଶା ଆଗମନ ।

ଶ୍ରୀ ନେହେରୁ ହୀରାକୁଦ ଜଳଭଣ୍ଡାରର ଭିତ୍ତିସ୍ଥାପନ ପାଇଁ ୧୯୪୮ରେ ଓଡ଼ିଶା ଆସିଥିଲେ । ସମ୍ବଲପୁରର ହୀରାକୁଦରେ ଭିତ୍ତିପ୍ରସ୍ତର ସ୍ଥାପନ ପରେ ସେ ଭୁବନେଶ୍ୱର ଆସିଥିଲେ ଏବଂ ଆସିକା ବି ଗସ୍ତ କରିଥିଲେ । ପଣ୍ଡିତ ନେହେରୁଙ୍କ ସମସ୍ତ କାର୍ଯ୍ୟକ୍ରମକୁ ନେଇ ରୂପ ଭାରତୀ ନିର୍ମାଣ କରିଥିଲା ଗୋଟାଏ ପ୍ରମାଣିକ ଚଳଚ୍ଚିତ୍ର ।

ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ କାହାଣୀକୁ ଆଧାରିତ କରି କଂପାନୀ ତା'ପରେ ସ୍ଥିର କଲା ''ଶ୍ରୀ ଜଗନ୍ନାଥ'' ଚଳଚ୍ଚିତ୍ର ପ୍ରସ୍ତୁତ କରିବାକୁ । ଏଥିପାଇଁ କାର୍ଯ୍ୟକ୍ରମ ଆରମ୍ଭ ହେବା ବେଳକୁ ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ୍ ଲଳିତା ଆରମ୍ଭ କରି ଦେଇଥିଲା । ତେଣୁ ''ଶ୍ରୀ ଜଗନ୍ନାଥ''ର ନିର୍ମାଣ କାମ ବାଧ ହୋଇ ସ୍ଥଗିତ ରଖାଗଲା । ତେବେ ୧୯୪୯ରେ ଲଳିତା ମୁକ୍ତି ପାଇ ବ୍ୟବସାୟରେ ବିଫଳ ହେବା ପରେ ''ଶ୍ରୀ ଜଗନ୍ନାଥ''ର ନିର୍ମାଣ କାମ ଉତ୍ସାହର ସହ ଆରମ୍ଭ ହୋଇଗଲା । ଶ୍ରୀ ଚିରରଂଜନ ମିତ୍ରଙ୍କ ନିର୍ଦ୍ଦେଶନାରେ ଏହାର ''ଇଣ୍ଡୋର୍ ସୁଟିଂ'' ହୋଇଥିଲା କଲିକତାର ରାଧା ଫିଲ୍ମସ୍ ଷ୍ଟୁଡ଼ିଓରେ । ତେବେ ରୂପ ଭାରତୀ ସ୍ଥିର କଲା ଯେ ଚଳଚ୍ଚିତ୍ରଟିର ''ଆଉଟ୍‌ଡ଼ୋର ସୁଟିଂ'' ବା ବହିଁ ଚିତ୍ର ଗ୍ରହଣ କରାଯିବ କଟକଠାରୁ ଦଶମାଇଲ ଦୂର ନରାଜଠାରେ ।

ବହିଁଦୃଶ୍ୟ ଗ୍ରହଣ ପାଇଁ ଏକ କଷ୍ଟସାଧ ଓ ବ୍ୟୟ ସାପେକ୍ଷ ଆୟୋଜନ ହୋଇଥିଲା । ବର୍ତ୍ତମାନ ପରି ସ୍ୱତନ୍ତ୍ର ''ସାଉଣ୍ଡ ନେଗେଟିଭ୍'' ନ ଥିବାରୁ ଦୃଶ୍ୟ ଗ୍ରହଣ ବେଳେ ହିଁ ''ସାଉଣ୍ଡ ରେକେଡ଼ିଂ'' ବା ଶବ୍ଦ ଗ୍ରହଣ ସମାପିତ ହେଉଥିଲା । ଏଥିପାଇଁ ଯେଉଁ ରେକଡ଼ିଂ ମେସିନ୍ ବ୍ୟବହୃତ ହେଉଥିଲା ତାହା ଗୋଟାଏ ପ୍ରକାଣ୍ଡକାୟ ଭେନ୍‌ରେ ନିଆଯାଉଥିଲା । ରାଧା ଫିଲ୍ମସ୍‌ର ମାଲିକ ଖୁବ୍ କୁଣ୍ଠିତ ଚିତ୍ତରେ ଆଠ ହଜାର ଟଙ୍କା

ବିନିମୟରେ ତାଙ୍କ ଶବ୍ଦ ଗ୍ରହଣ ଯନ୍ତ୍ର ସମନ୍ୱିତ ଭେନ୍ କଟକ ପଠାଇଥିଲେ । ଶ୍ରୀ କାର୍ତ୍ତିକ କୁମାର ଘୋଷ ଏ ସଂପର୍କରେ ଲେଖିଛନ୍ତି : ''କଲିକତାରୁ ଗୋଟାଏ କ'ଣ ଯନ୍ତ୍ର ଆସୁଛି ଶ୍ରୀ ଜଗନ୍ନାଥ ଛବି ତିଆରିରେ ଦରକାର ହେବ । ଏ କଥା ସାରା ସହରରେ ଖେଳିଯାଇଥାଏ । ସୁତରାଂ ଯେଉଁଦିନ ମାଲଗାଡ଼ିରେ ସାଉଣ୍ଡ ଭ୍ୟାନ୍ କଟକ ଆସି ପହଞ୍ଚିଲା, ତାକୁ ଦେଖିବାକୁ ଲୋକାରଣ୍ୟ । ଅନେକେ ଏ କଥା ବିଶ୍ୱାସ କରିବେ କି ନା' ଜାଣେନା, କିନ୍ତୁ ଏହା ଘଟିଥିଲା ଏବଂ ସେ ଦୃଶ୍ୟ ଅନେକେ ଏବେ ବି ମନେ ରଖିଛନ୍ତି । ତା' ପରେ ଭ୍ୟାନ୍ ନରାଜ ନିଆଗଲା । ସେଠି ମଧ୍ୟ ସେମିତି ଭିଡ଼–ଖାଲି ଶବ୍ଦ ଗ୍ରହଣ ଯନ୍ତ୍ର ଦେଖିବାଲାଗି । ଶବ୍ଦ ଗ୍ରହଣ ଯନ୍ତ୍ର ଏକ ମାସ ରହିଥିଲା । ଅନ୍ୟାନ୍ୟ ଖର୍ଚ୍ଚ ବାବଦ 'ଆଉଟ୍‌ଡ଼ୋର୍ ସୁଟିଂ'ରେ ନ୍ୟୁନାଧିକ ତିରିଶ ହଜାର ଟଙ୍କା ବ୍ୟୟ ହୋଇଥିଲା । **(ଓଡ଼ିଆ ଚଳଚ୍ଚିତ୍ରର ଇତିହାସ,** ପୃଷ୍ଠା :୨୬)

''ଶ୍ରୀ ଜଗନ୍ନାଥ'' ଫେବୃଆରୀ ପହିଲା ୧୯୫୦ରେ ମୁକ୍ତି ପାଇଲା କଟକର କ୍ୟାପିଟାଲ୍ ସିନେମାରେ । ଘଟଣା ବିନ୍ୟାସ ଦୃଷ୍ଟିରୁ ଏବଂ ଶୈଳୀ ଦୃଷ୍ଟିରୁ ଏ ସିନେମାଟି ତା' ପୂର୍ବବର୍ତ୍ତୀ ଚଳଚ୍ଚିତ୍ର ସୃଷ୍ଟି ଅପେକ୍ଷା ଭଲ ହୋଇଛି ଯଦିଓ ଏହା ମଧ୍ୟ ତ୍ରୁଟି ବହୁଳ । କଥାଚିତ୍ରଟିର ବିଷୟବସ୍ତୁ ହେଲା, ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା ନୀଳମାଧବଙ୍କୁ ଭକ୍ତି କରୁଥିଲେ । ପତ୍ନୀ ପରାୟଣ ରାଜା ତାଙ୍କୁ ପ୍ରତିଶ୍ରୁତି ଦେଲେ ରାଣୀଙ୍କ ଉପାସ୍ୟ ନୀଳମାଧବଙ୍କ ବିଗ୍ରହ ସେ ତାଙ୍କ ପାଇଁ ଆଣିଦେବେ । ଇନ୍ଦ୍ରଦ୍ୟୁମ୍ନ ଏ ଦାୟିତ୍ୱ ଦେଲେ ସେନାପତି ବିଦ୍ୟାପତିଙ୍କୁ । ବିଦ୍ୟାପତି ତିନି ଜଣ ଅନୁଚରଙ୍କ ସହ ଅଶ୍ୱାରୋହଣ କରି ପହଞ୍ଚିଲେ ଏକ ଶବର ପଲ୍ଲୀର ଉପକଣ୍ଠରେ । ସାଥୀମାନଙ୍କୁ ସେଠାରେ ଅପେକ୍ଷା କରିବାକୁ କହି କିଛି ଦୂର ଯାଇ ସେ ଦେଖନ୍ତି ତ ଆଖିରେ ଅନ୍ଧପୁଟୁଳି ବାନ୍ଧିଥିବା ଯୁବତୀଟିଏ ବହମାନ ଝରଣାରେ ପଡ଼ିଯିବା ଉପରେ ! ତାକୁ ଧରି ନେଇଛନ୍ତି ବିଦ୍ୟାପତି । ଶବର ରାଜା ବିଶ୍ୱାବସୁ ସମବେତ ଗ୍ରାମବାସୀଙ୍କ ଆଗରେ ବିଦ୍ୟାପତିଙ୍କୁ କହିଛନ୍ତି ସେମାନଙ୍କ ସଂପ୍ରଦାୟର ନିୟମ ଅନୁଯାୟୀ (ଅବିବାହିତା ଯୁବତୀକୁ ଛୁଇଁ ଥିବାରୁ) ସେ ଲଳିତାକୁ ବିବାହ କରନ୍ତୁ, ନଚେତ୍ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ । ବିଦ୍ୟାପତି ଲଳିତାକୁ ବିବାହ କରୁଛନ୍ତି । ଲଳିତା ସହ ଶବର ପଲ୍ଲୀରେ ଦାମ୍ପତ୍ୟ ଜୀବନ କଟାଇ ବିଦ୍ୟାପତି ଜାଣି ପାରୁଛନ୍ତି–ନୀଳମାଧବଙ୍କୁ ବିଶ୍ୱାବସୁ ଉପାସନା କରୁଛନ୍ତି ଗୋପନରେ । ଏକୋଇର ବଳା ଲଳିତାର ଅନୁରୋଧରେ ବିଶ୍ୱାବସୁ ବିଦ୍ୟାପତିଙ୍କୁ ଉପାସନା ଗୁହାକୁ ନେଇ ଯାଉଛନ୍ତି । ପରେ ଏକୁଲା ଆସି ବିଦ୍ୟାପତି ନୀଳମାଧବ ମୂର୍ତ୍ତି ଅପହରଣ କରିନେଇ ଅପେକ୍ଷାରତ ତାଙ୍କ ସହଚର ମାନଙ୍କୁ ଦେଉଛନ୍ତି । ସେମାନେ ବିଗ୍ରହ ନେଇ ଇନ୍ଦ୍ରଦ୍ୟୁମ୍ନଙ୍କ ଉଆସରେ ପହଞ୍ଚୁଛନ୍ତି । ରାଜା ସେଇ ବିଗ୍ରହ ଉପହାର ଦେଉଛନ୍ତି ରାଣୀ ଗୁଣ୍ଡିଚାଙ୍କୁ । ବିଗ୍ରହ ଅପହରଣର ପ୍ରଚଣ୍ଡ ଧକ୍କା ବିଶ୍ୱାବସୁଙ୍କୁ ବାତୁଳ ପ୍ରାୟ କରି ଦେଇଛି ଓ ପାଗଳ ଭଳି ସେ ପହଞ୍ଚିଛନ୍ତି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଉଆସରେ । ଦିଅଁ କୌଣସି ଭୋଗ ଗ୍ରହଣ କରୁ ନ

ଥିବାରୁ ରାଜା ବିଶ୍ୱାବସୁଙ୍କୁ ଭୋଗ ଅର୍ପଣ ପାଇଁ ଅନୁରୋଧ କରୁଛନ୍ତି । କିନ୍ତୁ ବିଶ୍ୱାବସୁ ଭୋଗ ଅର୍ପଣ କରିବା ମାତ୍ରେ ବିଗ୍ରହ ଅନ୍ତର୍ଦ୍ଧାନ ହୋଇଯାଉଛି । ସେତେବେଳେ ଶୂନ୍ୟବାଣୀ ମଧ ହେଉଛି ଯେ, ନୀଳମାଧବ ଦାରୁ ରୂପରେ ମହୋଦଧି କୂଳରେ ପ୍ରକାଶିତ ହେବେ । ପୁରୀ ସମୁଦ୍ର କୂଳରେ ସତକୁ ସତ ସେମାନେ ଦାରୁ ଭାସୁଥିବା ଦେଖୁଛନ୍ତି । କିନ୍ତୁ ସେ ଦାରୁରେ କୌଣସି ଶିଳ୍ପୀ ମୂର୍ତ୍ତି ଗଢ଼ିବାକୁ ସକ୍ଷମ ହେଉନି । କାଠରେ ବାଜିବା ମାତ୍ରେ ନିହାଣ ସବୁ ଭାଙ୍ଗିଯାଉଛି । ଶେଷରେ ଅନନ୍ତ ମହାରଣା ନାମକ ଜଣେ ଖୁବ୍ ବୃଦ୍ଧ ଶିଳ୍ପୀ, ଏକୋଇଶି ଦିନ ନିବୁଜ ଘରେ ରହି ମୂର୍ତ୍ତି ଗଢ଼ିବାର କଣ୍ଟ କରୁଛି । ପ୍ରଥମେ ରାଜି ହୋଇ ବି ରାଣୀ ଗୁଣ୍ଡିଚା ଚଉଦ ଦିନରେ କବାଟ ଖୋଲି ଅଧା ଗଢ଼ା ମୂର୍ତ୍ତି ଦ୍ରୟକୁ ଦେଖୁଛନ୍ତି । ସେତେବେଳକୁ ଉତ୍କଳର ରାଜା ଗାଲମାଧବ ଭୂଇଁ ତଳ ଖୋଳି ଉଦ୍ଧାର କରିଥାନ୍ତି ଗୋଟାଏ ବିରାଟ ମନ୍ଦିର । ସେଇ ମନ୍ଦିରରେ ପୂଜା ପାଆନ୍ତି ତିନି ଦିଅଁ ।

''ଶ୍ରୀ ଜଗନ୍ନାଥ'' ମଧ ଜଗନ୍ନାଥଙ୍କ ଜନ୍ମ ସମ୍ବନ୍ଧୀୟ କିମ୍ବଦନ୍ତୀର ବିଶ୍ୱସ୍ତ ଚିତ୍ରାୟନ ନୁହେଁ । ବିଶ୍ୱାବସୁର ପୂଜାସ୍ଥଳୀରୁ ନୀଳମାଧବଙ୍କ ବିଗ୍ରହ, ଇନ୍ଦ୍ରଦ୍ୟୁମ୍ନଙ୍କ ସେନାପତି ବା ସୈନ୍ୟସାମନ୍ତ ନେଇ ଯିବାର ସଫଳତା କିମ୍ବଦନ୍ତୀ କହେନି; ବରଂ ଚୋରାଇ ନେବା ଉଦ୍ୟମ ମାତ୍ରେ ବିଗ୍ରହ ଉଭେଇ ଯିବା କିମ୍ବଦନ୍ତୀରେ କଥିତ । ବିଦ୍ୟାପତି ନୀଳମାଧବଙ୍କ ଦର୍ଶନକୁ ଯିବାବେଳେ ଗୋପନରେ ସୋରିଷ ବୁଞ୍ଚୁଳି ନେବା କଥା ବି ଏଥିରେ ନାହିଁ । ନିର୍ଦ୍ଦେଶକ ଚରରଂଜନ ମିତ୍ର ହିଁ ଶ୍ରୀ ଜଗନ୍ନାଥର ଚିତ୍ରନାଟ୍ୟ ଲେଖକ ଏବଂ ସେଇ ଚିତ୍ରନାଟ୍ୟଟି ଆଂଶିକ ଭଲ ହୋଇଛି । ବିଦ୍ୟାପତି ଶବର ପଲ୍ଲୀକୁ ଗଲାବେଳେ ତାଙ୍କ ତିନି ଅନୁଚର କିପରି ମାସ ମାସ ଧରି ପଲ୍ଲୀରୁ ସାମାନ୍ୟ ଦୂରରେ ଅପେକ୍ଷା କରିଥିଲେ ଜାଣିବା ମୁସ୍କିଲ୍ । ବିଦ୍ୟାପତି ଥରେ ଦୁର୍ଘଟଣା ଗ୍ରସ୍ତ ହେବା ଓ ତାଙ୍କ ସ୍ମୃତି ବିଭ୍ରମ ବି ସେ ରୂପାୟିତ କରିଛନ୍ତି ଯାହାର କୌଣସି ଆବଶ୍ୟକତା ନାହିଁ । ତେବେ ଚିତ୍ରଟିର ଆରମ୍ଭ ଓ ଶେଷ ଦୃଶ୍ୟ ଗୁଡ଼ିକ ଜଗନ୍ନାଥ ବୃତ୍ତାନ୍ତକୁ ମାର୍ମିକ କରିଛି ।

ଭଲ ଅଭିନୟ ଓ କିଛି ମଧୁର ଗୀତ ''ଶ୍ରୀ ଜଗନ୍ନାଥ'' ସିନେମାକୁ ଜନପ୍ରିୟ କରିବାରେ ନିଃସନ୍ଦେହରେ ସହାୟକ ହୋଇଥିଲା । ବିଶେଷତଃ ନିମାଇଁ ଚରଣ ହରିଚନ୍ଦନଙ୍କ ପ୍ରାରମ୍ଭ ଗୀତ ''ନୀଳସିନ୍ଧୁ ତୀରେ ନୀଳ ଅଚଳ, ନୀଳ ବନରାଜି ଘେରା ଅଚଳ'' ଏବଂ ଶେଷ ଗୀତ ''ଚକାଡ଼ୋଳା କିପାଁ ଡକା'' ଭାବ ଉଦ୍ଦୀପକ ଏବଂ ଶ୍ରୁତି ମଧୁର । ନିମାଇଁ ଚରଣ ନିଜେ ଭକ୍ତ ଭୂମିକାରେ ଅବତୀର୍ଣ୍ଣ ହୋଇ ଏ ଗୀତ ଦ୍ୱୟ ଗାଇଥିଲେ । ତେବେ ସିନେମାର ସଂଗୀତ ନିର୍ଦ୍ଦେଶକ ରଣଜିତ୍ ରାୟ ପ୍ରାୟ ଅଧଡ଼ଜନ୍ ଅନ୍ୟ ଗୀତରେ ଉତ୍କଳୀୟ ସଂଗୀତ ଶୈଳୀ ରକ୍ଷା କରି ନାହାନ୍ତି, କେବଳ ସମ୍ବଲପୁରୀ ଶୈଳୀରେ ଦେଇଥିବା ଦୁଇଟି ଗୀତ ଚଳନୀୟମାନର ହୋଇଛି । କଲିକତା ନିବାସୀ ରଣଜିତ୍ ରାୟ ଅଧିକାଂଶ ଗୀତ ସହ ଅତ୍ୟଧିକ ଭାଓଲିନ୍ ଅର୍କେଷ୍ଟ୍ରାର ସ୍ୱର ସଂଯୋଜିତ କରିଥିବାରୁ ଗୀତ ଗୁଡ଼ିକର ସ୍ୱର ସଂଯୋଜନା ଖାପଛଡ଼ା ଲାଗୁଛି ।

ଅକ୍ଟୋବର ୧୯୮୯ରେ ଲେଖକର ''ଶ୍ରୀ ଜଗନ୍ନାଥ'' ଦେଖିବାର ସୁଯୋଗ ପାଇଥିଲା କଟକରେ ଅନୁଷ୍ଠିତ ନବମ ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବରେ । ନିର୍ଦ୍ଦେଶକ, ୭୨ ବର୍ଷୀୟ ଚିରରଂଜନ ମିତ୍ର ସିନେମା ପରିବେଷଣ ବେଳେ ଉପସ୍ଥିତ ଥିଲେ । ସେ ସମୀକ୍ଷକଙ୍କୁ କହିଥିଲେ ଯେ, ସେତେବେଳେ ଡବିଂ ବ୍ୟବସ୍ଥା ନଥିଲା, ଏଣୁ ରେକଡ଼ିଂ ଯନ୍ତ୍ରପାତି ମଧ୍ୟ ଗୋଟାଏ ଭେନ୍‌ରେ ସୁଟିଂ ଯାଗାକୁ ଯାଉଥିଲା ।

ସମସାମୟିକ ଓଡ଼ିଆ ରଂଗମଞ୍ଚରେ ଅଭିନୟ ନିପୁଣତା ପ୍ରଦର୍ଶିତ କରିଥିବା କେତେକ କଳାକାର ''ଶ୍ରୀ ଜଗନ୍ନାଥ''ର ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ । ବିଦ୍ୟାପତି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ଶ୍ରୀ ଗୋପାଳ ଘୋଷ । ଲଳିତା ଭୂମିକାରେ ଗ୍ଲୋରିଆ ରାଉତ(ମହାନ୍ତି), ଇନ୍ଦ୍ରଦ୍ୟୁମ୍ନ ଭୂମିକାରେ ନିରଞ୍ଜନ ଶତପଥୀ, ଶ୍ରୀକୃଷ୍ଣ ଭୂମିକାରେ କାର୍ତ୍ତିକ ଘୋଷ୍ ଅଭିନୟ କରିଥିଲେ ।

''ଶ୍ରୀ ଜଗନ୍ନାଥ'' କେବଳ ହିଟ୍ ନୁହେଁ, ଏକ ଅସାମାନ୍ୟ ହିଟ୍ ହୋଇଥିଲା । କଟକର କ୍ୟାପିଟାଲ ସିନେମାରେ ଏହା ଏକାଦିକ୍ରମେ ୧୦ ସପ୍ତାହ ଚାଲିଥିଲା । ତେବେ ''ଶ୍ରୀ ଜଗନ୍ନାଥ'' ପୁରପଲ୍ଲୀ ଯେଉଁଠି ମୁକ୍ତି ପାଇଲା ସେଇଠି ଦେଖାଗଲା ଉତ୍ସାହ । ବ୍ୟବସାୟ ଦୃଷ୍ଟିରୁ ଚଳଚ୍ଚିତ୍ରଟି ଅସାମାନ୍ୟ ସଫଳତା ହାସଲ କରିଥିଲା । ଓଡ଼ିଶା ବାହାରେ ମଧ୍ୟ ''ଶ୍ରୀ ଜଗନ୍ନାଥ'' ପ୍ରତି ଆଗ୍ରହ ଯୋଗୁଁ ଏହା ତେଲୁଗୁ ଭାଷାରେ ଡବିଂ ହୋଇ ପ୍ରଦର୍ଶିତ ହୋଇଥିଲା । ଆସାମ, କଲିକତା, ବିହାର, ବର୍ମା ପ୍ରଭୃତିର ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ମାନଙ୍କରେ ମଧ୍ୟ ''ଶ୍ରୀ ଜଗନ୍ନାଥ'' ପ୍ରଦର୍ଶିତ ହୋଇଥିଲା ।

କିନ୍ତୁ ଦୁଃଖର ବିଷୟ ରୂପ ଭାରତୀର ପ୍ରଥମ ଉଲ୍ଲେଖନୀୟ ଅବଦାନଟି ଏହାର ଶେଷ ଅବଦାନରେ ପରିଣତ ହେଲା । କଂପାନୀ ଉପରେ କର୍ତ୍ତୃତ୍ୱ ଜାହିର୍ ପାଇଁ ବିଭିନ୍ନ ଶ୍ରେଣୀର ଅଂଶୀଦାରମାନେ ସକ୍ରିୟ ହେଲେ ଏବଂ ମାଲି ମକଦ୍ଦମା ଆରମ୍ଭ ହୋଇଗଲା । ପରିଣତ ସ୍ୱରୂପ ରୂପ ଭାରତୀ ଲିମିଟେଡ୍ ଭାଙ୍ଗି ପଡ଼ିଲା ।

ବର୍ତ୍ତମାନ ସୁଦ୍ଧା ଆଲୋଚିତ ଓଡ଼ିଆ ଭାଷାର ପ୍ରଥମ ଚିତ୍ର ଦ୍ରୟ ପୌରାଣିକ ବା ଧାର୍ମିକ କିମ୍ବଦନ୍ତୀ ଉପରେ ଆଧାରିତ । ଭାରତର ପ୍ରଥମ କାହାଣୀ ଆଶ୍ରିତ ସିନେମା ''ରାଜା ହରିଶ୍ଚନ୍ଦ୍ର'' ମଧ୍ୟ ପୌରାଣିକ । ଏ ସମସ୍ତ କଥାଚିତ୍ର ଭାରତର ତଥା ଓଡ଼ିଶାର ସମୂହ ରଚି ସଂପର୍କରେ ଆଲୋକପାତ କରେ । ଏହି ଚିତ୍ର ଗୁଡ଼ିକ ସହ ବିଶ୍ୱର ସର୍ବ ପ୍ରଥମ ଚଳଚ୍ଚିତ୍ର ''ଦି ଗ୍ରେଟ୍ ଟ୍ରେନ୍ ରୋବେରୀ''ର ବିଷୟବସ୍ତୁର ପାର୍ଥକ୍ୟ ତୁଳନା କଲେ ପ୍ରାଚ୍ୟ ପାଶ୍ଚାତ୍ୟ ରଚିବୋଧର ମୌଳିକ ପାର୍ଥକ୍ୟ ହୃଦ୍‌ବୋଧ କରିହୁଏ ।

ଆମ ଚଳଚ୍ଚିତ୍ର କ୍ଷେତ୍ରରେ ପ୍ରଥମ ତିନି ଦଶକ, ଅର୍ଥାତ୍ ୧୯୩୬ରୁ ୧୯୬୩ ଯାଏଁ ପ୍ରସରି ଥିବା ସମୟକୁ ଓଡ଼ିଆ ଚଳଚ୍ଚିତ୍ରର ଆଦିପର୍ବ ବୋଲି କୁହାଯାଇପାରେ । ପ୍ରଥମ ତେଇଶି ବର୍ଷ, ଅର୍ଥାତ୍ ୧୯୫୮ ଯାଏଁ ମାତ୍ର ନଅଗୋଟି ଓଡ଼ିଆ ସିନେମା ନିର୍ମିତ

ହୋଇଥିଲା । ଉପରେ ଚର୍ଚ୍ଚିତ ତିନୋଟି ସିନେମା ବାଦ୍ ଏହି ସମୟ ମଧ୍ୟରେ ନିର୍ମିତ ଅନ୍ୟ ଚଳଚ୍ଚିତ୍ର ଗୁଡ଼ିକ ହେଲା ''ରୋଲ୍‌ସ୍ ୨-୮'' (୧୯୫୧), ''ଶପ୍ତଶଯ୍ୟା'' (୧୯୫୧), ''ଆମରି ଗାଁ ଝିଅ'' (୧୯୫୩), ''କେଦାର ଗୌରୀ'' (୧୯୫୪), ''ଭାଇ ଭାଇ'' (୧୯୫୫), ଏବଂ ''ମା'' (୧୯୫୮) । ଏହି ସିନେମା ଗୁଡ଼ିକ ମଧ୍ୟରେ କିମ୍ବଦନ୍ତୀ ସମ୍ବଳିତ ପୁନଶ୍ଚ ଏକ ଚିତ୍ର ହେଲା ''କେଦାର ଗୌରୀ'', ତେବେ ସେହି ସିନେମାଟିର ପର୍ଯ୍ୟାଲୋଚନା ପୂର୍ବରୁ ପ୍ରଥମ ସାମାଜିକ ଓଡ଼ିଆ ଚିତ୍ର ''ରୋଲ୍‌ସ୍ ୨-୮'' ସଂପର୍କରେ କିଛି ଆଲୋଚନା କରିବା ଆବଶ୍ୟକ ।

ଏହି ଚତୁର୍ଥ ଓଡ଼ିଆ ଚଳଚ୍ଚିତ୍ରଟିର ପ୍ରଯୋଜନା କରିଥିଲେ ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ୍ ଯଦିଓ ''ଲଳିତା'' ବ୍ୟବସାୟ ଦିଗରୁ କ୍ଷତିଗ୍ରସ୍ତ ହୋଇଥିଲା । ତେବେ ''ରୋଲ୍‌ସ୍ ୨-୮''ର ନିର୍ମାଣ ଅନ୍ତରାଳରେ ବାଲେଶ୍ୱରରେ ଜନ୍ମିତ ଶ୍ରୀ ରତିକାନ୍ତ ପାଢ଼ୀଙ୍କ ଅବଦାନ ହିଁ ଅଧିକ ବୋଲି ସ୍ୱୀକାର କରାଯାଏ । ସେ ହିଁ ଉକ୍ତ ସିନେମାର କାହାଣୀ-ସାର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କୁ ଦେଇଥିଲେ ଏବଂ କାଳୀଚରଣ କାହାଣୀଟି ପରିବର୍ଦ୍ଧିତ କରିଥିଲେ । ଏହା ଥିଲା ଏକ ପ୍ରେମ କାହାଣୀ ।

ପରିବାର ସ୍ଥିରୀକୃତ ବିବାହ ଅପେକ୍ଷା ପ୍ରେମ-ବିବାହ ପ୍ରଗତିଶୀଳ ବୋଲି ଦର୍ଶାଇବା ଥିଲା ଏଇ ସାମାଜିକ ସିନେମାଟିର ବିଷୟବସ୍ତୁ । ଜଣେ ଯୁବକ ଓ ଜଣେ ଯୁବତୀ ପରସ୍ପରକୁ ଭଲପାଇ ପାରିବାରିକ ବାଧା ଯୋଗୁଁ ବିବାହ କରିପାରୁ ନାହାନ୍ତି । କିନ୍ତୁ ସେମାନଙ୍କର ଦୁଇଟି ସନ୍ତାନ ବୟଃପ୍ରାପ୍ତି ପରେ ପରସ୍ପରର ପ୍ରେମରେ ପଡ଼ି ବାପା-ମା'ଙ୍କର ସ୍ୱୀକୃତି ପାଇ ବିବାହ କରିଛନ୍ତି । ଜନକ ଜନନୀ ହୃଦୟରେ ସେମାନଙ୍କର ପ୍ରଥମ ପ୍ରେମ ଚିର ସବୁଜ ରହିଥିବାରୁ ଏହା ସମ୍ଭବ ହୋଇଛି—ଅନ୍ତତଃ ଏହା ହିଁ ସିନେମାଟିର ବକ୍ତବ୍ୟ । ସେତେବେଳର ସୌଖିନ୍ କଳାକାର ରତିକାନ୍ତ ପାଢ଼ୀ ଏଥିରେ ଦୁଇଟି ଭୂମିକାରେ ଅଭିନୟ କରିଥିଲେ । ଏହି ସିନେମାର ପ୍ରସ୍ତୁତିରେ ମଧ୍ୟ କଲିକତାର ଟଲିଗଞ୍ଜର ଛାପ ରହିଥିଲା । ଚିତ୍ର ଗ୍ରହଣ ହୋଇଥିଲା କଲିକତାର ଇନ୍ଦ୍ରଲୋକ ଷ୍ଟୁଡ଼ିଓରେ ଏବଂ ନିର୍ଦ୍ଦେଶନା ଦେଇଥିଲେ ଶ୍ରୀ କଲ୍ୟାଣ ଗୁପ୍ତ ।

ପରବର୍ତ୍ତୀ ସାମାଜିକ ଚିତ୍ର ''ସପ୍ତଶଯ୍ୟା'' ମଧ୍ୟ ପ୍ରଯୋଜିତ ହୋଇଥିଲା ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟୋନ ଦ୍ୱାରା । ଢେଙ୍କାନାଳ ଜିଲ୍ଲାର ସପ୍ତଶଯ୍ୟାକୁ ପୃଷ୍ଠପଟରେ ରଖି ଏ ସିନେମାଟିର କାହାଣୀ ପରିକଳ୍ପିତ ।

ଷଷ୍ଠ ଓଡ଼ିଆ ଚଳଚ୍ଚିତ୍ର ''ଆମରି ଗାଁ ଝିଅ'' (୧୯୫୩ରେ ମୁକ୍ତିପ୍ରାପ୍ତ) ମଧ୍ୟ ଗୋଟିଏ ସାମାଜିକ ବିଷୟବସ୍ତୁ ଉପରେ ଆଧାରିତ ହୋଇଥିଲା । କଲିକତାର ବିଜୟ ବାନାର୍ଜୀଙ୍କ ଦ୍ୱାରା ନିର୍ଦ୍ଦେଶିତ ଏ ସିନେମାର କାହାଣୀ ଏକ ବଙ୍ଗଳା ଉପନ୍ୟାସରୁ ଗ୍ରହଣ କରାଯାଇଥିଲା । କେବଳ ଓଡ଼ିଆରେ ନୁହେଁ ସେହି ଏକା ବିଷୟବସ୍ତୁକୁ ନେଇ ''ପଣରକ୍ଷା'' ନାମରେ ଗୋଟିଏ ବଙ୍ଗଳା ସିନେମା ମଧ୍ୟ ସେତେବେଳେ ପ୍ରସ୍ତୁତ ହୋଇଥିଲା ।

''ଆମରି ଗାଁ ଝିଅ''ର କାହାଣୀ ବାପା-ମା ଛେଉଣ୍ଡ ଦୁଇ ଭାଇ-ଭଉଣୀର କାହାଣୀ। ଗୋପ ଓ ଅନି ନାମରେ ଏ ଦୁହେଁ ଆଇ ଘରେ—ଗାଁରେ ବଢ଼ି ଥାଆନ୍ତି। ଭଉଣୀ ବିବାହ ଯୋଗ୍ୟା ହେବା ପରେ ତାକୁ ଉପଯୁକ୍ତ ପାତ୍ର ସହ ବିବାହରେ ଦେବା ପାଇଁ ଗୋପ ସଂକଳ୍ପ କରେ। ଏଣୁ ପ୍ରଥମେ ଅର୍ଥାର୍ଜନ ପାଇଁ ସେ ସହରକୁ ଯାଏ ଓ ଗୋଟିଏ କାରଖାନାରେ କାମ କରେ। ଏହାଦ୍ୱାରା ପ୍ରତି ମାସରେ ସେ କିଛି କିଛି ଅର୍ଥ ସଞ୍ଚୟ କରିବାରେ ସମର୍ଥ ହୁଏ। କିନ୍ତୁ ଗୋପ ସବୁବେଳେ ଚିନ୍ତିତ ରହୁଥିବାରୁ କାରଖାନା ମାଲିକ ତା' ମନକଥା ପଚାରନ୍ତି। ଗୋପ ଭଉଣୀର ବିବାହ ସମସ୍ୟା କହନ୍ତେ, ମାଲିକ ତାକୁ ସାହାଯ୍ୟର ପ୍ରତିଶ୍ରୁତି ଦିଅନ୍ତି, ଏପରିକି ଏକ ଥିଲାବାଲା ଘରର ସୁଦର୍ଶନ ଯୁବକ ସହ ଅନିର ବିବାହ ପ୍ରସ୍ତାବ ବି ମନସ୍ଥ କରିଥାଆନ୍ତି। କିନ୍ତୁ ଅନିକୁ ସେ ଦେଖିବାକୁ ଚାହିଁବାରୁ, ଗୋପ ଅନିକୁ ଆଣିବାକୁ ଗାଁକୁ ବାହାରେ ଓ ରାସ୍ତାରେ ଟ୍ରେନ୍ ଦୁର୍ଘଟଣାରେ ପ୍ରାଣ ହରାଏ। କାରଖାନା ମାଲିକ କିନ୍ତୁ ତାଙ୍କ ପ୍ରତିଶ୍ରୁତି ଭୁଲି ନଥା'ନ୍ତି। ନିଜ କଥା ରଖିବାକୁ ସେ ଗୋପର ଗାଁଆକୁ ଆସନ୍ତି। ଗାଁଆରେ ସେ ଅନିକୁ ଦେଖନ୍ତି, ତେବେ ତାଙ୍କର ହୃଦ୍‌ବୋଧ ହୁଏ ଯେ, ଅନିର ଭାବ ହୋଇଛି ଜଣେ ସମାଜସେବୀ ଯୁବକ ସହ। ଏ ଦୁହିଁଙ୍କୁ ବିବାହ ବଂଧନରେ ବାନ୍ଧିବା ଦାୟିତ୍ୱ ସେ ନିଅନ୍ତି।

''ଆମରି ଗାଁ ଝିଅ''ର ନାୟକ ଓ ନାୟିକା ଭୂମିକାରେ ଗୌର ଘୋଷ ଏବଂ ଚନ୍ଦନା (ପାର୍ବତୀ ଘୋଷ) ଅଭିନୟ କରିଥିଲେ। ଅନ୍ୟ ଏକ ଭୂମିକାରେ ଅଭିନୟ କରିଥିଲେ ଗୋପାଳ ଘୋଷ। ଏ ଚଳଚ୍ଚିତ୍ରର ନିର୍ମାତା ଥିଲେ ଉତ୍କଳ ଚିତ୍ର ପ୍ରତିଷ୍ଠାନ ନାମକ ସଂସ୍ଥା।

୧୯୫୫ରେ ମୁକ୍ତି ପାଇଥିଲା ''କେଦାର ଗୌରୀ''। ନାମଟି ପୌରାଣିକ ଭଳି ମନେ ହେଉଥିଲେ ମଧ୍ୟ ଏ ଚିତ୍ରର କାହାଣୀଟି ରାଧାନାଥ ରାୟଙ୍କ ସେହି ନାମର ଗାଥା କବିତାରୁ ନିଆଯାଇଥିଲା। ତେବେ ସେହି କାହାଣୀ ରାଧାନାଥଙ୍କର ନିଜସ୍ୱ କାହାଣୀ ନୁହେଁ। ମୂଳ ଉତ୍ସଟି ଉଲ୍ଲେଖ ନ କରି ସେ ଗ୍ରୀକ୍ ଲେଖକ ଓଭିଡ୍‌ଙ୍କ ''ମେଟାମୋରଫସିସ୍''ର ପିରାମିସ୍ ଓ ଥିସ୍‌ବି ପ୍ରେମ କାହାଣୀଟି ନିଜ କବିତା ପାଇଁ ଗ୍ରହଣ କରିଥିଲେ।

''କେଦାର ଗୌରୀ''ର କାହାଣୀ ସହ ସାରା ଜଗତ ପରିଚିତ। ଓଭିଡ୍‌ଙ୍କ କାହାଣୀ ଗ୍ରହଣ କରି ନାଟ୍ୟକାର ସେକ୍ସପିଅର୍ ଜନପ୍ରିୟ ନାଟକ ''ରୋମିଓ ଓ ଜୁଲିଏଟ୍'' ରଚନା କରି କଥାବସ୍ତୁଟିକୁ ବହୁ ଯୁଗବ୍ୟାପୀ ଓ ବହୁଜନ ଆଦୃତ କରାଇ ପାରିଛନ୍ତି। ରାଧାନାଥଙ୍କ ''କେଦାର ଗୌରୀ'' ସେଇ ବିଷୟବସ୍ତୁର ନାତିଦୀର୍ଘ କବିତାରୂପ। ପରସ୍ପର ପ୍ରତି ଶତ୍ରୁ ଭାବାପନ୍ନ ଦୁଇଟି ପରିବାରର ପୁଅଟିଏ ଓ ଝିଅଟିଏ ପ୍ରଣୟ ବନ୍ଧନରେ ଆବଦ୍ଧ। କିନ୍ତୁ ସେମାନଙ୍କର ପରିବାରବର୍ଗ ଏଇ ସଂପର୍କକୁ ସ୍ୱୀକୃତି ଦେବାକୁ ଆଦୌ ପ୍ରସ୍ତୁତ ନୁହଁନ୍ତି। ତରୁଣ ତରୁଣୀ ଅନ୍ୟ ଉପାୟ ନ ପାଇ ଘରଛାଡ଼ି ଚାଲିଯିବାର ଯୋଜନା କରୁଛନ୍ତି।

କିନ୍ତୁ ପଳାୟନ ନିର୍ଘଣ୍ଟରେ ସାମାନ୍ୟ ବ୍ୟତିକ୍ରମ ଯୋଗୁଁ ଉଭୟଙ୍କୁ ଇହଲୀଳା ସାଙ୍ଗ କରିବାକୁ ହୋଇଛି । ଏଭ ମୌଳିକ ଗ୍ରୀକ୍ କାହାଣୀଟିକୁ କବି ରାଧାନାଥ ଭୁବନେଶ୍ୱରର ପ୍ରାଚୀନ ମନ୍ଦିର ''କେଦାର ଗୌରୀ'' ଉପରେ ଆରୋପ କରିଦେଇଛନ୍ତି ଅହେତୁକ ଭାବେ ।

''କେଦାର ଗୌରୀ'' ଚଳଚ୍ଚିତ୍ରଟିକୁ ନିର୍ଦ୍ଦେଶକ ନିତାଇ ପାଲିତ୍ ବେଶ୍ ମର୍ମଗ୍ରାହୀ କରି ରୂପ ଦେବାରେ ସମର୍ଥ ହୋଇଛନ୍ତି । ପ୍ରାଚୀନ ଓଡ଼ିଶାର ସାଧବ ସଂପ୍ରଦାୟର ଚରିତ୍ର ମଧ୍ୟ ସେ ଚିତ୍ରଟିରେ ସଂଯୋଜିତ କରିଛନ୍ତି । ଦୁଇ ପରିବାରର ପୁରୁଷ ମୁଖ୍ୟ ମାନଙ୍କର କ୍ରୁରତା ସେ ନିଜସ୍ୱ ଶୈଳୀରେ ଦର୍ଶାଇ ପାରିଛନ୍ତି । ଉଦାହରଣ ଅଣରାସ୍ତାରେ ଗଲାବେଳେ ସେମାନଙ୍କ ମଧ୍ୟରୁ ଜଣକର ପାଦଟିଏ ପଡ଼ିଯାଇଛି ଗୋଟାଏ ମହୁଘରା ଉପରେ । ପାଦରେ ଦଳି ସେ ମହୁମାଛି ଗୁଡ଼ାକୁ ମାରିଦେଇଛନ୍ତି । ଏ ସିନେମାଟିରେ ଶ୍ରୀ ଗୌର ଘୋଷ ନାୟକ ଭୂମିକାରେ ଅଭିନୟ କରିଥିଲେ ।

ଷଷ୍ଠ ଦଶକର ଶେଷ ଆଡ଼କୁ ଓଡ଼ିଆ ଚଳଚ୍ଚିତ୍ର ଜଗତକୁ ଆସିଥିଲେ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ । ସେ ଆସ୍କାରେ ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ ନାମରେ ଗୋଟାଏ ସଂସ୍ଥା ଗଢ଼ିଥିଲେ । ଏକ ସଂକଟମୟ ସମୟରେ ଏ ସଂସ୍ଥା କେତୋଟି ଚଳଚ୍ଚିତ୍ର ନିର୍ମାଣ ପାଇଁ ସାହସିକ ପଦକ୍ଷେପ ନେଇଥିଲା ।

୧୯୧୪ରେ ଜନ୍ମିତ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ପେଷାରେ ଯଦିଓ ଆୟୁର୍ବେଦ ଚିକିତ୍ସକ, ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣକୁ ସେ ଜାତୀୟ ସ୍ୱାଭିମାନର ପ୍ରତୀକ ରୂପେ ଗ୍ରହଣ କରିଥିଲେ । ତାଙ୍କ ଉଦ୍ୟମ ପ୍ରସୂତ ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ ୩ ଗୋଟି ଓଡ଼ିଆ ଚଳଚ୍ଚିତ୍ର (''ମହାଲକ୍ଷ୍ମୀ ପୂଜା'', ''ପରିଣାମ'', ''ଦସ୍ୟୁ ରତ୍ନାକର'') ନିର୍ମାଣ କରିଥିଲା ଏବଂ ଦୁଇଗୋଟି ସିନେମା (''କଂସ'' ଓ ''ନାଗପୂଜା'') ଅନ୍ୟାନ୍ୟ ଭାଷାରୁ ଓଡ଼ିଆରେ ରୂପାନ୍ତରୀତ କରିଥିଲା । ଏତଦ୍ ବ୍ୟତୀତ ଏ ସଂସ୍ଥା ''ଜୟ ଜଗନ୍ନାଥ'' ନାମକ ଗୋଟିଏ ହିନ୍ଦୀ ଚଳଚ୍ଚିତ୍ର ମଧ୍ୟ ନିର୍ମାଣ କରିଥିଲା ଯାହା ଏବେ ବି ମୁକ୍ତି ଲାଭ କରିପାରିନି ।

ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର ପ୍ରଥମ ଅବଦାନ ଥିଲା ''ମହାଲକ୍ଷ୍ମୀ ପୂଜା'' । ଷଷ୍ଠଦଶ ଶତାବ୍ଦୀର ଓଡ଼ିଆ କବି ବଳରାମ ଦାସଙ୍କ ରଚିତ ''ଲକ୍ଷ୍ମୀ ପୁରାଣ'' ଗାଥା କବିତା ଉପରେ ଏହି ଚଳଚ୍ଚିତ୍ରଟି ଆଧାରିତ । ଓଡ଼ିଆରେ ପ୍ରଥମେ ''ରାମାୟଣ'' ରଚନା କରିଥିବା କବି ବଳରାମ ଦାସଙ୍କ ''ଲକ୍ଷ୍ମୀ ପୁରାଣ''ରେ ତାଙ୍କ ମୌଳିକତ୍ୱର ପରିଚୟ ମିଳେ । ଶ୍ରୀମନ୍ଦିରର ଦେବୀ ଲକ୍ଷ୍ମୀଙ୍କ ମହିମା ବର୍ଣ୍ଣନା ହିଁ ପୁସ୍ତକଟିର ଲକ୍ଷ୍ୟ ନୁହେଁ; ପୁରୀ ମନ୍ଦିର ପରଂପରାରେ ପରିଦୃଷ୍ଟ ଜାତିପ୍ରଥା ବିରୋଧୀ ଆଦର୍ଶ କବି ତାଙ୍କ ପୁରାଣରେ ପ୍ରତିଫଳିତ କରିଛନ୍ତି ।

ସଂକ୍ଷେପରେ ''ଲକ୍ଷ୍ମୀ ପୁରାଣ''ର ବିଷୟବସ୍ତୁ ହେଲା, ଶ୍ରୀ ଜଗନ୍ନାଥଙ୍କ ପ୍ରାଣେଶ୍ୱରୀ ଦେବୀ ଲକ୍ଷ୍ମୀ ମାର୍ଗଶୀର ଗୁରୁବାର ଦିନ ସକାଳୁ ବୁଲି ବାହାରିଲେ ।




ଓଡ଼ିଆ ସିନେମା ଅଗ୍ରଗତିର ଅନ୍ୟତମ କର୍ଣ୍ଣଧାର, କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ

ଉଦ୍ଦେଶ୍ୟ : ତାଙ୍କ ଆରାଧନାରେ ପାଳିତ ପାର୍ବଣ କିଏ କିପରି ଆୟୋଜନ କରୁଛି ସ୍ୱ ନେତ୍ରରେ ଦେଖିବେ । ଲକ୍ଷ୍ମୀଙ୍କୁ ସବୁଠୁ ଅଧିକ ମୁଗ୍ଧ କଲା, ଶ୍ରୀୟା ନାମକ ଚଣ୍ଡାଳୁଣୀର ନିଷ୍ଠା । ଖୁସିରେ ସେ ତା' ଘର ଦେଖିଲେ । କିନ୍ତୁ ଲକ୍ଷ୍ମୀ ଯେତେବେଳେ ପୁନଶ୍ଚ ଫେରି ଆସିଲେ ଶ୍ରୀ ମନ୍ଦିରକୁ, ଦେଢ଼ଶୁର ବଳଭଦ୍ରଙ୍କ କ୍ରୋଧ ଆଉ ଦେଖେ କିଏ ? ଲକ୍ଷ୍ମୀ

ଅସ୍ପୃଶ୍ୟା ଚଣ୍ଡାଳୁଣୀ ଘରକୁ ଯାଇଥିବାରୁ ସାନଭାଇ ଜଗନ୍ନାଥଙ୍କୁ ସେ ଆଦେଶ ଦେଲେ, ମନ୍ଦିରରୁ ସେ ଲକ୍ଷ୍ମୀଙ୍କୁ ତଡ଼ି ଦିଅନ୍ତୁ । କୁଣ୍ଠିତ ଚିତ୍ତରେ ତାହା ହିଁ କଲେ ଜଗନ୍ନାଥ । ସ୍ୱାମୀ ପରିତ୍ୟକ୍ତା ଲକ୍ଷ୍ମୀ ଶ୍ରୀ ମନ୍ଦିରରୁ ଚାଲିଯାଇ ମହୋଦଧି କୂଳରେ ବେତାଳମାନଙ୍କ ସାହାଯ୍ୟରେ ରଚିଲେ ଗୋଟାଏ ଆବାସ, ସମୁଦ୍ର କନ୍ୟାଙ୍କ ଆଭିଜାତ୍ୟ ଅନୁରୂପେ । ତାପରେ ତାଙ୍କ ବେତାଳମାନେ ଲୁଣ୍ଠନ କଲେ ଶ୍ରୀ ମନ୍ଦିରର ସମସ୍ତ ସଂପଦ, ଏପରିକି ଠାକୁର ମାନଙ୍କ ରତ୍ନପଲଙ୍କ ମଧ୍ୟ ! ଶେଷରେ ନିରନ୍ନ ଜଗନ୍ନାଥ, ବଳଭଦ୍ର ଦାଣ୍ଡରେ ଭିକାରୀ ପ୍ରାୟ ଘୂରି ବୁଲିଲେ ଇତଃସ୍ତତଃ, ଆହାର ଅନ୍ୱେଷଣରେ । ବୁଲି ବୁଲି ଯାଇ ପହଞ୍ଚିଲେ ସେଇ ମହାଲକ୍ଷ୍ମୀଙ୍କ ଦ୍ୱାରରେ । ରାନ୍ଧିବାରେ ବିଫଳ ହୋଇ ଶେଷରେ ରନ୍ଧା ଅନ୍ନ ବ୍ୟଞ୍ଜନ ଖାଇ ତୃପ୍ତି ଲଭିଲେ ଦି' ଭାଇ ଓ ବୁଝିପାରିଲେ ନିଜର ଭୁଲ୍ । ଲକ୍ଷ୍ମୀଙ୍କୁ କ୍ଷମା ମାଗି, ସାଥିରେ ନେଇ ପୁଣି ଫେରିଗଲେ ଶ୍ରୀ ମନ୍ଦିର ।

ଏପରି ଏକ ବିଷୟବସ୍ତୁ ଚୟନରେ ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର ପ୍ରତିଷ୍ଠାତା କୃଷ୍ଣଚନ୍ଦ୍ର ବାବୁ ଯେ ବିଜ୍ଞତାର ପରିଚୟ ଦେଇଥିଲେ ଏଥିରେ ସନ୍ଦେହ ନାହିଁ । କାହାଣୀଟିରେ ବହୁ ଉପାଦାନର ସମ୍ମିଶ୍ରଣ ଘଟିଛି, ସେଥିରେ ରହିଛି ପୌରାଣିକତା, ରହିଛି ସମାଜ ସଂସ୍କାରର ଉପାଦାନ ଏବଂ ଓଡ଼ିଆ ପ୍ରାଣର ଅନ୍ୟତମ ଆକର୍ଷଣ ଶ୍ରୀମନ୍ଦିର । ''ମହାଲକ୍ଷ୍ମୀ ପୂଜା'' ଥିଲା ଓଡ଼ିଆ ଭାଷାରେ ନିର୍ମିତ ଦଶମ ଚଳଚ୍ଚିତ୍ର । ଏହି ସିନେମା ପ୍ରସ୍ତୁତି ଅନ୍ତରାଳରେ କେତୋଟି ଚିତ୍ତାକର୍ଷକ ଘଟଣା ରହିଛି ।

ଆସିକାକୁ ଓଡ଼ିଶାର ସମବାୟ ସହର ଆଖ୍ୟା ଦିଆଯାଇପାରେ । ଏଇ ନାତି-ବୃହତ୍ ସହର ବହୁ ପ୍ରକାରର ସମବାୟ ସଂସ୍ଥା କାର୍ଯ୍ୟରତ : ସମବାୟ ଚିନି କାରଖାନା, ବହୁମୁଖୀ ସମବାୟ ସଂସ୍ଥା, ଏପରିକି ସମବାୟ ଭିତ୍ତିରେ ଆୟୁର୍ବେଦ ଔଷଧ କାରଖାନା । ଏଥିରୁ ଅନେକ ସଂସ୍ଥାସହ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ସଂପୃକ୍ତ । ଏଣୁ ବିଂଶ ଶତାବ୍ଦୀର ଷଷ୍ଠ ଦଶକର ଶେଷ ପର୍ଯ୍ୟାୟରେ କବିରାଜ ମହାଶୟ ସମବାୟ ଭିତ୍ତିରେ ଗଢ଼ିଥିଲେ ଉତ୍କଳ ସିନେମା ନାମରେ ଗୋଟାଏ ପ୍ରେକ୍ଷାଳୟ ଏବଂ ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ ନାମରେ ସିନେମା ନିର୍ମାଣ ସଂସ୍ଥା ।

ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର ପ୍ରଥମ ଅବଦାନ ଲୋକଲୋଚନକୁ ଆସିବା ପୂର୍ବରୁ ତା' ଅନ୍ତରାଳରେ ଏକ ଦୀର୍ଘ ପ୍ରସ୍ତୁତି ପର୍ବ ରହିଥିଲା । ଓଡ଼ିଶାର ମଞ୍ଚ ଓ ସିନେମା କ୍ଷେତ୍ରରେ କେତେକ ପ୍ରବୀଣ ବ୍ୟକ୍ତିତ୍ୱ (ଯଥା, ନାଟ୍ୟକାର ସତ୍ୟନାରାୟଣ ପଣ୍ଡା ଓ କାର୍ତ୍ତିକ ଘୋଷ) ଏବଂ କଲିକତାରୁ ଆସିଥିବା କ୍ୟାମେରାମ୍ୟାନ୍ ରାମାନନ୍ଦ ସେନ୍‌ଗୁପ୍ତ ପ୍ରଭୃତି ଆସ୍କାରେ କବିରାଜ ମହାଶୟଙ୍କ ଆମନ୍ତ୍ରଣରେ ଏକତ୍ରିତ ହୋଇ କଳାକାର ନିରୂପଣ କରିଥିଲେ । ଏଥିପାଇଁ ତିନିଦିନ ଲାଗିଥିଲା । ଇଚ୍ଛୁକ କଳାକାରମାନେ ବିଚାରକ ମଣ୍ଡଳୀ ଆଗରେ ରୀତିମତ ଟେଷ୍ଟ ଦେଇଥିଲେ ଓ ସମ୍ଭାବ୍ୟ ପ୍ରାର୍ଥୀମାନଙ୍କର ଫୋଟ ନିଆଯାଇଥିଲା ।

ପ୍ରାୟ ଏକ ବର୍ଷର ପ୍ରସ୍ତୁତି ପର୍ବ ପରେ ''ମହାଲକ୍ଷ୍ମୀ ପୂଜା''ର ସୁଟିଂ କାର୍ଯ୍ୟ କଲିକତାର ଟେକ୍‌ନିସିଆନ୍ ଷ୍ଟୁଡ଼ିଓରେ ଆରମ୍ଭ ହେଲା । ଏ ଚିତ୍ର ପାଇଁ କାହାଣୀ, ଚିତ୍ରନାଟ୍ୟ, ସଂଳାପ ଓ ଗୀତ ଲେଖିଥିଲେ ଶ୍ରୀ ସତ୍ୟ ନାରାୟଣ ପଣ୍ଡା, ନିର୍ଦ୍ଦେଶନା ଦେଇଥିଲେ ଶ୍ରୀ ବିଶ୍ୱନାଥ ନାଏକ, ସଂଗୀତ ନିର୍ଦ୍ଦେଶକ ଥିଲେ କଲିକତାର ଶ୍ରୀ ନଚିକେତା ଘୋଷ, କ୍ୟାମେରା ମେନ୍ ଥିଲେ ସେହି କଲିକତାର ଶ୍ରୀ ରାମାନନ୍ଦ ସେନ୍‌ଗୁପ୍ତ । ବିଭିନ୍ନ ଭୂମିକାରେ ଶରତ ପୂଜାରୀ, ଧୀର ବିଶ୍ୱାଳ, ନରେନ୍ଦ୍ର, ଅନୁଭା, ସେଫାଳୀ, ନିରଞ୍ଜନକିନୀ ପ୍ରଭୃତି ଅଭିନୟ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପରେ ଅଭିନେତା ରୂପେ ଯଶସ୍ୱୀ ହୋଇଥିବା ଶ୍ରୀ ଶରତ ପୂଜାରୀ ମହାଲକ୍ଷ୍ମୀ ପୂଜାରେ ପ୍ରଥମେ ରୂପେଲୀ ପରଦାରେ ଆତ୍ମପ୍ରକାଶ କରିଥିଲେ । ''ମହାଲକ୍ଷ୍ମୀ ପୂଜା'' ପ୍ରଥମେ ମୁକ୍ତି ପାଇଥିଲା କଟକର କ୍ୟାପିଟାଲ୍ ସିନେମା ହଲ୍‌ରେ (ଅଷ୍ଟମ ଦଶକର ଶେଷ ଆଡ଼କୁ ତିନିକୋଣିଆ ବଗିଚାସ୍ଥ ଏ ପ୍ରେକ୍ଷାଳୟ ଲୁପ୍ତ ହେଲା) ।

ଓଡ଼ିଆ ସିନେମା ଆଦିପର୍ବର ଶେଷ ପର୍ଯ୍ୟାୟରେ ଉତ୍କଳ ପ୍ରତିଷ୍ଠାନ ହିଁ ସର୍ବାଧିକ ସକ୍ରିୟ ରହି ଆମ ଚଳଚ୍ଚିତ୍ର ପାଇଁ ଯଥେଷ୍ଟ ଆଶା ସଂଚାର କରିଥିଲା । ଏ ସଂସ୍ଥାର ଦ୍ୱିତୀୟ ସୃଷ୍ଟି ଥିଲା ଗୋଟିଏ ସାମାଜିକ ସିନେମା–''ପରିଣାମ'' । ଶ୍ରୀ ପ୍ରମୋଦ ପାଣିଗ୍ରାହୀଙ୍କର ଗୋଟିଏ କାହାଣୀ ଉପରେ ଏହା ଆଧାରିତ ହୋଇଥିଲା । ସିନେମାର ନିର୍ଦ୍ଦେଶକ ଥିଲେ ଶ୍ରୀ ବିଶ୍ୱନାଥ ନାଏକ ଏବଂ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ଓଡ଼ିଶାର ପ୍ରସିଦ୍ଧ ଭାଓଲିନ୍ ଶିଳ୍ପୀ ଶ୍ରୀ ଭୁବନେଶ୍ୱର ମିଶ୍ର । ଗୀତିସୁଧା (ପରବର୍ତ୍ତୀ ସମୟର ଡକ୍ଟର ଗୀତିସୁଧା ଜେନା) ''ପରିଣାମ''ର ନାୟିକା ଥିଲେ । ଅନେକ ପୋଖତ ମଞ୍ଚଶିଳ୍ପୀ ଯଥା - ମାଷ୍ଟର ମଣିଆ, ଶ୍ରୀ ଦୁଃଖିରାମ ସ୍ୱାଇଁ ପ୍ରଭୃତି ଏ ଚିତ୍ରରେ କେତୋଟି ଭୂମିକାରେ ଅଂଶ ଗ୍ରହଣ କରିଥିଲେ । ''ମହାଲକ୍ଷ୍ମୀ ପୂଜା'' ମୁକ୍ତି ପାଇବାର ଠିକ୍ ଦୁଇ ବର୍ଷ ପରେ, ୧୯୬୧ ସାଲ ମାର୍ଚ୍ଚ ମାସରେ ''ପରିଣାମ'' ମଧ୍ୟ କଟକର କ୍ୟାପିଟାଲ୍ ସିନେମା ହଲ୍‌ରେ ମୁକ୍ତି ପାଇଥିଲା ।

ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର ଶେଷ ମୌଳିକ କୃତି ''ଦସ୍ୟୁ-ରତ୍ନାକର'' ପରବର୍ତ୍ତୀ ବର୍ଷ ଅକ୍ଟୋବର ମାସରେ କଟକ ପ୍ରଭାତ ସିନେମାରେ ଆତ୍ମପ୍ରକାଶ କରିଥିଲା । **ରାମାୟଣ**ର ଆଖ୍ୟାୟିକା ମାନଙ୍କ ଉପରେ ଆଧାରିତ ଏ ଚଳଚ୍ଚିତ୍ରର ନିର୍ଦ୍ଦେଶକ ଥିଲେ ଶ୍ରୀ ପ୍ରଭାତ ମୁଖାର୍ଜୀ ଏବଂ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ଖ୍ୟାତନାମା ସଂଗୀତଜ୍ଞ ଶ୍ରୀ ବାଳକୃଷ୍ଣ ଦାସ ।

ଆଦିପର୍ବର ଅନ୍ତିମ ବର୍ଷ ଅର୍ଥାତ୍ ୧୯୬୩; ଓଡ଼ିଆ ଚଳଚ୍ଚିତ୍ର ଦର୍ଶକମାନଙ୍କୁ ପ୍ରଥମ ଥର ପାଇଁ ଗୋଟାଏ ସାଲରେ ଛଅ ଗୋଟି ସିନେମା ଅର୍ପଣ କରି ଏକ ରେକର୍ଡ଼ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲା । ଏହି ଚିତ୍ର ଗୁଡ଼ିକ ଥିଲା, ''ମାଣିକ ଯୋଡ଼ି'', ''ସୂର୍ଯ୍ୟମୁଖୀ'', ''ନାରୀ'', ''ଶ୍ରୀ ଶ୍ରୀ ପତିତପାବନ'', ''ଜୀବନସାଥୀ'' ଓ ''ସାଧନା'' ।

୧୯୩୪ ସାଲରୁ ୧୯୬୩ ଶେଷଯାଏଁ ସମୁଦାୟ ୨୨ଟି ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଥିଲା ଅର୍ଥାତ୍ ହାରାହାରି ପ୍ରାୟ ୧୭ ମାସରେ ଗୋଟିଏ କରି ସିନେମା ନିର୍ମିତ ହୋଇଥିଲା । ଏ ସମୟର ହିଟ୍ ଛବି ଗୁଡ଼ିକ ହେଲା ''ଶ୍ରୀ ଜଗନ୍ନାଥ'', ''ଶ୍ରୀ ଲୋକନାଥ'' (ରୂପରାଗ ପ୍ରାଇଭେଟ୍ ଲିମିଟେଡ୍ ଦ୍ୱାରା ୧୯୬୦ରେ ନିର୍ମିତ) ଓ ''ମହାଲକ୍ଷ୍ମୀ ପୂଜା'' । ଏହି ସମସ୍ତ ଚଳଚ୍ଚିତ୍ର ପୌରାଣିକ ବା ଧର୍ମଭିତ୍ତିକ ।

ଭାରତ ସରକାର ଜାତୀୟ ସ୍ତରରେ ଆଞ୍ଚଳିକ ଭାଷା ଚଳଚ୍ଚିତ୍ରମାନଙ୍କୁ ଯେଉଁ ସୁଶ୍ରେଷ୍ଠ ପୁରସ୍କାର ବିତରଣ କରନ୍ତି ତାହା ହାସଲ କରିଥିଲେ ''ଶ୍ରୀ ଲୋକନାଥ'' (୧୯୬୦ ପାଇଁ), ''ନୂଆବୋଉ'' (୧୯୬୨) ଏବଂ ''ସାଧନା'' ଓ ''ସୂର୍ଯ୍ୟମୁଖୀ'' (୧୯୬୩ ପାଇଁ) ମିଳିତଭାବେ ।

ଏହି ଆଦିପର୍ବ ସମୟ ମଧ୍ୟରେ ସିନେମା ସଂପର୍କୀୟ କିଛିଟା ଆଇନ୍ ଓଡ଼ିଶା ବିଧାନସଭାରେ ପାଶ୍ ହୋଇଥିଲା । ତେବେ ଏହି ଆଞ୍ଚଳିକ ଆଇନ୍‌ଗୁଡ଼ିକ ପ୍ରଣୀତ ହେବାର ବହୁ ପୂର୍ବରୁ ୧୯୧୮ ସାଲରେ ସମଗ୍ର ଦେଶ ପାଇଁ ''ସିନେମାଟୋଗ୍ରାଫ୍ ଆକ୍ଟ'' ପାଶ୍ ହୋଇ ଚଳଚ୍ଚିତ୍ର ପ୍ରଦର୍ଶନକୁ ସରକାରୀ ସ୍ତରରେ ନିୟନ୍ତ୍ରିତ କରାଯାଇଥିଲା । ସିନେମା ପ୍ରଦର୍ଶନ ପାଇଁ ଲାଇସେନ୍‌ସ୍ ନେବାକୁ ପଡୁଥିଲା; କିନ୍ତୁ ବର୍ତ୍ତମାନ ଭଳି ମନୋରଞ୍ଜନ ଟିକସ୍ ଦେବାକୁ ପଡୁ ନ ଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ଦଶ ବର୍ଷ ପରେ ଅର୍ଥାତ୍ ୧୯୪୬ରେ ବିଧାନସଭାରେ ପାଶ୍ ହେଲା ''ଓଡ଼ିଶା ମନୋରଞ୍ଜନ ଟିକସ ଆଇନ୍'' (Orissa Entertainment Tax Act. 1946) । ଏହି ଆଇନ୍‌ରେ ଉଲ୍ଲେଖ ରହିଲା ଯେ ମନୋରଞ୍ଜନ ପାଇଁ ପ୍ରବେଶ ମୂଲ୍ୟର ସର୍ବନିମ୍ନ ଶତକଡ଼ା ୩୦ ଭାଗ ଏବଂ ସର୍ବାଧିକ ଶତକଡ଼ା ୭୫ ଭାଗ ଯାଏଁ ସରକାର ମନୋରଂଜନ ଶୁଳ୍କରୂପେ ଆଦାୟ କରିପାରିବେ ।

ଜାତୀୟ ସ୍ତରରେ ୧୯୧୮ର ଆଇନ୍‌କୁ ୧୯୫୨ରେ ପୁନଃ ପ୍ରଣୀତ କରିବା ପରେ, ୧୯୫୪ ସାଲରେ ''ଓଡ଼ିଶା ସିନେମା ଆଇନ୍'' ପାଶ୍ ହୋଇଥିଲା ଏବଂ ତାର ଦଶବର୍ଷ ପରେ ନିୟମାବଳୀ (Orissa Cinema's Regulations & Rules 1964) ପ୍ରଣୀତ ହୋଇ ଗୃହୀତ ହୋଇଥିଲା ।

ଓଡ଼ିଆ ସିନେମାର ଆଦିପର୍ବ ଅର୍ଥାତ୍ ୧୯୩୪ ସାଲରୁ ୧୯୬୩ ମଧ୍ୟରେ ସମୁଦାୟ ୨୨ ଗୋଟି ପୂର୍ଣ୍ଣାଙ୍ଗ ଓଡ଼ିଆ ଚଳଚ୍ଚିତ୍ର ମୁକ୍ତି ପାଇଥିଲା । ସେହି ସମୟ ମଧ୍ୟରେ ନିର୍ମିତ ''ସୀତା ବିବାହ'' ସହ ଅନ୍ୟ ସ୍ମରଣୀୟ ସିନେମା ଗୁଡ଼ିକ ହେଲା, ''ଶ୍ରୀ ଜଗନ୍ନାଥ'' (୧୯୫୦), ''କେଦାର ଗୌରୀ'' (୧୯୫୪), ''ମା'' (୧୯୫୮), ''ମହାଲକ୍ଷ୍ମୀ ପୂଜା'' (୧୯୫୯), ''ଶ୍ରୀ ଲୋକନାଥ'' (୧୯୬୦) ଓ ''ସୂର୍ଯ୍ୟମୁଖୀ'' (୧୯୬୩) ।



# ଓଡ଼ିଆ ଚଳଚ୍ଚିତ୍ରର ମଧ୍ୟପର୍ବ



କରିତ୍କର୍ମା ବାବୁଲାଲ୍ ଦୋଶୀ

ଓଡ଼ିଆ ଚଳଚ୍ଚିତ୍ରର ଆଦିପର୍ବ ପରେ ଅନ୍ୟ ଏକ ଅଧ୍ୟାୟ ଆସିଲା ମଧ୍ୟପର୍ବ । ୧୯୬୪ ସାଲରୁ ଓ ପରବର୍ତ୍ତୀ ୧୨ ବର୍ଷକୁ ଓଡ଼ିଆ ସିନେମାର ମଧ୍ୟପର୍ବ ନାମରେ ଅଭିହିତ କରାଯାଇପାରେ । ଏହି ତେର ବର୍ଷକୁ ଏକ ସ୍ୱତନ୍ତ୍ର ଯୁଗ ରୂପେ ଉଲ୍ଲେଖ କରିବାର କାରଣ ଅବଶ୍ୟ ରହିଛି ।

ଆଦି ପର୍ବର ସମୁଦାୟ ୨୨ଗୋଟି ସିନେମା ମଧ୍ୟରୁ ଅଧିକାଂଶ ଥିଲା ପୌରାଣିକ କିମ୍ବା ଅଲୌକିକ କିମ୍ବଦନ୍ତୀକୁ ଗ୍ରହଣ କରି ରୂପ ନେଇଥିବା ଚଳଚ୍ଚିତ୍ର । କିନ୍ତୁ ମଧ୍ୟ ପର୍ବରେ ନିର୍ମିତ ୨୬ଗୋଟି ସିନେମା ମଧ୍ୟରୁ ଅଧିକାଂଶ ସାମାଜିକ ଚିତ୍ର ପର୍ଯ୍ୟାୟର । ଏହି ୧୩ ବର୍ଷ ମଧ୍ୟରେ ବାବୁଲାଲ୍ ଦୋଶୀଙ୍କ ଛାୟାବାଣୀ ପ୍ରତିଷ୍ଠାନ ଓ ନିର୍ମାତା ରୂପେ ଶ୍ରୀମତୀ ପାର୍ବତୀ ଘୋଷ୍ ସବୁଠାରୁ ସକ୍ରିୟ ଥିଲେ । ଛାୟାବାଣୀ ପ୍ରତିଷ୍ଠାନ ୧୯୬୪ରେ ''ଅମଡ଼ାବାଟ'' ହିଟ୍ ଚିତ୍ରରୁ ଆରମ୍ଭ କରି ପରବର୍ତ୍ତୀ ଛଅ ବର୍ଷ ମଧ୍ୟରେ ଯେଉଁ ଅନ୍ୟ ଚିତ୍ର ଗୁଡ଼ିକ ନିର୍ମାଣ କରିଥିଲେ ସେଗୁଡ଼ିକ ହେଲା, ''ଅଭିନେତ୍ରୀ'', ''ମାଟିର ମଣିଷ'' ଏବଂ ''ଅଦିନ ମେଘ'' । ଶ୍ରୀମତୀ ପାର୍ବତୀ ଘୋଷ୍ ମଧ୍ୟ ''କା'', ''ସ୍ତ୍ରୀ'', ''ସଂସାର'' ପ୍ରଭୃତି ଚଳଚ୍ଚିତ୍ର ନିର୍ମାଣ କରି ସିନେମା କ୍ଷେତ୍ରରେ କ୍ରମାଗତ ଉଦ୍ୟମର ପ୍ରମାଣ ଦେଇଥିଲେ ।

ଓଡ଼ିଆ ସିନେମା ଅଗ୍ରଗତିର ଏହି ପର୍ଯ୍ୟାୟରେ ନିର୍ମିତ ୨୬ଗୋଟି ସିନେମା ମଧ୍ୟରୁ ପ୍ରାୟ ଦୁଇ ତୃତୀୟାଂଶ ଓଡ଼ିଆ ଉପନ୍ୟାସ କିମ୍ବା ନାଟକ ମାନଙ୍କ ଉପରେ ଆଧାରିତ ହୋଇଥିଲା । ପ୍ରକୃତରେ ଏ ଅଧ୍ୟାୟର ଆରମ୍ଭ ହୋଇଥିଲା ଛାୟାବାଣୀ ପ୍ରତିଷ୍ଠାନର ଜନପ୍ରିୟ ଅବଦାନ 'ଅମଡ଼ାବାଟ'' ସିନେମାରୁ ।

''ଅମଡ଼ାବାଟ'' ସହ ଓଡ଼ିଆ ଚଳଚ୍ଚିତ୍ର ଜଗତକୁ ଆସିଲେ ଛାୟାବାଣୀ ପ୍ରତିଷ୍ଠାନର ମାଲିକ ଶ୍ରୀ ବାବୁଲାଲ ଦୋଶୀ, ସ୍ୱାଧୀନୋତ୍ତର ଓଡ଼ିଶାର ସାଂସ୍କୃତିକ ଜୀବନର ଅନ୍ୟତମ ବ୍ୟକ୍ତିତ୍ୱ । ବାବୁଲାଲ ୧୯୧୯ ସାଲରେ ଗୁଜରାଟରେ ଜନ୍ମଗ୍ରହଣ କରିଥିଲେ; କିନ୍ତୁ ଓଡ଼ିଶାକୁ ଆସି ଓଡ଼ିଶାର ସାଂସ୍କୃତିକ ଜୀବନ ଓ ଜନଜୀବନକୁ ସେ ଯେପରି ଆଦରି ନେଲେ, ଓଡ଼ିଶାର ସାଂସ୍କୃତିକ ଅଗ୍ରଗତି ପାଇଁ ଯେପରି ପ୍ରାଣପଣେ ସାମିଲ୍ ହୋଇଗଲେ, ତାହା ତାଙ୍କୁ ଓଡ଼ିଶାର ଏକ ଅବିସ୍ମରଣୀୟ ବ୍ୟକ୍ତିତ୍ୱ କରିଛି । ''ଅମଡ଼ାବାଟ'' ମୁକ୍ତି ପାଇବାର ଠିକ୍ ୨୦ବର୍ଷ ପରେ, ଓଡ଼ିଆ ଚଳଚ୍ଚିତ୍ର ସୁବର୍ଣ୍ଣ ଜୟନ୍ତୀ ବର୍ଷରେ, ସେ ତାଙ୍କର ଅନୁଭୂତି ଲିପିବଦ୍ଧ କରିଥିଲେ ଗୋଟିଏ ପୁସ୍ତିକାରେ (ପୁସ୍ତିକାର ଶିରୋନାମା –''ଅମଡ଼ାବାଟ''ରୁ ''ଅକ୍ଷିତୃତୀୟା'') । ସେହି ସମୟର ସିନେମା ଶିଳ୍ପ ଅବହାୱା ସେ ସେଥିରେ କେତେକାଂଶରେ ପ୍ରତିଫଳିତ କରିଛନ୍ତି । ସେ ଲେଖିଛନ୍ତି

''ସେତେବେଳେ ଚଳଚ୍ଚିତ୍ରରେ ଅଂଶ ଗ୍ରହଣ କରିବାପାଇଁ ଭଦ୍ର ଘରର ଝିଅମାନେ ବାହାରୁ ନ ଥିଲେ ଏବଂ ଇଚ୍ଛାକଲେ ମଧ୍ୟ ନାନା କାରଣରୁ ତାଙ୍କର ମୁରବୀମାନେ ଏ କ୍ଷେତ୍ରରେ ଛାଡ଼ିବାପାଇଁ ଡରୁଥିଲେ । ସୁତରାଂ 'ଅମଡ଼ବାଟ' ସୁଟିଂ ବେଳେ କୌଣସି ସୁନ୍ଦରୀ ଝିଅ ନ ପାଇଲେ ସୁଦ୍ଧା ଯାହାକୁ ପାଇଲୁ ସେହି ଝିଅଟି ଯୋଗୁଁ ହିଁ 'ଅମଡ଼ାବାଟ' ଖ୍ୟାତିଲାଭ କଲା । ସେ ଝିଅଟି ହେଉଛି ଶ୍ରୀମତୀ ଝରଣା ଦାସ୍ ଏବଂ ପରେ ପରେ ସେ ମୋର ତିନୋଟି ଛବିରେ ଅଂଶ ନେଇଛି ।

''କାଁ ଭାଁ ପ୍ରସ୍ତୁତ ହେଉଥିବା ଓଡ଼ିଆ ଛବିରେ ଆଉ କେତେ ଯୁବକ ସୁବିଧା ପାଆନ୍ତେ ? ସୁତରାଂ ବହୁ ଯୁବକ ଓଡ଼ିଆ ଛବିରେ ଅଂଶ ଗ୍ରହଣ କରିବା ପାଇଁ ଇଚ୍ଛୁକ ହୋଇ ଚିଠି ଲେଖିଲେ ଏବଂ ତନ୍ମଧ୍ୟରୁ କେତେ ଜଣ ଏଥିପାଇଁ ଓଲଟି ଆମକୁ ଟଙ୍କା ଦେବା ପାଇଁ ଚାହିଁଲେ । କେହି କେହି ନାମ ରେଜିଷ୍ଟ୍ରି କରିବା ପାଇଁ ମଧ୍ୟ ଟଙ୍କା ଯାଚିଲେ । କେହି ବା ସକାଳ ସଂଧ୍ୟା ଦୁଇବେଳା ପଇଁତରା ମାରିଲେ । କିଏ ବା ମୋ ବନ୍ଧୁମାନଙ୍କୁ ମୋତେ ପ୍ରଭାବିତ କରିବା ପାଇଁ କହିଲେ ଓ ଅନ୍ୟ କେତେକ ସିଧାସଳଖ ନିର୍ଦ୍ଦେଶକଙ୍କ ପାଖରେ କଲିକତା ପହଞ୍ଚିଗଲେ । ଯାହା ହେଉ ସେ ସମୟରେ ଜଣେ ଦି'ଜଣ କଳାକାର ଛଡ଼ା କାହାକୁ ଟଙ୍କା ଦେବାକୁ ମୋତେ ପଡ଼ି ନଥିଲା । ଓଲଟି ମୋ ଘରକୁ କିଛି ଆସିଥିବା ।



''ଅମଡ଼ା ବାଟ''ର ଏକ ଦୃଶ୍ୟ

''ସେତେବେଳେ 'ଅମଡ଼ାବାଟ' ଛବିପାଇଁ ମୋତେ ଲକ୍ଷେ ଦଶହଜାର ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲା ଏବଂ କେବଳ କଟକ ସହରରେ ହିଁ ବକ୍ସ ଅଫିସରୁ ସେତକ ଟଙ୍କା ଜମା ହୋଇଥିଲା ।'' (ପୃଷ୍ଠା :୧୭)

କିନ୍ତୁ ମାତ୍ର ବର୍ଷକ ପରେ ଓଡ଼ିଶାର ସିନେମା ବ୍ୟବସାୟରେ କିପରି ଏକ ମସ୍ତ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା ତାହା ମଧ୍ୟ ବାବୁଲାଲ୍ ଲିପିବଦ୍ଧ କରିଛନ୍ତି । ୧୯୬୪ ମେ' ମାସ ଶେଷ ଆଡ଼କୁ ''ଅମଡ଼ାବାଟ'' ମୁକ୍ତି ପାଇଥିଲା; ୧୯୬୫ ମଧ୍ୟ ଭାଗରେ

ଛାୟାବାଣୀ ପ୍ରତିଷ୍ଠାନର ଦ୍ୱିତୀୟ ଅର୍ଘ୍ୟ ''ଅଭିନେତ୍ରୀ'' ମୁକ୍ତି ପାଇଲା । ଏତିକି ବେଳେ ସିନେମା ପ୍ରେକ୍ଷାଳୟ ଉପରେ ସତ୍ତ୍ୱ ହାସଲ ପାଇଁ ହିନ୍ଦୀ ଚଳଚ୍ଚିତ୍ର ବିତରକମାନେ ନିଜ କୌଶଳ ଆରମ୍ଭ କରିଦେଇଥିବା ସେ ନିମ୍ନ ପ୍ରକାରେ ଉଲ୍ଲେଖ କରିଛନ୍ତି

''ସେତେବେଳେ କିନ୍ତୁ ହିନ୍ଦୀ ଛବିର ବିତରକ ମାନଙ୍କର ପ୍ରଭାବ ବଢ଼ିଯାଇଥିଲା । 'ଅମଡ଼ାବାଟ' ପରେ ସେମାନେ ଓଡ଼ିଆ ଛବିକୁ ଭିତରେ ଭିତରେ ପ୍ରତିରୋଧ କରିବାକୁ ଆରମ୍ଭ କରିଦେଇଥିଲେ । ସୁତରାଂ 'ଅଭିନେତ୍ରୀ' ଛବି ଚାଲିବା ବେଳେ କଟକର ପ୍ରେକ୍ଷାଳୟକୁ ଦଶହଜାର ଟଙ୍କା ଅଗ୍ରୀମ ଦେବାକୁ ପଡ଼ିଥିଲା ।....'' (ପୃଷ୍ଠା ୨୩)

ଓଡ଼ିଆ ସିନେମା ବଜାର ପାଇଁ କଟକର ପ୍ରାଧାନ୍ୟ ପ୍ରଯୋଜକ ଓ ବିତରକମାନେ କିପରି ଅନୁଭବ କରୁଥିଲେ ତାହା ବାବୁଲାଲ୍‌ଙ୍କ ନିମ୍ନୋକ୍ତ ବକ୍ତବ୍ୟ ସ୍ପଷ୍ଟ କରେ :

''ଏହା ହେଲା ୧୯୬୫ (ଅର୍ଥାତ୍ 'ଅଭିନେତ୍ରୀ' ମୁକ୍ତି ପାଇବା ସମୟ) ମସିହାର କଥା । ସେତେବେଳେ ହିନ୍ଦୁସ୍ଥାନ ପାକିସ୍ଥାନ ଯୁଦ୍ଧ ଲାଗିଲା । କଟକ ଏବଂ ଅନ୍ୟାନ୍ୟ ବଡ଼ ବଡ଼ ସହରରେ ବ୍ଲାକ୍ ଆଉଟ୍ ଚାଲିଥାଏ । ସେଥିପାଇଁ ଏ ଛବିର ବ୍ୟବସାୟ ବିଶେଷ ଲାଭ ଜନକ ହେଲାନାହିଁ । ଆମ ଦର୍ଶକମାନଙ୍କର ଗୋଟିଏ ସ୍ୱଭାବ ମୁଁ ଲକ୍ଷ୍ୟ କରିଛି ଯେ ବର୍ଷା ହେଉ, ଝଡ଼ ହେଉ, କିମ୍ବା କୌଣସି ଅନିବାର୍ଯ୍ୟ କାରଣ ହେତୁ ଯଦି ଛବି ବେଶୀ ଦିନ ନ ଚାଲେ, ତା' ହେଲେ ଉତ୍‌କୃଷ୍ଟ ଥିଲେ ବି ସେମାନେ ଛବିକୁ ନାପସନ୍ଦ ଘୋଷଣା କରନ୍ତି । ଛବି ଚଳାଇବା ଏବଂ ଉଠିଯିବା ଏହି ମାପକାଠିରେ ଦର୍ଶକ ଦେଖନ୍ତି । କଟକ ସହରରେ କେତେଦିନ ଚାଲିଲା ତାହା ଉପରେ ମଧ୍ୟ ସେମାନଙ୍କର ମତ ନିର୍ଦ୍ଧାରିତ ହୁଏ, ଏହା ମଧ୍ୟ ଦେଖାଯାଇଛି । ସୁତରାଂ ଆଜିଯାଏ ପ୍ରଯୋଜକ କିମ୍ବା ବିତରକମାନେ କୌଣସି ପ୍ରକାରେ କଟକ ଉପରେ ନିର୍ଭର କରନ୍ତି ଏବଂ ଦରକାର ପଡ଼ିଲେ ହାତରୁ ଟଙ୍କା ଦେଇ ମଧ୍ୟ କଟକରେ ଛବି ଚଳାଇବାରେ ଆପ୍ରାଣ ଚେଷ୍ଟା କରନ୍ତି ।'' (ପୃଷ୍ଠା :୨୩)

ନିଃସନ୍ଦେହରେ ''ଅମଡ଼ାବାଟ''ର ଯୁଗାନ୍ତକାରୀ ସଫଳତା ''ଅଭିନେତ୍ରୀ'' ଭାଗ୍ୟରେ ଜୁଟି ନଥିଲା । ''ଅଭିନେତ୍ରୀ'' ଆଧାରିତ ହୋଇଥିଲା ଜନପ୍ରିୟ ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କର ସେହି ଶିରୋନାମାର ଉପନ୍ୟାସ ଉପରେ । ଏଥିରେ ଶ୍ରୀମତୀ ଝରଣା ଦାସ ଦ୍ୱୈତ ଭୂମିକାରେ ଅଭିନୟ କରିଥିଲେ । ଜଣେ କଳାକାରର ଦୁଇଟି ଭୂମିକାରେ ଅଭିନୟ ଦୃଷ୍ଟିରୁ ''ଅଭିନେତ୍ରୀ'' ପ୍ରଥମ ।

''ଅଭିନେତ୍ରୀ'' ମୁକ୍ତିପାଇବା ପରେ ପରେ ବାବୁଲାଲ୍ ତାଙ୍କର ତୃତୀୟ ସିନେମା ସୃଷ୍ଟି ପାଇଁ ଆୟୋଜନ ଆରମ୍ଭ କରିଦେଲେ । ଛାୟାବାଣୀ ପ୍ରତିଷ୍ଠାନର ଏହି ତୃତୀୟ ଅବଦାନଟି ଏକ କଳାତ୍ମକ ସୃଷ୍ଟି ରୂପେ ଗୁରୁତ୍ୱପୂର୍ଣ୍ଣ; ଅଥଚ ବିତର୍କର ଘୂର୍ଣ୍ଣି ଭିତରେ ଶେଷକୁ ସିନେମାଟି ବିକଳାଙ୍ଗ ହେଲା ମଧ୍ୟ । ବାବୁଲାଲ ଉକ୍ତ ପୁସ୍ତିକାରେ ଉଲ୍ଲେଖ କରିଛନ୍ତି ଯେ, ତାଙ୍କର ଦ୍ୱିତୀୟ ସିନେମା ''ଅଭିନେତ୍ରୀ'' ସଂପୂର୍ଣ୍ଣ ହେବା ପୂର୍ବରୁ ହିଁ ମାଟିର

**ମଣିଷ**ର ଲେଖକ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ତାଙ୍କର ଏହି ଅମର ସାହିତ୍ୟ କୃତିଟିର ଚଳଚ୍ଚିତ୍ର ରୂପାୟନ ପାଇଁ ଶ୍ରୀ ସତ୍ୟଜିତ ରାୟଙ୍କୁ ନିର୍ଦ୍ଦେଶନା ଦାୟିତ୍ୱ ଦେବା କଥା କହିଥିଲେ । କିନ୍ତୁ କୌଣସି କାରଣରୁ ଶ୍ରୀ ରାୟ ନିର୍ଦ୍ଦେଶନା ଭାର ଗ୍ରହଣ କରି ନଥିଲେ ଓ ଶ୍ରୀ ମୃଣାଳ ସେନ୍‌ଙ୍କ ନିର୍ଦ୍ଦେଶନାରେ ''ମାଟିର ମଣିଷ'' ନିର୍ମିତ ହେବା ସ୍ଥିର ହେଲା ।




ଛାୟାବାଣୀ ପ୍ରତିଷ୍ଠାନର ପ୍ରଚାର ପୁସ୍ତିକା

ଚଳଚ୍ଚିତ୍ର ଶୈଳୀ କେବଳ ନୁହେଁ, ଶ୍ରୀ ସେନ୍‌ଙ୍କ ସିନେମା ନିର୍ମାଣ ଶୈଳୀ ମଧ୍ୟ ସ୍ୱତନ୍ତ୍ର ଧରଣର । ଷ୍ଟୁଡ଼ିଓ ସୁଟିଂ ଅପେକ୍ଷା ବରଂ ''ଲୋକେସନ୍ ସୁଟିଂ'' ବା ବହିଁଦୃଶ୍ୟ ଚିତ୍ର ଗ୍ରହଣକୁ ସେ ଗୁରୁତ୍ୱ ଦିଅନ୍ତି । ଶ୍ରୀ ବାବୁଲାଲ୍ ଲେଖିଥିଲେ : ''...ଇନଡ଼ୋର ସୁଟିଂରେ ବହୁ ଅସୁବିଧା ହୁଏ; ସୁତରାଂ ସେ ତାଙ୍କର ୟୁନିଟ୍ ନେଇ ବାହାରେ ସବୁ କରିବା ପାଇଁ ପ୍ରସ୍ତୁତ । କଟକ ପାଖରେ ଜଗତ୍‌ପୁର ଗାଁରେ ଶ୍ରୀଯୁକ୍ତ ଗୋକୁଳି କାନୁନ୍‌ଗୋଙ୍କର ନୂତନ ନିର୍ମିତ କୋଠାଘର ଓ ଆଖପାଖ ଜାଗା ସ୍ଥିର କରାଗଲା । 'ମାଟିର ମଣିଷ'ର ଯାବତୀୟ ଘରଦ୍ୱାର ଇତ୍ୟାଦି ଅସ୍ଥାୟୀ ଭାବରେ ସେଠାରେ ତିଆରି ହେଲା ଏବଂ ମାତ୍ର ୨୮ ଦିନ ମଧ୍ୟରେ ଜଗତ୍‌ପୁର ଓ ତାର ଆଖପାଖ ଅଞ୍ଚଳରେ ହିଁ 'ମାଟିର ମଣିଷ' ଛବିର କାର୍ଯ୍ୟ ଶେଷ ହେଲା । ଏତେ କମ୍ ଦିନରେ ଏବଂ ସଂପୂର୍ଣ୍ଣ ବହିଁଦୃଶ୍ୟକୁ ନେଇ କିଏ ଓଡ଼ିଆ ଛବି ଆଗରୁ କରି ନ ଥିଲା ।'' (ପୃଷ୍ଠା ୨୫)

ଶ୍ରୀ ବାବୁଲାଲ୍ ଆହୁରି ବି ଲେଖିଛନ୍ତି ''**ମାଟିର ମଣିଷ**ରେ ବର୍ଣ୍ଣିତ ପଧାନପଡ଼ା ଗାଁ ବାସ୍ତବିକ୍ କଟକ ଜିଲ୍ଲାରେ ଅଛି ଏବଂ ଆମେ ଆମର ବହିଁଦୃଶ୍ୟ ପଧାନପଡ଼ାରେ ହିଁ ଆରମ୍ଭ କରିଥିଲୁ ।'' (ପୃଷ୍ଠା ୨୯)

୧୯୭୬ରେ ମୁକ୍ତି ପାଇଥିବା ''ମାଟିର ମଣିଷ'' ବ୍ୟବସାୟରେ କାହିଁକି ବିଫଳ ହେଲା, ସେ ସଂପର୍କରେ ବାବୁଲାଲାଙ୍କର ଗୋଟାଏ ବିଶ୍ଳେଷଣ ରହିଥିଲା । ତାହା ଉଲ୍ଲେଖ କରି ସେ ଲେଖିଛନ୍ତି ''କାଳନ୍ଦୀବାବୁଙ୍କର ଏହି 'ମାଟିର ମଣିଷ' ବହି ସଂପୂର୍ଣ୍ଣ ଗାନ୍ଧି ଭାବଧାରାରେ ଲେଖା କିନ୍ତୁ ଶ୍ରୀ ମୃଣାଳ ସେନ୍, କମ୍ୟୁନିଷ୍ଟ ଭାବାପନ୍ନ ବୋଲି ମୁଁ ପରେ ଜାଣିଲି । ସେ ଏ ବହିକୁ ସେ ସେଇ ଢାଞ୍ଚାରେ ଢାଳିଲେ । ସୁତରାଂ ଓଡ଼ିଶାର ଲୋକେ ଏ ବହି ଏବଂ ତାଙ୍କର ବିଚାରଧାରାକୁ ପସନ୍ଦ କଲେ ନାହିଁ । ଫଳରେ 'ମାଟିର ମଣିଷ' ଆର୍ଥିକ ଦୃଷ୍ଟିରୁ ବିଫଳ ହେଲା । ...'' (ପୃଷ୍ଠା ୨୫)

''ମାଟିର ମଣିଷ''ର କିଛି ପରିବର୍ତ୍ତନ କରି ସିନେମାଟିକୁ ଏକ ଭିନ୍ନ ରୂପ ଦେବାପାଇଁ ବି ବାବୁଲାଲ୍ ପ୍ରସ୍ତୁତ ହେଲେ । ଏ ସଂପର୍କରେ ସେ ଲେଖିଛନ୍ତି ''...ଯଦି ମୃଣାଳ ବାବୁ ଗାନ୍ଧି ଭାବଧାରା ଅନୁସରଣ କରିଥାଆନ୍ତେ, ତାହାହେଲେ ଲୋକେ ଏତେ ଖପ୍‌ପା ହୁଅନ୍ତେ ନାହିଁ । ମୃଣାଳ ବାବୁଙ୍କୁ ଆଉଥରେ କିଛି ସୁଟିଂ କରି ଏହାକୁ ବଦଳାଇବାକୁ ଅନୁରୋଧ କଲି ଏବଂ ଟଙ୍କା ଖର୍ଚ୍ଚ କରିବା ପାଇଁ ପ୍ରସ୍ତୁତ ହେଲି । କିନ୍ତୁ ସେ ଏକଜିଦିଆ ଲୋକ, ସେ ମୋ କଥା ଶୁଣିଲେ ନାହିଁ । ସୁତରାଂ ତାଙ୍କୁ ବାଦ୍ ଦେଇ ଅନ୍ୟ ସହକର୍ମୀଙ୍କ ସାହାଯ୍ୟରେ ଛବିର କେତେକାଂଶ ପରିବର୍ତ୍ତନ କଲି । ତାପରେ ଓଡ଼ିଶାରେ ଛବି ଚାଲିଲା ।'' (ପୃଷ୍ଠା ୨୯)

ବାବୁଲାଲ୍ ଦ୍ୱିତୀୟ ''ମାଟିର ମଣିଷ''ରେ ଯେଉଁ ପରିବର୍ତ୍ତନ କଥା ଉଲ୍ଲେଖ କରିଛନ୍ତି ସେଥି ମଧ୍ୟରୁ ସବୁଠୁ ବଡ଼ ପରିବର୍ତ୍ତନ ସମ୍ଭବତଃ ସିନେମାଟିର ଉପସଂହାର । ଦୁଇଭାଇ ବରଜୁ ଓ ଛକଡ଼ିର ଭାଗ୍ୟ ନିରୂପଣ ପାଇଁ ଅଗ୍ରଗତି କରୁଥିବା କାହାଣୀ ଶେଷକୁ ଗୋଟାଏ ଦୃଷ୍ଟିରୁ ଦୁଃଖାତ୍ମକ ହୋଇଛି, କାରଣ ବରଜୁ ଘର ଛାଡ଼ି ଚାଲିଯାଇଛି ଏବଂ ଭାଇ-ଭାଉଜ, ଝିଆରୀ, ପୁତୁରାର ଅନୁପସ୍ଥିତିରେ ଛକଡ଼ି ମର୍ମାନ୍ତକ ଶୂନ୍ୟତାବୋଧର ଶିକାର ହୋଇଛି । ସ୍ତ୍ରୀ ବୋଲରେ ଓ ଖଳଲୋକ ବୋଲରେ ପଡ଼ି ଘର ଭାଙ୍ଗିଥିବା ଛକଡ଼ିର ଏହି ମର୍ମ ଯନ୍ତ୍ରଣା **ମାଟିର ମଣିଷ** ଉପନ୍ୟାସର ଶେଷ କେତେ ପୃଷ୍ଠାକୁ ଖୁବ୍ ମର୍ମସ୍ପର୍ଶୀ କରିଛି । ସାହିତ୍ୟକାରଙ୍କ ବର୍ଣ୍ଣନା କରାମତି ଦ୍ୱାରା ଏହା ସମ୍ଭବ ହୋଇଛି । ସିନେମା ଶିଳ୍ପୀ ମୃଣାଳ ସେନ୍ କେତୋଟି ଦୃଶ୍ୟ ମାଧ୍ୟମରେ ଛକଡ଼ିର ମାନସିକ ଅବସ୍ଥାକୁ ମର୍ମସ୍ପର୍ଶୀ କରି ଫୁଟାଇଛନ୍ତି । ବରଜୁକୁ ଫେରାଇ ଆଣିବା ପାଇଁ ପ୍ରାଣାନ୍ତକ ଦୌଡୁଥିବା ଛକଡ଼ି ଆକଶରେ ଦେଖୁଛି ଗୁଡ଼ାଏ ଅଣ-ଲେଉଟା ପକ୍ଷୀ । ଆକୁଳ ଚିତ୍କାର କରି ଧାଉଁଥିବା ଛକଡ଼ି ସେହି ପକ୍ଷୀମାନଙ୍କୁ ଦେଖିବା ଦୃଶ୍ୟଟିକୁ ହଠାତ୍ ''ଫ୍ରିଜ୍'' ବା ଜଡ଼ୀଭୂତ

କରିଦିଆଯାଇଛି । ଏହି ଦୃଶ୍ୟ–କୌଶଳ (ଭିଜୁଏଲ୍ ଟେକ୍‌ନିକ୍) ସଫଳ ଭାବେ ଛକଡ଼ିର ମାନସିକ ଅବସ୍ଥା ଫୁଟାଇଛି ।

କିନ୍ତୁ ପରିବର୍ତ୍ତିତ ''ମାଟିର ମଣିଷ''ରେ ଛକଡ଼ି ସହ ଫେରି ଆସିଛନ୍ତି ବରଜୁର ପରିବାର । ସେ ଦୃଶ୍ୟରେ ମନସ୍ତାତ୍ତ୍ୱିକତା ନାହିଁ; ଏବଂ ସେପରି ପରିବର୍ତ୍ତନ କରିବାର ଏକ ମାତ୍ର କାରଣ–ସମୂହ ରଚିର ଅନୁକୂଳ କରିବା ପାଇଁ ପ୍ରୟାସ । କିନ୍ତୁ ଏଠାରେ ମୃଣାଳଙ୍କ ସୃଷ୍ଟ କିଛି ସୃଜନଶୀଳ ଦୃଶ୍ୟ ବାଦ୍‌ଦେଇ ଗଡ୍ଡାନୁଗତିକତାକୁ ଗ୍ରହଣ କରାଯାଇଛି । ଏତଦ୍ୱାରା ମଧ୍ୟ ବାବୁଲାଲଙ୍କ ସିନେମା ବ୍ୟବସାୟରେ ଯାହା ଲାଭ ହୋଇଥାଉ ନା କାହିଁକି ଭଲ ଚଳଚ୍ଚିତ୍ର ସୃଷ୍ଟିଟିଏର ଅଙ୍ଗହାନି ଘଟିଛି ।

ମାର୍ଚ୍ଚ ୧୯୬୭ରେ ''ମାଟିର ମଣିଷ''ର ମୌଳିକ ରୂପ ଦେଖି ଶ୍ରୀ ସତ୍ୟଜିତ୍ ରାୟ ନିମ୍ନ ମନ୍ତବ୍ୟ ଦେଇଥିଲେ : ''ମୃଣାଳସେନ୍‌ଙ୍କ 'ମାଟିର ମଣିଷ' ନିର୍ମାଣରେ ତାଙ୍କ ହୃଦୟ ଓ ମସ୍ତିଷ୍କ ଉଭୟ ଯେ ନିୟୋଜିତ ହୋଇଛି, ଏହା ନିଶ୍ଚିତ । ପରିଣାମ ସ୍ୱରୂପ ଏପରି ଏକ ସିନେମା ସମ୍ଭବ ହୋଇଛି ଯାହା ହୃଦୟକୁ ସ୍ପର୍ଶ କରୁଛି ଏବଂ ମନକୁ ବି ଉଜ୍ଜୀବିତ କରୁଛି । ଶୈଳୀର ସଂଯୋଜନା ମଧ୍ୟ ସିନେମାଟିକୁ ଏକ ବୈଶିଷ୍ଟ୍ୟ ପ୍ରଦାନ କରିଛି । ଗ୍ରାମ୍ୟ ଜୀବନ ପୃଷ୍ଠପଟରେ ପାରିବାରିକ ସଂପର୍କ ଉପସ୍ଥାପିତ କଲାବେଳେ ମୃଣାଳ ସୂକ୍ଷ୍ମ ଭୂୟୋଦର୍ଶନ ଓ କବିତ୍ୱର ଆଶ୍ରୟ ନେଇଛନ୍ତି; କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ କାଳ ଓ ନିର୍ଦ୍ଦିଷ୍ଟ ସ୍ଥାନରେ କାହାଣୀଟି ଦୃଢ଼ ଭାବେ ଉପସ୍ଥାପିତ କରିବାବେଳେ ସେ ସିଧାସଳଖ ପ୍ରାମାଣିକ ଚଳଚ୍ଚିତ୍ରର ଶୈଳୀ ଗ୍ରହଣ କରିଛନ୍ତି । ଅଭିନୟରେ କ୍ରମାଗତ ଉତ୍କର୍ଷତା ଦୃଷ୍ଟିରୁ 'ମାଟିର ମଣିଷ' ସହ ସମକକ୍ଷ ଅତି କମ୍ ଭାରତୀୟ ସିନେମା ରହିଛି ।...''

ବିଶ୍ୱବିସୃତ ସତ୍ୟଜିତ୍ ରାୟଙ୍କ ପ୍ରଶଂସା ଅବଶ୍ୟ ସତ୍ୟ, ତଥାପି ମୃଣାଳ ସେନ୍‌ଙ୍କ ସୃଷ୍ଟି କାଳିନ୍ଦୀ ଚରଣଙ୍କ ମାଟିର ମଣିଷର ସମକକ୍ଷ ନୁହେଁ । ପଲ୍ଲୀ ଜୀବନର ଯେଉଁ କବିତା-ସୁଲଭ ଚିତ୍ର ଉପନ୍ୟାସକାର ଫୁଟାଇଛନ୍ତି ତାହା ସାହିତ୍ୟକୃତିଟିକୁ ଜୀବନ୍ତ ଓ ହୃଦୟସ୍ପର୍ଶୀ କରିଛି । ମୃଣାଳ ସେନ୍ ବହିଟିର କାହାଣୀରେ ଯେଉଁ ପରିବର୍ତ୍ତନ କରିଛନ୍ତି, ତାହା ବହିର ମୁଗ୍ଧ ପାଠକମାନଙ୍କର ସମର୍ଥନ ଲାଭ କରିପାରିନି । ମାଟିର ମଣିଷ ୧୯୩୨ ପୂର୍ବରୁ ରଚିତ; ଅଥଚ ଶ୍ରୀ ସେନ୍ ଦ୍ୱିତୀୟ ମହାଯୁଦ୍ଧର ପୃଷ୍ଠଭୂମି ତାଙ୍କ ସିନେମାରେ ଆରୋପ କରିଛନ୍ତି । ଏଣୁ ମୃଣାଳଙ୍କ ''ମାଟିର ମଣିଷ'' ଉପଭୋଗ କରିବାକୁ ହେଲେ ସାହିତ୍ୟ କୃତିଟିକୁ ମନରୁ ପ୍ରଥମେ ନିର୍ବାପିତ କରିବାକୁ ହୁଏ ।

ବାବୁଲାଲ୍ ପରବର୍ତ୍ତୀ ୧୪ବର୍ଷ ମଧ୍ୟରେ ଅନ୍ୟ ଚାରୋଟି ଓଡ଼ିଆ ଚିତ୍ର ''ଅଭିନେତ୍ରୀ'' (୧୯୬୫) ''ଅଦିନ ମେଘ'' (୧୯୬୯) ''ମଥୁରା ବିଜୟ'' (୧୯୮୦) ଓ ''ଅକ୍ଷିତୃତୀୟା'' (୧୯୭୯) ନିର୍ମାଣ କରିଥିଲେ; କିନ୍ତୁ ଏହି ସିନେମାତ୍ରୟକୁ ଉଲ୍ଲେଖଯୋଗ୍ୟ କୃତି ରୂପେ ଏଇ ସମୀକ୍ଷକ ଗ୍ରହଣ କରେନି । ତଥାପି ଉକ୍ତ ପୁସ୍ତିକାରେ ବାବୁଲାଲ୍ କରିଥିବା ସ୍ମୃତି ରୋମାନ୍ଥନରୁ କିଛିଟା ଗ୍ରହଣ କରାଯାଇପାରେ । ଯଥା–

''...'ଅମଡ଼ା ବାଟ' ଏବଂ 'ଅଭିନେତ୍ରୀ'ର ''ଅ'' ଅକ୍ଷରରେ ଆରମ୍ଭ ପାଞ୍ଚ ଅକ୍ଷରୀ ନାମ 'ମାଟିର ମଣିଷ'ରେ ନ ଥିବାରୁ ମୁଁ ହାରିଗଲି ବୋଲି ଭାବିଲି । ଏ କଥା ରାଷ୍ଟ୍ର ହେବାରୁ ''ଅ'' ଅକ୍ଷରରେ ଆରମ୍ଭ ପାଞ୍ଚ ଅକ୍ଷରୀ କେତେ ବହି ମୋ ପାଖକୁ ଆସିଲା । ସେଥିରୁ ଶ୍ରୀମତୀ କୁନ୍ତଳା କୁମାରୀ ଆଚାର୍ଯ୍ୟଙ୍କର 'ଅଦିନ ମେଘ' ବହିକୁ ମୁଁ ପସନ୍ଦ କଲି ।'' (ପୃଷ୍ଠା ୩୦)

ସେତେବେଳେ ଓଡ଼ିଆ ନାରୀ କଣ୍ଠଶିଳ୍ପୀ ମାନେ ପ୍ରଚ୍ଛଦପଟ୍ଟ ଗୀତ ଗାଉ ନଥିଲେ, କାରଣ ଗୀତ ରେକଡ଼ିଂ ପ୍ରଦେଶ ବାହାରେ ହେଉଥିଲା । ବାବୁଲାଲ୍ ଲେଖିଛନ୍ତି

''ସେହି ସମୟରେ ପୁଅମାନେ ହୁଏତ କଲିକତା ଯାଇ ଓଡ଼ିଆରେ ପ୍ରଚ୍ଛଦପଟ୍ଟ ସଂଗୀତ ଗାଉଥିଲେ । କିନ୍ତୁ କୌଣସି ଓଡ଼ିଆ ଝିଅ ସେ ପର୍ଯ୍ୟନ୍ତ ଏପରି ସୁଯୋଗ ପାଇ ନଥିଲେ । ଆଜିକାଲି ଶ୍ରେଷ୍ଠ ପ୍ରଚ୍ଛଦପଟ ଗାୟିକାଦ୍ୱୟ କୁମାରୀ ତୃପ୍ତି ଦାସ ଓ କୁମାରୀ ଗୀତା ପଟ୍ଟନାୟକ ପ୍ରଥମ ହୋଇ ଏ ବହିରେ ଗୀତ ଗାଇବା ପାଇଁ କଲିକତା ଷ୍ଟୁଡ଼ିଓରେ ଠିଆ ହେଲେ ଏବଂ ପରବର୍ତ୍ତୀ ସମୟରେ ଖୁବ୍ ନାମ କଲେ ।'' (ପୃଷ୍ଠା : ୩୦)

ବାବୁଲାଲ୍ ୧୯୭୯ରେ ପ୍ରସ୍ତୁତ କରିଥିବା ''ମଥୁରା ବିଜୟ'' ଛାୟାବାଣୀ ପ୍ରତିଷ୍ଠାନର ଏକ ମାତ୍ର ରଙ୍ଗୀନ୍ ଛବି । ସମ୍ଭବତଃ ଓଡ଼ିଆ ଚଳଚ୍ଚିତ୍ରମାନଙ୍କ ମଧ୍ୟରେ ସେହି ଚିତ୍ରଟି ଥିଲା ସବୁଠାରୁ ଅଧିକ ଖର୍ଚ୍ଚ ବହୁଳ ସିନେମା । ପ୍ରଯୋଜକ ଏ ସଂପର୍କରେ ଉଲ୍ଲେଖ କରିଛନ୍ତି

''ସମୁଦାୟ ପାଞ୍ଚରୁ ସାତଲକ୍ଷ ଟଙ୍କା ଅଟକଳରେ ଏ ଛବି ପ୍ରସ୍ତୁତ କରିବାର ପରିକଳ୍ପନା ଥିଲା । ତାହା ଶେଷରେ ବାରଲକ୍ଷ ଟଙ୍କାରେ ଆସି ପହଞ୍ଚିଲା । କିନ୍ତୁ ସୁଟିଂ ସରିଲା ନାହିଁ ।'' (ପୃଷ୍ଠା ୩୯) ''ୟୁନିଟ୍‌ର କେତେକ ଲୋକ କଲିକତାରୁ, ଆଉ କେତେକ ଲୋକ ମାଡ୍ରାଜ୍‌ରୁ ଆସିଥିଲେ ଏବଂ କଳାକାରମାନେ ଓଡ଼ିଆ : ସୁତରାଂ କାହାରି ସହିତ କାହାରି ପଟିଲା ନାହିଁ । ସମସ୍ତଙ୍କର ଖାଇବା ପିଇବା ଗଚି ଅଲଗା । ସେଥିଲାଗି ଏ ସମସ୍ତ ଦଳକୁ କ୍ଷତି ସହି ମୋତେ ବିଦାୟ ଦେବାକୁ ପଡ଼ିଲା ।'' (ପୃଷ୍ଠା ୩୮)

ବାବୁଲାଲ୍‌ଙ୍କ ଶେଷ ଚଳଚ୍ଚିତ୍ରଟି ସବୁଠାରୁ କମ୍ ମାନର । ଶିରୋନାମାଟି ଏହାର ପାଞ୍ଚ ଅକ୍ଷର ବିଶିଷ୍ଟ ଓ ପ୍ରଥମ ଅକ୍ଷରଟି ''ଅ'' ସମ୍ବଳିତ, ''ଅକ୍ଷି ତୃତୀୟା'' । ଓଡ଼ିଶାରେ ଅକ୍ଷୟ ତୃତୀୟା ନାମକ ଗୋଟାଏ ପର୍ବ ରହିଛି; ପ୍ରଯୋଜକ ବାବୁଲାଲ୍ ସଫଳତା ପଛରେ ଦୌଡ଼ି ତାକୁ 'ଅକ୍ଷି ତୃତୀୟା' କରିଦେଲେ । ଏଥିରେ ବାବୁଲାଲ୍‌ଙ୍କୁ ଦୋଷ ଦେବା ହୁଏତ ଅଯୌକ୍ତିକ ହେବ; ସିନେମା ବ୍ୟବସାୟରେ ସଫଳ ହେବା ପାଇଁ ପ୍ରତି ପ୍ରଯୋଜକ ସଫଳତାର ଯେତେ ପାରିବେ ଚାବିକାଠି ବ୍ୟବହାର କରିବାକୁ ପ୍ରସ୍ତୁତ ହୁଅନ୍ତି ।

ତେବେ ବାବୁଲାଲ୍ ଦୋଶୀ ଓଡ଼ିଆ ସିନେମା ପାଇଁ ଯେତିକି କରିଥିଲେ ସେଥିପାଇଁ ସେ ନମସ୍ୟ । ତାଙ୍କର ଚିତ୍ର ''ମାଟିର ମଣିଷ'' ହିଁ ଓଡ଼ିଆ ସିନେମାକୁ ଆନ୍ତର୍ଜାତିକ

ସ୍ତରକୁ ପ୍ରଥମ କରି ନେଇଥିଲା । ଶ୍ରେଷ୍ଠ ଓଡ଼ିଆ ଚଳଚ୍ଚିତ୍ର ରୂପେ ଏ ସିନେମା ଜାତୀୟସ୍ତରରେ ଦିଆଯାଉଥିବା ରାଷ୍ଟ୍ରପତି ପୁରସ୍କାର ତ ପାଇଲା; ମସ୍କୋ ଚଳଚ୍ଚିତ୍ର ଉତ୍ସବରେ ମଧ୍ୟ ''ମାଟିର ମଣିଷ'' ପ୍ରଶଂସିତ ହେଲା ।

ଓଡ଼ିଆ ଚଳଚ୍ଚିତ୍ର ଅଗ୍ରଗତିର ଏହି ଦ୍ୱିତୀୟ ଅଧ୍ୟାୟରେ ଓଡ଼ିଶାରେ ସିନେମା ଶିଳ୍ପର ସହାୟକ ହେବା ଭଳି କେତୋଟି ଘଟଣା ଘଟିଥିଲା । ସେଥିରୁ ଗୋଟାଏ ହେଲା, କଲିକତାରେ ମୁଖ୍ୟ ଦପ୍ତର ଥିବା ''ଇଷ୍ଟର୍ଣ୍ଣ ଇଣ୍ଡିଆ ମୋସନ୍ ପିକ୍‌ଚର୍ସ ଏସୋସିଏସନ୍''ର ଗୋଟିଏ ଶାଖା କାର୍ଯ୍ୟାଳୟ ୧୯୭୦ରେ କଟକଠାରେ ଖୋଲିଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସିନେମା ପ୍ରଯୋଜକ, ବିତରକ ଓ ପ୍ରଦର୍ଶକଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିବା ପାଇଁ ଭାରତରେ କେତୋଟି ସ୍ୱୟଂଶାସିତ ସଂସ୍ଥା ବେସରକାରୀ ଉଦ୍ୟମରେ ୧୯୩୦ରୁ ଆରମ୍ଭ ହୋଇଥିଲା । ଏଥି ମଧ୍ୟରୁ ଗୋଟାଏ ଥିଲା ''ଇଷ୍ଟର୍ଣ୍ଣ ଇଣ୍ଡିଆ ମୋସନ୍ ପିକ୍‌ଚର୍ସ ଏସୋସିଏସନ୍'' ବା ଇଂପା (EIMPA) । ଏହି ସଂସ୍ଥାର ସଭ୍ୟଭୁକ୍ତ ଥିଲେ ପଶ୍ଚିମ ବଙ୍ଗ, ବିହାର, ଓଡ଼ିଶା, ଆସାମ ପ୍ରଭୃତି ପୂର୍ବ ଭାରତ ରାଜ୍ୟ ସକଳର ପ୍ରଯୋଜକ, ବିତରକ ଓ ସିନେମା ହଲ୍ ମାଲିକମାନେ । ଇଂପାର ଅଫିସ୍ କଲିକତାରେ ଥିବାରୁ ଓଡ଼ିଶାରେ ଏହି ତିନି ଶ୍ରେଣୀୟ ସିନେମା ବ୍ୟବସାୟୀ ବିଭିନ୍ନ ପ୍ରକାରର ଅସୁବିଧାର ସମ୍ମୁଖୀନ ହେଉଥିଲେ । ତେଣୁ ୧୯୭୦ରୁ କଟକଠାରେ ଇଂପାର ଗୋଟାଏ ଅଫିସ ଆରମ୍ଭ ହେବାରୁ ସିନେମା ଶିଳ୍ପ ଓ ବ୍ୟବସାୟ ସହ ସଂପୃକ୍ତ ବ୍ୟକ୍ତିମାନଙ୍କର କେତେକ ଦୃଷ୍ଟିରୁ ସୁବିଧା ହେଲା ।

ସପ୍ତମ ଦଶକ ବେଳୁ ସିନେମା ଶିଳ୍ପ ପ୍ରତି ଓଡ଼ିଶାରେ ସରକାରୀ ଦୃଷ୍ଟିଭଙ୍ଗୀ ମଧ୍ୟ ବଦଳିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୬୬ ସାଲରୁ ସିନେମା ନିର୍ମାଣକୁ ଗୋଟାଏ କ୍ଷୁଦ୍ରଶିଳ୍ପ ରୂପେ ସରକାରୀ ସ୍ୱୀକୃତି ଦିଆଗଲା । ଏହାଦ୍ୱାରା କ୍ଷୁଦ୍ରଶିଳ୍ପମାନଙ୍କୁ ଦିଆଯାଉଥିବା ଆନୁସାଙ୍ଗିକ ସୁବିଧା (ଯଥା : ବ୍ୟାଙ୍କ ଋଣ, କଞ୍ଚାମାଲ ଉପରୁ ଶୁଳ୍କ ରିହାତି ଇତ୍ୟାଦି) ସିନେମା ନିର୍ମାତାମାନେ ପାଇବାରେ ସକ୍ଷମ ହେଲେ ।

ଚଳଚ୍ଚିତ୍ର ନିର୍ମାଣକୁ କ୍ଷୁଦ୍ରଶିଳ୍ପ ରୂପେ ଘୋଷଣାର ଚାରିବର୍ଷ ପରେ, ଡ଼ିସେମ୍ବର ୨, ୧୯୭୦ରୁ ସିନେମା ପ୍ରେକ୍ଷାଳୟ ନିର୍ମାଣକୁ ମଧ୍ୟ କ୍ଷୁଦ୍ର ଶିଳ୍ପ ରୂପେ ଗ୍ରହଣ କରାଗଲା । ସମଗ୍ର ଭାରତରେ, ଚଳଚ୍ଚିତ୍ର ନିର୍ମାଣ ଓ ସିନେମା ପ୍ରଦର୍ଶନ ହଲ୍ ନିର୍ମାଣକୁ ଶିଳ୍ପ ରୂପେ ଘୋଷଣା କରିବାରେ ଓଡ଼ିଶା ସରକାର ହିଁ ପ୍ରଥମ ।

ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମ ବା ଫିଲ୍ମ ଡିଭଲପମେଣ୍ଟ କର୍ପୋରେସନ୍ ଗଠନ କରିବାର ଉଦ୍ୟମ ମଧ୍ୟ ଏହି ସମୟରୁ ହିଁ ଆରମ୍ଭ ହୋଇଥିଲା । ଇଂପାର ଓଡ଼ିଶା ସଭ୍ୟମାନେ ଏପରି ଏକ ନିଗମ ଗଢ଼ିବା ପାଇଁ ମିଳିତ ଭାବେ ୨୮ ନଭେମ୍ବର ୧୯୭୦ରେ ଗୋଟାଏ ସ୍ମାରକପତ୍ର ଓଡ଼ିଶା ସରକାରଙ୍କୁ ଦେଇଥିଲେ । ଏହାର ପ୍ରାୟ ବର୍ଷକ ପରେ

ତତ୍‌କାଳୀନ ଶିକ୍ଷମନ୍ତ୍ରୀ ସିନେମା ପ୍ରଯୋଜକ ଓ ''ଇଂପା''ର କର୍ମକର୍ତ୍ତାମାନଙ୍କ ସହ ଟିକିନିଖି ଆଲୋଚନା କରିଥିଲେ । ସେହି ଆଲୋଚନାରେ ସ୍ଥିର ହେଲା ଯେ, କର୍ଣ୍ଣାଟକ ଫିଲ୍ମ ଡିଭଲପ୍‌ମେଣ୍ଟ କର୍ପୋରେସନ୍‌ର ନିୟମାବଳୀ ଅନୁସରଣରେ ନିଗମ ଗଠନ ପାଇଁ ପ୍ରଥମେ ନିୟମାବଳୀ ପ୍ରଣୟନ ହେଉ । ସେଥିପାଇଁ ଏକ କମିଟି ଗଠନ ହେଲା ଏବଂ ନିୟମାବଳୀ ପ୍ରଣୟନ କରି ୧୮ ଜାନୁଆରୀ ୧୯୭୨ରେ ଶିଳ୍ପ ମନ୍ତ୍ରୀଙ୍କ ଆଗରେ ପେଶ୍ କରାଗଲା । କିନ୍ତୁ ପରେ ପରେ ରାଜ୍ୟରେ ରାଜନୈତିକ ଅସ୍ଥିରତା ଯୋଗୁଁ ଓଡ଼ିଶାରେ ରାଜ୍ୟପାଳ ଶାସନ ଜାରି ହେଲା । ରାଜ୍ୟପାଳ ବି.ଡ଼ି.ଜତ୍ତି ପ୍ରଯୋଜକମାନଙ୍କଠାରୁ ସମସ୍ତ ତଥ୍ୟ ଶୁଣିଥିଲେ; ତଥାପି ଚଳଚ୍ଚିତ୍ର ଉନ୍ନୟନ ନିଗମ ସେତେବେଳେ ଗଠିତ ହୋଇ ନ ପାରି ପ୍ରାୟ ଚାରିବର୍ଷ ବିଳମ୍ବିତ ହେଲା । ତେଣୁ ୨୨ ଏପ୍ରିଲ୍ ୧୯୭୬ରୁ ଓଡ଼ିଶା ଫିଲ୍ମ ଡେଭଲପ୍‌ମେଣ୍ଟ କର୍ପୋରେସନ୍ ଗଠିତ ହୋଇ କ୍ଷୁଦ୍ର ଶିଳ୍ପ ନିଗମ ଅଧୀନରେ କ୍ରିୟାଶୀଳ ହେଲା ।

ମଧ୍ୟ ପର୍ବର ୧୩ବର୍ଷ ମଧ୍ୟରେ ନିର୍ମିତ ହୋଇଥିବା ୨୬ଗୋଟି ସିନେମା ମଧ୍ୟରୁ କେତୋଟି ବିଭିନ୍ନ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ । ପ୍ରଥମ ଦୁଇ ରଂଗୀନ୍ ଓଡ଼ିଆ ଚଳଚ୍ଚିତ୍ର– ''ଗପ ହେଲେ ବି ସତ'' ଏବଂ ''ଶେଷ ଶ୍ରାବଣ'' (ଉଭୟ ୧୯୭୬ରେ ନିର୍ମିତ)–ଏଇ ଅଧ୍ୟାୟରେ ଆତ୍ମପ୍ରକାଶ କରିଥିଲା; କିନ୍ତୁ ୧୯୭୫ରେ ମୁକ୍ତି ପାଇଥିବା କଳାଧଳା ସିନେମା ''ମମତା'' ଦର୍ଶକଙ୍କ ମଧ୍ୟରେ ଯେଉଁ ଆଗ୍ରହ ସୃଷ୍ଟି କରିଥିଲା ଆଉ ବ୍ୟବସାୟିକ ସଫଳତା ଆଣି ଦେଇଥିଲା ତା'ଦ୍ୱାରା ଓଡ଼ିଆ ଚଳଚ୍ଚିତ୍ର ଜଗତରେ କିଛିଟା ଆଲୋଡ଼ନ ସୃଷ୍ଟି ହୋଇଥିଲା । ଏହି ସମୟ ମଧ୍ୟରେ ନିର୍ମିତ ଅନ୍ୟ ଉଲ୍ଲେଖନୀୟ ସିନେମା ଗୁଡ଼ିକ ହେଲା; ''ଅମଡ଼ା ବାଟ'' (୧୯୬୪), ''ମଲାଜହ୍ନ''(୧୯୬୫), ''ଅରୁନ୍ଧତୀ'' (୧୯୬୭), ''ଧରିତ୍ରୀ'' (୧୯୭୩), ''କନକଲତା'' (୧୯୭୪), ''ବତୀ ଘର'' (୧୯୭୪), ''ଗପ ହେଲେ ବି ସତ'' ଏବଂ ''ଶେଷ ଶ୍ରାବଣ'' (୧୯୭୬) ।



# ଆଲୋଡ଼ନ ଏବଂ ଅଗ୍ରଗତି

୧୯୭୬ ଓଡ଼ିଆ ଚଳଚ୍ଚିତ୍ର ଇତିହାସରେ ଏକ ଯୁଗାନ୍ତକାରୀ ବର୍ଷ । ୪୨ ବର୍ଷ ଧରି ଧିମେଇ ଧିମେଇ ଆସୁଥିବା ଓଡ଼ିଆ ସିନେମା ଶିଳ୍ପ ଭିତରେ ସତେ ଯେମିତିକି ଅନେକ ଗତି ସଂଚାର ହୋଇଗଲା । ଚଳଚ୍ଚିତ୍ର ଶିଳ୍ପ ସହ ସଂପୃକ୍ତ ଲୋକେ ଝାଡ଼ିଝୁଡ଼ି ହୋଇ ବସିଲେ । ଚିତ୍ର ନିର୍ମାଣ ଓ ପ୍ରଦର୍ଶନରେ ସକ୍ରିୟତା ଓ ସଚଳତା, ଓଡ଼ିଆ ସିନେମା ପ୍ରତି ସେମାନଙ୍କୁ ଏକ ନୂତନ ଦୃଷ୍ଟିରେ ପର୍ଯ୍ୟବେକ୍ଷଣ ପାଇଁ ଆହ୍ୱାନ କଲା । ଉକ୍ତ ବର୍ଷ ୫ଟି ଓଡ଼ିଆ କଥାଚିତ୍ର ତ ମୁକ୍ତି ପାଇଲା  କିନ୍ତୁ ସେଥିରୁ ଅଧିକାଂଶ ସିନେମାର ବ୍ୟବସାୟିକ ସଫଳତା ସଂପୃକ୍ତ ଲୋକଙ୍କ ମନରେ ସହଜରେ ଆଶାର ଆଲୋକ ଖେଳାଇ ଦେଲା ।

ତେବେ କେଉଁ କେଉଁ କାରଣରୁ ସମ୍ଭବ ହେଲା ଏ ସଫଳତା ? ଏଇ ଗତି ?

ଓଡ଼ିଆ ସିନେମା ସହ ବହୁବର୍ଷ ହେଲା ସଂପୃକ୍ତ, ନିର୍ମାତା, ଅଭିନେତା, ପରିବେଷକ ଶ୍ରୀ ଧୀରେନ୍ଦ୍ର ନାଥ ବିଶ୍ୱାଳ ଏଇ ଲେଖକଙ୍କୁ ଏକ ସାକ୍ଷାତକାରରେ କେତୋଟି କାରଣ ଦର୍ଶାଇଥିଲେ ଯାହା ଭୁବନେଶ୍ୱରରୁ ପ୍ରକାଶ ପାଉଥିବା ''ଓଡ଼ିଶା ରିଭ୍ୟୁ'' (ମାର୍ଚ୍ଚ ୧୯୭୭)ରେ ପ୍ରକାଶ ପାଇଥିଲା । ତାଙ୍କର ମତାମତ ଏଠାରେ ଉଲ୍ଲେଖନୀୟ

''ନିଜ ଭାଷାର ନିଜ ଭୂଇଁର ସିନେମା ପ୍ରତି ଜନ ଅନୁରକ୍ତି ଏବେ ବଳିଷ୍ଠତର ହୋଇ ଉଠୁଛି । ଏମିତି ଅନୁରକ୍ତିରେ କିଛି ଦେଶାତ୍ମବୋଧ ହୁଏତ ରହିଛି । ଯଦି ପ୍ରତି ପ୍ରଦେଶରେ ଯଥେଷ୍ଟ ସଂଖ୍ୟକ ସିନେମା ନିର୍ମାଣ ହୋଇପାରେ, ଆମ ପ୍ରଦେଶରେ ନ ହେବ କାହିଁକି ?

''ତାପରେ ହିନ୍ଦୀ ସିନେମାରେ ପ୍ରଦର୍ଶିତ ହିଂସାତ୍ମକ ଓ ଅଶାଳୀନ ଉପାଦାନ, ଅଶୋଭନୀୟତା ପ୍ରଭୃତି ପ୍ରତି ଦର୍ଶକମାନେ ବହୁଳାଂଶରେ ବିମୁଖ ହୋଇ ଉଠିଲେଣି । ସେମାନଙ୍କ ପରିଚିତ ଜୀବନର ରୂପାୟନ ହିନ୍ଦୀ ସିନେମାରେ ନ ଥାଏ । ସେ ସିନେମା ପ୍ରଦର୍ଶିତ କରୁଥିବା ଚରିତ୍ର ବା ଘଟଣାବଳୀ ସହିତ ସେମାନେ ନିଜକୁ ସାମିଲ **(identify)** କରିପାରନ୍ତିନି; ହିନ୍ଦୀ ସିନେମାରେ ବ୍ୟବହୃତ ସେଟିଂ ତ ସଂପୂର୍ଣ୍ଣ ଏକ ଭିନ୍ନ ଜଗତ ଭଳି ଦେଖାଯାଏ । ଅନ୍ୟ ପକ୍ଷେ ଓଡ଼ିଆ ସିନେମାଟିଏ ଦେଖିଲେ, ଦର୍ଶକମାନେ ସେ ଚିତ୍ରରେ ନିଜ ଜୀବନ ସହ ସହଜରେ ସାମଞ୍ଜସ୍ୟ ଦେଖିପାରନ୍ତି ।

''ଓଡ଼ିଆ ସିନେମା ପ୍ରତି ସଂପ୍ରତି ଜନ ଆକର୍ଷଣ ଏତେ ଅଧିକ ଯେ ସିନେମା ହଲ ମାଲିକମାନେ ମଧ୍ୟ ଓଡ଼ିଆ ସିନେମା ପ୍ରଦର୍ଶନକୁ ଅଗ୍ରାଧିକାର ଦେଉଛନ୍ତି । ଏଣୁ ଓଡ଼ିଶାରେ ଥିବା ୧୦୩ଟି ହଲ୍ ମଧ୍ୟରୁ ବର୍ତ୍ତମାନ ଅର୍ଦ୍ଧେକ ହଲ୍‌ରେ ଓଡ଼ିଆ ସିନେମା ଚାଲିଛି ।

''ଅବଶ୍ୟ, ଅର୍ଥନୈତିକ କାରଣ ମଧ୍ୟ ଯେ ଏହା ସହ ରହିଛି, ଏଥିରେ ସନ୍ଦେହ ନାହିଁ । ୧୯୭୪ ଓ ୧୯୭୫ରେ ମୁକ୍ତିଲାଭ କରିଥିବା ଓଡ଼ିଆ ଚଳଚ୍ଚିତ୍ର ଗୁଡ଼ିକରୁ ମନୋରଞ୍ଜନ ବାବଦରେ ଲବ୍‌ଧ ଅର୍ଥ ଉକ୍ତ ଚିତ୍ର ନିର୍ମାତାମାନଙ୍କୁ ଫେରାଇ ଦେବାର ସିଦ୍ଧାନ୍ତ, ନିଶ୍ଚିତ ଭାବେ ଉତ୍ସାହପ୍ରଦ ହୋଇଛି । ତାପରେ, ଆଗାମୀ ୫ ବର୍ଷ ମଧ୍ୟରେ ଯେଉଁ କଥାଚିତ୍ର ଗୁଡ଼ିକ ନିର୍ମିତ ହେବାକୁ ଯାଉଛି, ସେ ଗୁଡ଼ିକ ଶୁଲ୍‌କ-ମୁକ୍ତ ହେବ ବୋଲି ମଧ୍ୟ ଘୋଷିତ ହୋଇଛି ।

''ଏଣୁ ଓଡ଼ିଆ ସିନେମା ଶିଳ୍ପ ଏମିତି ସକ୍ରିୟ ହେବାର ବହୁତ କାରଣ ରହିଛି ।''

ଶ୍ରୀ ବିଶ୍ୱାଳଙ୍କ ଏଇ ବକ୍ତବ୍ୟରେ ଯେ ଅନେକ ସତ୍ୟତା ରହିଛି, ସନ୍ଦେହ ନାହିଁ । ନିଜ ମାଟିର ଜୀବନ, ନିଜ ସଂସ୍କୃତିର ଅବହାୱାରେ ଗଢ଼ି ଉଠୁଥିବା ସିନେମା ପ୍ରତି ଜନ ସାଧାରଣଙ୍କ ଆଗ୍ରହ ହିଁ ଗତିଶୀଳତାର ପ୍ରଧାନ କାରଣ ବୋଲି କହିବା ହୁଏତ ଅତିରଂଜନ ମୂଳକ । ଓଡ଼ିଆ ଭାଷା କହୁଥିବା ଓ ଓଡ଼ିଶାର ପରିବେଷ୍ଟନୀରେ ଗଢ଼ି ଉଠୁଥିବା ସିନେମା– ତାହା ବମ୍ବେ ଫର୍ମୁଲା ଦ୍ୱାରା ସଂକ୍ରମିତ ହେଲେ ବି–ବ୍ୟବସାୟିକ ସଫଳତା ହାସଲ କରିବା ସମ୍ଭାବନା ଅଧିକ । ହିନ୍ଦୀ ବା ଇଂରାଜୀ ଭାଷାର ସିନେମା ପ୍ରଧାନତଃ ସହରବାସୀଙ୍କୁ ଆକୃଷ୍ଟ କରେ; କିନ୍ତୁ ଓଡ଼ିଆ ଭାଷାରେ ନିର୍ମିତ ଚଳଚ୍ଚିତ୍ର ପୁର ଓ ପଲ୍ଲୀବାସୀ ଉଭୟଙ୍କୁ ଆକର୍ଷିତ କରେ । ଏଇ କାରଣରୁ ସମ୍ଭବତଃ ''ମମତା'' (୧୯୭୫ରେ ନିର୍ମିତ), ''ଗପ ହେଲ ବି ସତ'' ଓ ''ସିନ୍ଦୁର ବିନ୍ଦୁ'' (ଉଭୟ ୧୯୭୬ରେ ନିର୍ମିତ) ବହୁ ଜନ ଆଦୃତ ହେଲା ଯଦିଓ ଏଇ ଚିତ୍ର ଗୁଡ଼ିକ ବିଶ୍ଳେଷଣ କଲେ ମନେହୁଏ ଯେ ଓଡ଼ିଆ ସାଂସ୍କୃତିକତାରୁ ବିଶେଷ କିଛି ଏ ଗୁଡ଼ିକରେ ନାହିଁ ।

''ସିନ୍ଦୁର ବିନ୍ଦୁ'' ମୁକ୍ତି ପାଇ ଅସାମାନ୍ୟ ବ୍ୟବସାୟିକ ସଫଳତା ସହ ବିଭିନ୍ନ ସହରରେ ଚାଲିଥିଲା । ଏଇ ଚଳଚ୍ଚିତ୍ରଟିର କାହାଣୀ ହେଲା ପ୍ରେମ, ବିରହ, ପୁର୍ନମିଳନ । ହିନ୍ଦୀ ଚଳଚ୍ଚିତ୍ର ଢାଞ୍ଚାରେ ଗୋଟିଏ ଖଳ ଚରିତ୍ର ଏକ ବଳତ୍କାର ଘଟଣାରେ ଅଂଶ ଗ୍ରହଣ କରୁଛି । ନାୟିକାକୁ ଏ ସବୁ ବିବିଧ ଦୁର୍ଯୋଗରୁ ରକ୍ଷା କରିବାକୁ ନାୟକର ବଂଧୁ ଓ ଉକ୍ତ ଖଳ ଚରିତ୍ର ମଧ୍ୟରେ ବେଶ୍ କେତେ ମିନିଟ୍ ପାଇଁ ମାଡ଼ପିଟ ଘଟୁଛି (ସ୍ପଷ୍ଟ ଭାବରେ ବମ୍ବେ ଫାଇଟ କଂପୋଜର୍‌ଙ୍କ ଦ୍ୱାରା ପରିକଳ୍ପିତ) । ସମଗ୍ର ସିନେମାଟି ଆବେଗ ଆତିଶଯ୍ୟ (''ମେଲୋଡ୍ରାମାଟିକ୍) ଦୃଶ୍ୟାବଳୀ ଦ୍ୱାରା ସଂକ୍ରମିତ, ଯାହା ଦର୍ଶକଙ୍କ ଆଖିରୁ ବହୁତ ଲୁହ ଟାଣି ନେବା ପାଇଁ ଅଭିପ୍ରେତ । ତେବେ ନିର୍ଦ୍ଦେଶକ ଶ୍ରୀ ଶିଶିର କୁମାର ମିଶ୍ରଙ୍କ ନିର୍ଦ୍ଦେଶନା କୌଶଳ–ବିଶେଷତଃ ବିଭିନ୍ନ ଦୃଶ୍ୟ ଓ ପରିସ୍ଥିତିକୁ ନେତ୍ର ଲୋଭା କରିବାରେ ତାଙ୍କର ଦକ୍ଷତା–ଚିତ୍ରଟି-ପ୍ରତି ଅନେକ ପରିମାଣରେ ଆଗ୍ରହ ସୃଷ୍ଟି କରିବାରେ ସମର୍ଥ ହୋଇଛି ।

''ସିନ୍ଦୁର ବିନ୍ଦୁ''ଠୁ ବି ଅଧିକ ଲୁହଟାଣି ନେବା ପାଇଁ ''ମମତା'' ସମର୍ଥ । ହିନ୍ଦୀ ସିନେମା ମଡ଼େଲର ଖଳଚରିତ୍ର ଏଇ କଥାଚିତ୍ରଟିରେ ବି ବିଦ୍ୟମାନ । କିନ୍ତୁ ନାୟକ-ନାୟିକା ସଂପର୍କରେ ଏ ଖଳ ଚରିତ୍ର ଯେତେବେଳେ କିଛି ଆଞ୍ଚ ଆଣି ପାରୁନି, ସେତକ ଦାୟିତ୍ୱ ନିୟତି ନେଇ ଯାଉଛି । ନାୟକ ଏକ ଦୁର୍ଘଟଣାରେ ମରି ଯାଆନ୍ତେ, ନାୟିକା ବିଧବା ହୋଇଯାଉଛି ଓ ନାୟକର ଭାଇ ପ୍ରଚଣ୍ଡ ଶୋକର ଆଘାତରେ ସତେ ଯେମିତିକି ଭାଂଗି ପଡୁଛି । ବିଧବା ନାୟିକା ଯେତେବେଳେ ତା' ବାପା ଘରକୁ ଚାଲି ଯାଉଛି, ସେ ଏ ଦୁଃଖ ଏମିତି ତୀବ୍ର ଭାବରେ ଅନୁଭବ କରୁଛି ଯେ ଗୋଟାକ ପରେ ଗୋଟାଏ ଦେଶୀ ମଦ ବୋତଲ ଖାଲିକରି ଦେଉଛି । ଘଟଣା ଗୁଡ଼ିକର ଗତିଶୀଳତା ଲକ୍ଷ କଲେ ମନେହେବ, ଏହା ବମ୍ବେ ସିନେମା କାରଖାନାରୁ ଆସୁଥିବା କ୍ଷୀପ୍ର-ଗତି ସଂପନ୍ନ ସିନେମାକୁ ଆଦର୍ଶ ଭାବରେ ଗ୍ରହଣ କରି ନିର୍ମିତ ।

''ମମତା'' କିନ୍ତୁ ଓଡ଼ିଆ ସିନେମା ବ୍ୟବସାୟରେ ଖୁବ୍ ଉତ୍ସାହ ସୃଷ୍ଟି କଲା, କାରଣ କଟକରେ ଏହା ୧୦୦ରୁ ଅଧିକ ଦିନ ଧରି ଚାଲିପାରିଥିଲା ଓ ଲୋଭନୀୟ ଟିକଟ–ଲବ୍ଧ ଧନ ପାଇଥିଲା । ପ୍ରଦର୍ଶନ ଦୈର୍ଘ୍ୟତା ଦୃଷ୍ଟିରୁ କିନ୍ତୁ ''ଗପ ହେଲେ ବି ସତ'', ''ମମତା''କୁ ଟପିଗଲା, କାରଣ ଏହା କଟକରେ ଏକାଦିକ୍ରମେ ୧୪୭ ଦିନ ପାଇଁ ପ୍ରଦର୍ଶିତ ହୋଇଥିଲା । ''ଗପ ହେଲେ ବି ସତ''ର ଏମିତି ସଫଳତାର କାରଣ, ଏହା ଥିଲା ପ୍ରଥମ ରଂଗୀନ ଓଡ଼ିଆ କଥାଚିତ୍ର ।

ସିନେମା ପରି ଏକ ଗଣ ମାଧ୍ୟମର ସଫଳତା କୌଣସି ଗୋଟିଏ କାରଣରୁ ନୁହେଁ, ଏକାଧିକ କାରଣରୁ ହିଁ ସମ୍ଭବ ହୁଏ । ତତ୍‌କାଳୀନ ଓଡ଼ିଶା ବିଶେଷତଃ କଟକର ସାଂସ୍କୃତିକ ଜୀବନର କେତୋଟି ଉଲ୍ଲେଖନୀୟ ଘଟଣା, ସିନେମା ଶିଳ୍ପ ଓ ବ୍ୟବସାୟକୁ

ସମ୍ଭବତଃ ସାହାଯ୍ୟ କରିଥିଲା । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ (‘ବି’ ଗ୍ରୁପ) ଓ ଜନତା ଥିଏଟର ନାମରେ ଦୁଇଟି ସ୍ଥାୟୀ ପ୍ରେକ୍ଷାଳୟ କଟକରେ ପ୍ରାୟ ପ୍ରତି ସନ୍ଧ୍ୟାରେ ନାଟକ ପରିବେଷଣ କରୁଥିଲେ । କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକଙ୍କ ସ୍ଥାପିତ ଓଡ଼ିଶା ଥିଏଟର ମଧ୍ୟ ବହୁବର୍ଷ ଧରି ନାଟକ ପରିବେଷଣ କରୁଥିଲା । ପ୍ରଥମୋକ୍ତ ଦୁଇ ନାଟ୍ୟ ସଂସ୍ଥା (ଅନ୍ନପୂର୍ଣ୍ଣା ସ୍ଥାପିତ ହୋଇଥିଲା ୧୯୩୩ ସାଲରେ ଏବଂ ଜନତା ସ୍ଥାପିତ ହୋଇଥିଲା ୧୯୫୩ ସାଲରେ) ଓଡ଼ିଶାର ସହରୀ ଦର୍ଶକ ମାନଙ୍କୁ ସପ୍ତାହରେ ସାତ ଦିନ ନାଟକ ପରିବେଷଣ କରୁଥିଲେ । ଏ ଦୁଇ ସଂସ୍ଥା ପାଇଁ କେତେକ ଜନପ୍ରିୟ ନାଟ୍ୟକାର ନିୟମିତ ନାଟକ ଲେଖୁଥିଲେ ମଧ୍ୟ । ସେମାନଙ୍କ ମଧ୍ୟରେ କାଳୀ ଚରଣ ପଟ୍ଟନାୟକ, ଅଶ୍ୱିନୀ କୁମାର ଘୋଷ, ଗୋପାଳ ଛୋଟରାୟ, କମଳ ଲୋଚନ ମହାନ୍ତି, ଭଞ୍ଜ କିଶୋର ପଟ୍ଟନାୟକ, ରାମଚନ୍ଦ୍ର ପଟ୍ଟନାୟକ ଓ କାର୍ତ୍ତିକ କୁମାର ଘୋଷ ଅର୍ନ୍ତଭୂକ୍ତ । ରଂଗମଞ୍ଚ ଦ୍ୱୟ ଅନେକ ‘‘ହିଟ୍’’ ନାଟକ ପରିବେଷଣ କରିବାରେ ସମର୍ଥ ହୋଇଥିଲେ ମଧ୍ୟ । ଏହି ସଫଳ ନାଟକ ଗୁଡ଼ିକରୁ କେତୋଟି ହେଲା ‘‘ମୂଲିଆ’’, ‘‘ବେନାମୀ’’, ‘‘କିରାଣୀ’’, ‘‘ସେବିକା’’, ‘‘ଯୌତୁକ’’, ‘‘ପର କଲମ’’, ‘‘ଭାତ’’, ‘‘ଜୟଦେବ’’, ‘‘ଫଟାଭୂଇଁ’’, ‘‘ଗାର୍ଲସ୍କୁଲ’’ ଇତ୍ୟାଦି । କିନ୍ତୁ ୧୯୭୬ ବେଳକୁ ଏହି ଉଭୟ ନାଟ୍ୟ ସଂସ୍ଥା ବିଭିନ୍ନ କାରଣରୁ ବନ୍ଦ ହୋଇଗଲା । ଏହାଦ୍ୱାରା ମନୋରଂଜନ ଲିପ୍ସୁ ଦର୍ଶକମାନେ ସକ୍ରିୟ ହୋଇ ଉଠୁଥିବା ଓଡ଼ିଆ ସିନେମା ଶିଳ୍ପକୁ ହୁଏତ ଉତ୍ସାହିତ କରିବାକୁ ଚାହିଁଲେ । ତେଣୁ ସେହି ସମୟର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକର ଦୁଇ ସ୍ଥାୟୀ ରଂଗମଞ୍ଚର ମୃତ୍ୟୁ ସିନେମା ଶିଳ୍ପ ପ୍ରତି କେତେକାଂଶରେ ସହାୟକ ହୋଇଥାଇପାରେ ।

ନିଜର ଭାଷା ଓ ନିଜର ପରିଚିତ ପରିବେଷ୍ଟନୀକୁ ଗ୍ରହଣ କରି ଯେଉଁ ସିନେମା ନିର୍ମିତ ହୁଏ, ସେଥିପ୍ରତି ଦର୍ଶକର ଆଗ୍ରହ ସ୍ୱାଭାବିକ । କିନ୍ତୁ ସିନେମା ପରି ଏକ ଯନ୍ତ୍ର ନିର୍ଭର କଳାର ନିର୍ମାଣ ପାଇଁ ଯେଉଁ ପେଷାଦାରୀ କୌଶଳ ଆବଶ୍ୟକ, ସେଥିରୁ ସବୁ ଗୁଡ଼ିକ ନ ହେଲେ ବି ଅନେକଟା ସେ ଅଞ୍ଚଳରେ ରହିଥିବା ଦରକାର । କେହି ଜଣେ ଗଣନା କରି ଦେଖିଛନ୍ତି ଯେ ଶହେରୁ ଅଧିକ ରକମର ପେଷାଦାରୀ ଦକ୍ଷତା ଥିବା ବ୍ୟକ୍ତିମାନେ ସିନେମା ନିର୍ମାଣ ସହ ସଂପୃକ୍ତ ହୁଅନ୍ତି । କଥାଚିତ୍ରର ନିର୍ଦ୍ଦେଶକ ଏମାନଙ୍କ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଯେତେ ଦକ୍ଷ ହେଲେ ମଧ୍ୟ କାହାଣୀ, ଚିତ୍ରନାଟ୍ୟ ଓ ସ୍ୱର ସଂଯୋଜନାରେ ଅଣ-ଓଡ଼ିଆ ବ୍ୟକ୍ତିମାନେ ହାତଦେଲେ, ଓଡ଼ିଆ ସିନେମାର ଆବେଦନ ଶକ୍ତି ଓ ମୂଲ୍ୟ ହ୍ରାସ ହେବାର ସମ୍ଭାବନା ଯଥେଷ୍ଟ । କଥାଚିତ୍ରଟିଏର ପ୍ରଧାନ ରୂପକାର ହେଲେ ନିର୍ଦ୍ଦେଶକ ଏବଂ ୧୯୭୬/୭୭ ବେଳକୁ ଓଡ଼ିଆ ଚଳଚ୍ଚିତ୍ର ଜଗତରେ ସିନେମା ଟେକ୍‌ନିକ୍ ସହ ପରିଚିତ କେତେଜଣ ନିର୍ଦ୍ଦେଶକଙ୍କର ଆବିର୍ଭାବ ହୋଇଥିଲା । ଶ୍ରୀ ନିତାଇ ପାଲିତ୍ ବହୁବର୍ଷ ଧରି ଓଡ଼ିଆ କଥାଚିତ୍ର ଜଗତରେ ପେଷାଦାର ନିର୍ଦ୍ଦେଶକ ଭାବରେ ପରିଚିତ ଥିଲେ । କିନ୍ତୁ ଶ୍ରୀ ଶିଶିର କୁମାର ମିଶ୍ର (ପ୍ରଥମ ଚିତ୍ର ‘‘ସିନ୍ଦୁର ବିନ୍ଦୁ’’ ୧୯୭୭) ଏବଂ ଶ୍ରୀ ପ୍ରଶାନ୍ତ ନନ୍ଦ (ପ୍ରଥମ ଚିତ୍ର ‘‘ଶେଷ ଶ୍ରାବଣ’’) ବନ୍ଦେ ଚଳଚ୍ଚିତ୍ର ଦୁନିଆ ସହ

ପରିଚିତ ହୋଇ ଓଡ଼ିଆ ସିନେମା ଜଗତରେ ପଦାର୍ପଣ କଲେ । ପୁନାସ୍ଥିତ ସିନେମା ଓ ଟେଲିଭିଜନ୍ ପ୍ରଶିକ୍ଷଣ କେନ୍ଦ୍ରରେ ତାଲିମ୍ ପ୍ରାପ୍ତ ମନମୋହନ ମହାପାତ୍ର ଓ ନିରଦ ମହାପାତ୍ର ମଧ୍ୟ ନିର୍ଦ୍ଦେଶନା ଦେବା ଉଦ୍ୟମ ଚାଲୁ ରଖିଥିଲେ । ''ଶୀତରାତି'' (୧୯୮୨) ପାଇଁ ମନମୋହନ ଓ ''ମାୟାମିରିଗ'' ପାଇଁ ନିରଦ ପୁରସ୍କୃତ ହେଲେ ପ୍ରାୟ ୧୦ବର୍ଷର ଉଦ୍ୟମ ପରେ । ତେବେ ଏଠାରେ ବକ୍ତବ୍ୟ ହେଲା ବମ୍ବେ ସିନେମା ଜଗତ ସହ ପରିଚିତ ନିର୍ଦ୍ଦେଶକମାନେ ଓଡ଼ିଆ ସିନେମା ନିର୍ମାଣକୁ ପ୍ରଭାବିତ କଲାପରି, ପୁନାର ଆନୁଷ୍ଠାନିକ ତାଲିମ ପ୍ରାପ୍ତମାନେ ମଧ୍ୟ ସେମାନଙ୍କ ପ୍ରଭାବ ପକାଇଛନ୍ତି । ୧୯୭୬-୭୭ ସାଲ ବେଳକୁ ୭୦ଜଣ, ସିନେମା ଶିଳ୍ପର ବିଭିନ୍ନ ଦିଗରେ ପୁନାରେ ତାଲିମ ପ୍ରାପ୍ତ ବ୍ୟକ୍ତି, ପ୍ରତ୍ୟକ୍ଷ ସିନେମା ନିର୍ମାଣରେ ବା ସେଇ ଉଦ୍ୟମରେ ବମ୍ବେ ଓ ଓଡ଼ିଶାରେ ଥିଲେ ।

ଏତିକିବେଳକୁ ସରକାରୀ ମହଲରେ ମଧ୍ୟ କିଛି ପରିମାଣରେ ସିନେମା ସଚେତନାତା ପ୍ରକାଶ ପାଇଥିଲା ଯେଉଁଥିରୁ ଜନ୍ମ ନେଇଥିଲା ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମ (Orissa Film Development Corporation) । ଏହି ନିଗମଟି ଏପ୍ରେଲ୍ ୧୯୭୬ ସାଲରେ ପାଞ୍ଚ ଲକ୍ଷ ଟଙ୍କା ମୂଳଧନରେ ଆରମ୍ଭ ହୋଇଥିଲା । କିନ୍ତୁ ୧୯୭୮ ମେ' ମାସ ଯାଏଁ ଏ ସଂସ୍ଥା ସକ୍ରିୟ ନ ଥିଲା । ସେତେଯାଏଁ ଜଣେ ପୂରା ସମୟର ପରିଚାଳକ (ମେନେଜିଂ ଡାଇରେକ୍ଟର୍) ନଥିଲେ । ଗଠିତ ହେବା ପରେ ନିଗମଟି କ୍ଷୁଦ୍ରଶିଳ୍ପ ସଂସ୍ଥା ଅଧିନରେ ରହିଥିବା ପୂର୍ବରୁ କୁହାଯାଇଛି । ୧୯୭୮ରେ ଖାସ୍ ଓଡ଼ିଶା ଚଳଚ୍ଚିତ୍ର ନିଗମ ପାଇଁ ଜଣେ ମେନେଜିଂ ଡାଇରେକ୍ଟର ନିଯୁକ୍ତ ହେଲେ ଓ ରାଜ୍ୟର ଶିଳ୍ପ ମନ୍ତ୍ରୀ ନିଗମର ଚେୟାରମେନ୍ ରହିଲେ । ମେ' ୧୯୭୮ରେ ଅନୁଷ୍ଠିତ ବୋର୍ଡ଼ ଅଫ୍ ଡାଇରେକ୍ଟରଙ୍କ ବୈଠକରେ ନିଗମର ଲକ୍ଷ ସ୍ଥିର କରାଯାଇଥିଲା । ନିରୂପିତ ଲକ୍ଷ ଗୁଡ଼ିକ ହେଲା

- ରାଜ୍ୟରେ ଗୋଟିଏ ଷ୍ଟୁଡ଼ିଓ ନିର୍ମାଣ କରାଯିବ ଯେଉଁଥିରେ ପ୍ରସେସିଂ ଲେବୋରେଟରୀ ସମେତ ସଂଗୀତ ରେକଡ଼ିଂ, ସିନେମା ସଂପାଦନା ଓ ଡବିଂର ବ୍ୟବସ୍ଥା ରହିବ ।

- ଆଉଟ୍ ଡୋର ସୁଟିଂ ପାଇଁ ଭଡ଼ାରେ ଉପକରଣ ଯୋଗାଇ ଦେବାକୁ ଆବଶ୍ୟକୀୟ ଯନ୍ତ୍ରପାତି ରଖାଯିବ ।

- ଓଡ଼ିଆ ଚଳଚ୍ଚିତ୍ର ପାଇଁ ଉଦ୍ୟମ କରୁଥିବା ବ୍ୟକ୍ତିମାନଙ୍କୁ ଆର୍ଥିକ ସହାୟତା ଦିଆଯିବ ।

- ଓଡ଼ିଆ ଚଳଚ୍ଚିତ୍ର ନିର୍ମାତା ମାନଙ୍କୁ ''ସବ୍‌ସିଡ଼ି'' ଦିଆଯିବ ।

- ଓଡ଼ିଶାର ପ୍ରତି ସିନେମା ହଲ୍ ନିର୍ଦ୍ଦିଷ୍ଟ ସଂଖ୍ୟକ ସପ୍ତାହ ଓଡ଼ିଆ ସିନେମା ପ୍ରଦର୍ଶନ କରିବା ବାଧ୍ୟତା ମୂଳକ ରହିବ ।

• ପଲ୍ଲୀ ଓ ଅର୍ଦ୍ଧ-ସହର ଗୁଡ଼ିକରେ ବ୍ୟକ୍ତିଗତ ଉଦ୍ୟମରେ ଯେଉଁମାନେ କମ୍ ଖର୍ଚ୍ଚ ବିଶିଷ୍ଟ ଜନତା ସିନେମା ହଲ୍ ନିର୍ମାଣ କରିବାକୁ ଚାହିଁବେ, ସେମାନଙ୍କପାଇଁ ଋଣଦାନ ବ୍ୟବସ୍ଥା କରାଯିବ ।

• କେତେକ ବଡ଼ ସହରରେ ଉତ୍କୃଷ୍ଟ ଧରଣର ସିନେମା ହଲ୍ ନିର୍ମାଣ କରି ନିଗମ ନିଜର ଆୟ ବୃଦ୍ଧି କରିବ ।

• ପ୍ରତି ବର୍ଷ ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବ ଆୟୋଜନ କରିବା ପାଇଁ ମଧ୍ୟ ସ୍ଥିର ହେଲା । 'କଥାଚିତ୍ର ନିର୍ମାଣ ଓ ସିନେମା ପ୍ରେକ୍ଷାଳୟ ନିର୍ମାଣକୁ ସରକାର ଶିଳ୍ପ ରୂପେ ମଧ୍ୟ ଘୋଷଣା କଲେ ଯାହାଦ୍ୱାରା ଏସବୁ ପାଇଁ ଆନୁଷ୍ଠାନିକ ଋଣ ପାଇବା ରାସ୍ତା ମୁକ୍ତ ହେଲା । ନିଗମର ସିଦ୍ଧାନ୍ତ ପ୍ରତି ସମର୍ଥନ ଜଣାଇ ସରକାର୍‌ଙ୍କ ଗୃହ ବିଭାଗ ତାଙ୍କ ୧୧ ଡିସେମ୍ବର ୧୯୭୮ରେ ୫୯୯୧୨ ନମ୍ବର ଚିଠିରେ ପ୍ରତି ସିନେମା ହଲ୍ ଅନ୍ତତଃ ଚାରି ସପ୍ତାହ ପାଇଁ ଓଡ଼ିଆ ସିନେମା ପ୍ରଦର୍ଶନ ବାଧ୍ୟତା ମୂଳକ କଲେ ଏବଂ ପରେ ଏହା ଛଅ ସପ୍ତାହକୁ ବୃଦ୍ଧି କରାଗଲା । '

ଦର୍ଶକଙ୍କ ଆଗ୍ରହ, ସରକାରୀ ପ୍ରୋତ୍ସାହନ ଓ ପେଷାଦାରୀ ଦକ୍ଷତା ଉପରେ ଜୋର୍ ଦେବାର ମନୋଭାବ ଯୋଗୁଁ ସିନେମା ନିର୍ମାଣର ସଂଖ୍ୟାତ୍ମକ ଓ ଗୁଣାତ୍ମକ ମାନ ବଢ଼ିବାକୁ ଲାଗିଲା । ୧୯୭୬ ସାଲରେ ପ୍ରଥମ ରଂଗୀନ ଓଡ଼ିଆ କଥାଚିତ୍ର ''ଗପ ହେଲେ ବି ସତ'' (ନିର୍ଦ୍ଦେଶକ ଶ୍ରୀ ନଗେନ୍ ରାୟ) ସମେତ ସମୁଦାୟ ପାଞ୍ଚଗୋଟି ଚଳଚ୍ଚିତ୍ର ନିର୍ମିତ ହୋଇଥିବା ବେଳେ, ୧୯୭୭ ସାଲରେ ଆଠଟି, ୧୯୭୮ରେ ୧୬ଟି, ୧୯୭୯ରେ ଛଅଗୋଟି, ୧୯୮୦ରେ ୧୫ଗୋଟି, ୧୯୮୧ ସାଲରେ ୧୭ଟି, ୧୯୮୨ରେ ୧୩ଗୋଟି, ୧୯୮୩ରେ ଛଅ ଗୋଟି ଏବଂ ୧୯୮୪ରେ ଆଠଗୋଟି ସିନେମା ନିର୍ମିତ ହୋଇଥିଲା ।

ଓଡ଼ିଆ ସିନେମାରେ କାରିଗରୀ ଦକ୍ଷତା ଓ ସଂଖ୍ୟାତ୍ମକ ଅଭିବୃଦ୍ଧିର ଏହି ଅଧ୍ୟାୟରେ କେତେକ ଦକ୍ଷିଣ ଭାରତୀୟ ପ୍ରଯୋଜକଙ୍କ ଭୂମିକା ମଧ୍ୟ ରହିଥିଲା । ପ୍ରଧାନତଃ ମେଡ୍ରାସର ତେଲୁଗୁ ଚଳଚ୍ଚିତ୍ର ନିର୍ମାତାମାନେ ହାଇଦ୍ରାବାଦ୍‌ର ଷ୍ଟୁଡ଼ିଓ ମାନଙ୍କରେ କେତେଗୁଡ଼ିଏ ଓଡ଼ିଆ କଥାଚିତ୍ର ନିର୍ମାଣ କରିଥିଲେ; ଯଥା : ''ପୁନର୍ମିଳନ'' (୧୯୭୬), ''ଏ ନୁହେଁ କାହାଣୀ'' (୧୯୭୭), ''କୁଳ ଚନ୍ଦ୍ରମା'' (୧୯୭୭), ''ପତିପତ୍ନୀ'' (୧୯୭୮), ''ପରିବାର'' (୧୯୭୮), ''ଝିଲିମିଲି'' (୧୯୭୯), ''ଜନ୍ମଦାତା'' (୧୯୭୯), ''ସତୀ ଅନସୂୟା'' (୧୯୭୯) ଏବଂ ''ଶ୍ରୀ ଜଗନ୍ନାଥ'' (୧୯୮୦) । ଏଥିରୁ ଅଧିକାଂଶ ତେଲୁଗୁ ସିନେମାର ରୂପାନ୍ତରୀକରଣ । ହାଇଦ୍ରାବାଦରେ ଚଳଚ୍ଚିତ୍ର ନିର୍ମାଣ କାର୍ଯ୍ୟକଳାପ ବୃଦ୍ଧି କରାଇବା ପାଇଁ ସେତେବେଳର ଆନ୍ଧ୍ରପ୍ରଦେଶ ସରକାର ସେଠାରେ ନିର୍ମିତ ଯେ କୌଣସି ବାଣୀଚିତ୍ରକୁ ଏକ ଲକ୍ଷ ଟଙ୍କା ଅନୁଦାନ ଦେଉଥିଲେ । ଏହି ପ୍ରୋତ୍ସାହନରେ ଉପକୃତ ହୋଇ ଅପେକ୍ଷାକୃତ କମ୍ ଖର୍ଚ୍ଚରେ ପ୍ରସ୍ତୁତ ହୋଇପାରୁଥିବା

ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ ପାଇଁ ଦକ୍ଷିଣ ଭାରତୀୟ ଚଳଚ୍ଚିତ୍ର ନିର୍ମାତାମାନେ ଆଗଭର ହେଉଥିଲେ । କିନ୍ତୁ କିଛି ବର୍ଷ ମଧ୍ୟରେ ଆନ୍ଧ୍ର ପ୍ରଦେଶ ସରକାରଙ୍କର ଏ ନୀତି ବଦଳି ଯାଇଥିଲା । ଅଣ-ତେଲୁଗୁ ଚଳଚ୍ଚିତ୍ରମାନଙ୍କ ପାଇଁ ଅନୁଦାନ ୨୫,୦୦୦ ଟଙ୍କାକୁ କମାଇ ଦିଆଗଲା । ଏହାଯୋଗୁଁ ହାଇଦ୍ରାବାଦ୍‌ରେ ଆଉ ଓଡ଼ିଆ ସିନେମା ନିର୍ମାଣ ହେଲାନି ।

ଦକ୍ଷିଣ ଭାରତୀୟ ପ୍ରଯୋଜକମାନଙ୍କର ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ କାର୍ଯ୍ୟକଳାପ ଦ୍ୱାରା ଓଡ଼ିଆ ସିନେମା କିଛିଟା ଲାଭବାନ ଯେ ନ ହୋଇଛି, ତା'ନୁହେଁ । ୧୯୮୦ରେ ସେମାନେ ହିଁ ''ଶ୍ରୀ ଜଗନ୍ନାଥ''ର ପୁନଃ ନିର୍ମାଣ କରିଥିଲେ ଏକ ରଂଗୀନ୍ ଚଳଚ୍ଚିତ୍ର ରୂପେ । ପୁଣି ବ୍ରହ୍ମପୁରରେ ଅବସ୍ଥାପିତ ଓଡ଼ିଆ ନାଟ୍ୟକାର ଶ୍ରୀ ରଘୁନାଥ ମିଶ୍ର ଏହି ସମୟରେ ହିଁ, ଦକ୍ଷିଣ ଭାରତୀୟ ପ୍ରଯୋଜକମାନଙ୍କ ସହ ସଂପୃକ୍ତ ହୋଇ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ ପାଇଁ ଉତ୍ସାହିତ ହୋଇଥିଲେ । ଶ୍ରୀ ମିଶ୍ର ୧୯୭୭ରେ ନିର୍ମିତ ''ପୁନର୍ମିଳନ''ର ଚିତ୍ରନାଟ୍ୟ, ସଂଳାପ ଓ ଗୀତ ରଚନା କରିଥିଲେ ଏବଂ ସିନେମା ନିର୍ମାଣ ଅନୁଭୂତି କେତେକାଂଶରେ ସଂଗ୍ରହ କରିଥିଲେ । ଏହାଦ୍ୱାରା ''କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ'' ଭଳି ଜଣେ ଜାତୀୟ କବିଙ୍କ ଜୀବନ ଚରିତ ଉପରେ ସିନେମା ନିର୍ମାଣ କରିବାରେ ସେ ପରେ



କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜର ନାୟିକା ରୋଜାରମଣୀ

ସକ୍ଷମ ହୋଇଥିଲେ । ଏ ପ୍ରକାର ଉଦ୍ୟମ ନିଃସନ୍ଦେହରେ ପ୍ରଶଂସନୀୟ । ତେବେ ସେହି ସିନେମାର ବ୍ୟବସାୟିକ ବିଫଳତା ସତ୍ତ୍ୱେ ନାଟ୍ୟଶ୍ରୀ ରଘୁନାଥ ''ଅନୁରାଧା'' ନାମକ ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ଜଣେ ସିନେମା ଗୀତିକାର ରୂପେ ମଧ୍ୟ ସେ ନିଜ ପାରଦର୍ଶିତା ପ୍ରମାଣିତ କରିଥିଲେ ।

ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣର ଏହି ବର୍ଷ ମାନଙ୍କରେ ହିଁ କେତେକ ପେଷାଦାର ଚଳଚ୍ଚିତ୍ର ଅଭିନେତା, ଅଭିନେତ୍ରୀ ଓ ପ୍ରକୃତ ଅର୍ଥରେ ଆଞ୍ଚଳିକ ଚିତ୍ର ତାରକାମାନେ ସମ୍ଭବ ହୋଇଥିଲେ । ୧୯୭୬ରେ ନିର୍ମିତ ''ଶେଷ ଶ୍ରାବଣ'' (ନିର୍ଦ୍ଦେଶନା ଶ୍ରୀ ପ୍ରଶାନ୍ତ ନନ୍ଦ) ଚଳଚ୍ଚିତ୍ରରେ ପ୍ରଥମେ ନାୟିକା ଭାବରେ ଆତ୍ମ-ପ୍ରକାଶ କରିଥିବା ମହାଶ୍ୱେତା ସିନେମା ଆକାଶରେ ପ୍ରଥମ ଚିତ୍ର ତାରକା ରୂପେ ଉଦିତ ହେଲେ । ସେହିପରି ଦୀପା ସାହୁ, ଅନୀତା ଦାସ, ପ୍ରଶାନ୍ତ ନନ୍ଦ ଓ ଉତ୍ତମ ମହାନ୍ତି ମଧ୍ୟ ତାରକା ଜ୍ୟୋତିରେ ଝଲସିଲେ । ଏମାନେ ପ୍ରାୟ ସିନେମା ଶିଳ୍ପକୁ ହିଁ ପେଷା ଓ ପାଥେୟ ଭାବେ ଗ୍ରହଣ କରିଥିଲେ । ତେଣୁ ବମ୍ବେ ସିନେମାରୁ ଆସିଥିବା ନିର୍ଦ୍ଦେଶକମାନେ ପ୍ରଥମେ ପ୍ରଥମେ ଓଡ଼ିଶାରେ ପେଷାଦାର କଳାକାରଙ୍କର ଅଭାବ ବୋଲି ଯାହା କହୁଥିଲେ, ସେ ଅଭିଯୋଗ ପରେ ପରେ ଆଉ ଶୁଣାଗଲାନି । ବୀରେନ୍ ରାଉତରାୟ, ସାମୁଏଲ୍ ସାହୁ (ବାବି), ଝରଣା ଦାସ୍, ସୁଜାତା ଆନନ୍ଦ, ଶରତ ପୂଜାରୀ, ଦେବୁ ବୋଷ, ଦୁଃଖୀରାମ ସ୍ୱାଇଁ ପ୍ରଭୃତି ଚରିତ୍ର ଶିଳ୍ପୀ ମଧ୍ୟ ଓଡ଼ିଆ ସିନେମା ଜଗତରେ ପୋଖତ କଳାକାର ଭାବରେ ପରିଚିତ ହେଲେ ।

ଓଡ଼ିଆ ସିନେମା ଶିଳ୍ପର ଅଗ୍ରଗତିରେ ମେ' ୧୯୮୨ ଥିଲା ଅନ୍ୟତମ ମାଇଲ୍ ଖୁଣ୍ଟ; କାରଣ ସେହି ମାସରେ ଭୁବନେଶ୍ୱରର ଖଣ୍ଡଗିରି ପାଦ ଦେଶରେ କଳିଙ୍ଗ ଷ୍ଟୁଡ଼ିଓ ଉନ୍ମୋଚିତ ହେଲା । ଓଡ଼ିଶାରେ ଏକ ସିନେମା ଷ୍ଟୁଡ଼ିଓ ନିର୍ମାଣ ବହୁ ଯୁଗର ସ୍ୱପ୍ନ ଥିଲା । କଳିଙ୍ଗ ଷ୍ଟୁଡ଼ିଓ ନିର୍ମାଣର ଦୀର୍ଘ ୨୫ ବର୍ଷ ପୂର୍ବରୁ ଡକ୍ଟର ହରେକୃଷ୍ଣ ମହତାବ୍ ମଧ୍ୟ ଗୋଟିଏ ଷ୍ଟୁଡ଼ିଓ ନିର୍ମାଣ ପାଇଁ ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ; କିନ୍ତୁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଶାସନ କାଳରେ ହିଁ ଏହି ସ୍ୱପ୍ନ ସଫଳ ହୋଇପାରିଥିଲା ।

ଓଡ଼ିଶାକୁ ଭାରତର ସିନେମା ମାନଚିତ୍ରରେ ସ୍ଥାନ ଦେବାରେ କଳିଙ୍ଗ ଷ୍ଟୁଡ଼ିଓର ମଧ୍ୟ କେତେକାଂଶରେ ଏକ ଭୂମିକା ରହିଛି । ଖଣ୍ଡଗିରି ପାଦଦେଶରେ ୨୫ ଏକର ଜାଗା ଉପରେ ଗଢ଼ି ଉଠିଥିବା କଳିଙ୍ଗ ଷ୍ଟୁଡ଼ିଓ ମାତ୍ର ୧୮ ମାସ ମଧ୍ୟରେ ରୂପ ନେବାକୁ ସମର୍ଥ ହୋଇଥିଲା । (୧୯ ଅକ୍ଟୋବର ୧୯୮୦ରେ ଏହାର ଭିତ୍ତିପ୍ରସ୍ତର ସ୍ଥାପିତ ହୋଇଥିଲା ଓ ଷ୍ଟୁଡ଼ିଓ ଉନ୍ମୋଚିତ ହେଲା ୫ ମେ' ୧୯୮୨ରେ) । ଏକାଧିକ ଅନୁଷ୍ଠାନର ମିଳିତ ଉଦ୍ୟମରେ ଏ ଷ୍ଟୁଡ଼ିଓ ଜନ୍ମଲାଭ କରିଥିଲା । ମୋଟ ୫୫ଲକ୍ଷ ଟଙ୍କା ବ୍ୟୟରେ ପୂର୍ଣ୍ଣାଙ୍ଗ ଷ୍ଟୁଡ଼ିଓଟି ନିର୍ମିତ ହେବାର ଲକ୍ଷ ରଖାଯାଇଥିଲା । ପ୍ରଥମ ପର୍ଯ୍ୟାୟରେ ୩୯ ଲକ୍ଷ ଟଙ୍କା ଖର୍ଚ୍ଚ ଅଟକଳ କରାଯାଇଥିଲା ଯେଉଁଥିରୁ ୨୩ ଲକ୍ଷ ଟଙ୍କା ଓଡ଼ିଶା ରାଜ୍ୟ ଅର୍ଥ ଲଗାଣ ସଂସ୍ଥା ଓ ଇପିକଲ୍ (ଶିଳ୍ପୋନ୍ନତି ପାଇଁ ରାଜ୍ୟ ସରକାରଙ୍କର ଅନ୍ୟତମ ସଂସ୍ଥା) ଖଟାଇଲେ



ଭୁବନେଶ୍ୱରସ୍ଥିତ କଳିଙ୍ଗ ଷ୍ଟୁଡ଼ିଓ

ଓ ଅବଶିଷ୍ଟ ଅର୍ଥ ଚଳଚ୍ଚିତ୍ର ଉନ୍ନୟନ ନିଗମ ଏବଂ ମାଡ୍ରାସର ସୁପ୍ରସିଦ୍ଧ ଶାରଦା ଏଣ୍ଟେର ପ୍ରାଇଜେର୍ସ ମିଳିତ ଭାବେ ଖଟାଇଲେ । ମେ° ୧୯୮୨ରେ ଏହାର ଉନ୍ମୋଚନ ବେଳେ ଏ ଷ୍ଟୁଡ଼ିଓରେ ଗୀତ ରେକର୍ଡ଼ିଂ ହଲ୍, ଫିଲ୍ମ ସଂପାଦନା ଓ ଡବିଂ ବ୍ୟବସ୍ଥା, ଅର୍ନ୍ତଚିତ୍ର ଗ୍ରହଣ ("ଇଣ୍ଡୋର ସୁଟିଂ") ପାଇଁ ସୁଟିଂ ଫ୍ଲୋର, ବହିଁଚିତ୍ର ଗ୍ରହଣ ପାଇଁ କ୍ୟାମେରା ୟୁନିଟ୍‌ର ବ୍ୟବସ୍ଥା ହୋଇଥିଲା । ଷ୍ଟୁଡ଼ିଓଟି ଉନ୍ମୋଚିତ ହେବା ପରେ ଅଧିକାଂଶ ଓଡ଼ିଆ ସିନେମା ନିର୍ମାତା ଓ ଓଡ଼ିଶା ବାହାରର ବହୁ ନିର୍ଦ୍ଦେଶକ (ମୃଣାଳ ସେନ୍, ତପନ ସିହ୍ନା, ବିପ୍ଳବ ରାୟ ଚୌଧୁରୀ, ଅମଲ୍ ପାଲେକର୍ ପ୍ରଭୃତି) ଏଇ ଷ୍ଟୁଡ଼ିଓ ବା ତାର ଯନ୍ତ୍ରପାତି ବ୍ୟବହାର କରିଛନ୍ତି । ଏହି ଷ୍ଟୁଡ଼ିଓ ନିର୍ମିତ ହେବା ଦ୍ୱାରା ଗୋଟିଏ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣର ଖର୍ଚ୍ଚ ବଜେଟ୍‌ରୁ ୭୦ରୁ ୮୦ ହଜାର ଟଙ୍କା କମି ଯାଉଥିବା କେତେକ ପ୍ରଯୋଜକ ସେତେବେଳେ ପ୍ରକାଶ କରିଥିଲେ ।

ଓଡ଼ିଆ ସିନେମା ଆୟମାରମ୍ଭର ୪୮ତମ ବର୍ଷରେ ସିନେମା ନିର୍ମାଣ ପାଇଁ ଏମିତି ଅବହାଓ୍ୱା ସରଗରମ ହୋଇ ଉଠିବା ବେଳେ ଓଡ଼ିଆ ସିନେମା ପ୍ରଦର୍ଶନ ପାଇଁ ହଲ୍ ସଂଖ୍ୟା କିନ୍ତୁ ଯଥେଷ୍ଟ କମ୍ ଥିଲା । ୧୯୭୭ ବେଳକୁ ରାଜ୍ୟରେ ମାତ୍ର ୧୦୩ ଗୋଟି ସିନେମା ପ୍ରେକ୍ଷାଳୟ ଥିବାବେଳେ, ୧୯୮୨ ବେଳକୁ ଏହା ବଢ଼ି ବଢ଼ି ୧୩୦ ହୋଇ ପାରିଥିଲା । ଓଡ଼ିଶାରେ ହଲ୍ ସଂଖ୍ୟା ନ ବଢ଼ିଲେ ଓଡ଼ିଆ ସିନେମାର ବ୍ୟବସାୟିକ ସଫଳତା

ସମ୍ଭାବନା ସଙ୍କୁଚିତ ହୋଇ ହିଁ ରହିବ । ଏଣୁ ଓଡ଼ିଆ ଚଳଚ୍ଚିତ୍ର ଉନ୍ନୟନ ନିଗମ ଏ ଦିଗ ପ୍ରତି ଯଥେଷ୍ଟ ଗୁରୁତ୍ୱ ଆରୋପ କରିବା ସ୍ୱାଭାବିକ । ପ୍ରଥମ ପର୍ଯ୍ୟାୟରେ ଏଥିପାଇଁ ଚାରୋଟି ଜନତା ସିନେମା ହଲ୍ ନିର୍ମାଣ ପାଇଁ ନିଗମ ଆର୍ଥିକ ସହାୟତାର ବ୍ୟବସ୍ଥା କରିଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ୩୦ଟି ସିନେମାହଲ୍ ନିର୍ମାଣ ପାଇଁ ପଦକ୍ଷେପ ନିଆଗଲା ଯେଉଁଥିରୁ ଛଅଟି ବମ୍ବେସ୍ଥିତ ଜାତୀୟ ସିନେମା ଉନ୍ନୟନ ନିଗମର ମିଳିତ ଉଦ୍ୟମରେ ନିର୍ମିତ ହେବା ଲକ୍ଷ୍ୟ ରହିଲା । ଓଡ଼ିଶାର ପ୍ରତି ବ୍ଲକ୍ ହେଡ୍‌କ୍ୱାଟରରେ ଅନ୍ତତଃ ଗୋଟିଏ କରି ସିନେମା ହଲ୍ ନିର୍ମାଣ ଲକ୍ଷ ନିଗମ ରଖିଛି ଏବଂ ଏ ପରିକଳ୍ପନା କାର୍ଯ୍ୟକାରୀ ହେଲେ ଏ କ୍ରମରେ ୫୦୦ ସିନେମା ହଲ୍ ଗଢ଼ି ଉଠିବା ସମ୍ଭବ ।

ସିନେମା ପ୍ରଦର୍ଶନ ପାଇଁ ଏ ହେଲା କ୍ଷେତ୍ର ପ୍ରସ୍ତୁତି ପରିକଳ୍ପନା, କିନ୍ତୁ ଚଳଚ୍ଚିତ୍ର ଶିଳ୍ପ କ୍ଷେତ୍ରରେ ପରିଦୃଷ୍ଟ ଅବହାଓ୍ୱାର ସଂଘର୍ଷମୟ ଦିଗଟି ମଧ୍ୟ ପର୍ଯ୍ୟାଲୋଚନାର ଦାବୀ ରଖେ ।

ମନୋରଂଜନ ବ୍ୟବସାୟରେ ପ୍ରତିଯୋଗିତା ତୀବ୍ର ହେବା ସ୍ୱାଭାବିକ, ବିଶେଷତଃ ବ୍ୟବସାୟ ବିସ୍ତାର ପାଇଁ କ୍ଷେତ୍ର ଯେଉଁଠି ବିସ୍ତୃତ ନୁହେଁ ସେଠାରେ ଏ ପ୍ରତିଯୋଗିତା ଅଧିକ ତୀବ୍ରହୁଏ । ଓଡ଼ିଶାରେ ସିନେମା ହଲ୍ ସଂଖ୍ୟା କମ୍ ହୋଇଥିବାରୁ, ଓଡ଼ିଆ ସିନେମା ନିର୍ମାତାମାନେ ହଲ୍ ଅକ୍ତିଆର ପାଇଁ ବେଳେ ବେଳେ ପ୍ରତିଦ୍ୱନ୍ଦିତା କରିବା ଅପରିହାର୍ଯ୍ୟ ହୋଇଉଠେ । ଓଡ଼ିଆ ସିନେମା ବ୍ୟବସାୟ ଜଗତର କେତୋଟି ବଦ୍ଧମୂଳ ଧାରଣା ଏ ପ୍ରତିଦ୍ୱନ୍ଦିତାକୁ ବେଳେବେଳେ ତୀବ୍ରତର କରିଥିବାର ପ୍ରମାଣ ରହିଛି ।

ଅନେକ ବର୍ଷର ଗୋଟିଏ ପ୍ରଚଳିତ ଧାରଣା ହେଲା ଯେ, କଟକ ବଜାର ହିଁ ଓଡ଼ିଆ ସିନେମା ବ୍ୟବସାୟର ମାପଯନ୍ତ୍ର...ବେରୋମିଟର ! ଅର୍ଥାତ୍ କଟକ ସିନେମାହଲ୍ ମାନଙ୍କରେ ସିନେମାଟିଏ ଯଦି ଭଲ ଚାଲେ, ତାହା ସାରା ଓଡ଼ିଶାରେ ନିଶ୍ଚୟ ସଫଳ ହେବ, ଯଦି ନ ଚାଲେ, ବିଫଳ ହେବ  ଏପରି ଗୋଟାଏ ବଦ୍ଧମୂଳ ଧାରଣା ରହିଛି । ସେମିତି ଆଉ ଗୋଟାଏ ଧାରଣା ହେଲା  ଦୁର୍ଗାପୂଜା ସମୟରେ ହିଁ ଛବିଟିଏ ମୁକ୍ତି ପାଇଲେ ଆଶାତୀତ ବ୍ୟବସାୟିକ ସଫଳତାର ସମ୍ଭାବନା ଉଜ୍ଜ୍ୱଳ ହୋଇ ଉଠିବ । ଏମିତି ଦୁଇଟି ଧାରଣାର କ୍ରିୟା-ପ୍ରତିକ୍ରିୟା ଯୋଗୁଁ ଦଶହରା ବେଳେ କଟକ ସିନେମା ହଲ୍ ଗୁଡ଼ିକ କରାୟତ୍ତ କରିନେବା ପାଇଁ ଓଡ଼ିଆ ଚିତ୍ର ପରିବେଷକମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଆରମ୍ଭ ହୋଇଯାଏ ।

୧୯୭୯ ଦୁର୍ଗାପୂଜା ବେଳେ କଟକ ପୂଜା ସିନେମା ମାର୍କେଟରେ ଯେଉଁ ପ୍ରକାରର ପ୍ରତିଦ୍ୱନ୍ଦିତା ଚାଲିଲା, ତାହା ବୋଧହୁଏ ଓଡ଼ିଆ ସିନେମା ଇତିହାସରେ ଲିପିବଦ୍ଧ ହୋଇ ରହିବା ଉଚିତ୍ ।

ଏତେବେଳକୁ ସିନେମା ପ୍ରଦର୍ଶନ କ୍ଷେତ୍ରରେ ପୂର୍ବରୁ ପ୍ରଚଳିତ ନିୟମର ପରିବର୍ତ୍ତନ ବି ହେଲାଣି । ପୂର୍ବେ ସିନେମା ପ୍ରେକ୍ଷାଳୟ ମାଲିକମାନେ ଯେଉଁ ନିୟମରେ ଚଳଚ୍ଚିତ୍ରଟିଏ ପ୍ରଦର୍ଶିତ କରୁଥିଲେ, ତା' ହେଲା: ଛବିଟିରୁ ଯାହା ଆୟ ହେବ, ତାର ଏକ ନିର୍ଦ୍ଦିଷ୍ଟ ଅଂଶ ହଲ୍ ମାଲିକ ପାଇବ ଓ ବାକିତକ ପାଇବ ପରିବେଷକ (କହିବା ଅନାବଶ୍ୟକ, ମନୋରଂଜନ ଟିକସ ବାବଦରେ ରାଜ୍ୟ ସରକାର ପାଇବା ଅର୍ଥ, ଏଥିରେ ଅର୍ନ୍ତଭୁକ୍ତ ନୁହେଁ)। କିନ୍ତୁ ୧୯୭୯ ବେଳକୁ ଏ ବ୍ୟବସ୍ଥା ଆଉ ଅନୁସୃତ ହେଉ ନ ଥିଲା: ହଲ ମାଲିକମାନେ ଆଉ ଶତକଡ଼ା ପାଉଣାରେ ସିନେମା ପ୍ରଦର୍ଶନ ପାଇଁ ପ୍ରସ୍ତୁତ ନ ଥିଲେ । ସେମାନେ ପରିବେଷକମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥରେ ପ୍ରେକ୍ଷାଳୟ ଗୁଡ଼ିକ ଭଡ଼ାରେ ଦେବା ଆରମ୍ଭ କରିଦେଇଥିଲେ । ଏହାଦ୍ୱାରା ସେମାନଙ୍କ ଆୟର ପରିମାଣ ନିର୍ଦ୍ଦିଷ୍ଟ ଓ ସୁନିଶ୍ଚିତ ରହିଲା । କିନ୍ତୁ ଏହି ରୀତିଦ୍ୱାରା ପରିବେଷକ ଓ ନିର୍ମାତାମାନଙ୍କ ଉପରେ ଅର୍ଥନୈତିକ ଅନିଶ୍ଚୟତାର ବୋଝ ନିଶ୍ଚିତଭାବରେ ପଡ଼ିଲା । ଯେଉଁ ନିର୍ମାତାମାନେ ପରିବେଷଣ ଦାୟିତ୍ୱ ନେଲେ ସେମାନେ ନିଜ ସିନେମାର ମୁକ୍ତିପାଇଁ ପୁଣି ଅଧିକ ଅର୍ଥ ଖଟାଇବାକୁ ବାଧ ହେଲେ । ଅଭାବଗ୍ରସ୍ତ ନିର୍ମାତାଙ୍କ ପକ୍ଷରେ ନିଜ ସିନେମାର ମୁକ୍ତି ଦେଖିବା ଅସମ୍ଭବ ହୋଇ ଉଠିଲା । (ସ୍ୱଳ୍ପ ବଜେଟ୍‌ରେ ତିଆରି 'ମାଂସର ବିଳାପ' ଠିକ୍ ଏଇ କାରଣରୁ ବର୍ତ୍ତମାନ୍ ସୁଦ୍ଧା ମୁକ୍ତି ପାଇ ପାରିନି ବୋଲି ଶୁଣାଯାଏ ।)

କଟକର ୧୯୭୯ ପୂଜା ସିନେମା ବଜାର ଘଟଣାବଳିକୁ ଏଇ ପରିପ୍ରେକ୍ଷୀରେ ଦୃଷ୍ଟିପାତ କଲେ ପ୍ରତିଦ୍ୱନ୍ଦିତାର ତୀବ୍ରତା ସହଜେ ହୃଦ୍‌ବୋଧ କରିହେବ । ଉକ୍ତବର୍ଷ ସର୍ବମୋଟ ଆଠଟି ଓଡ଼ିଆ ଚଳଚ୍ଚିତ୍ର ମୁକ୍ତି ପାଇଥିଲା । ଏଥିରୁ ଅର୍ଦ୍ଧାଧିକ, ଅର୍ଥାତ୍ ପାଞ୍ଚୋଟି କଥାଚିତ୍ର, ଦୁର୍ଗାପୂଜା ସମୟରେ କଟକର ସିନେମା ପ୍ରେକ୍ଷାଳୟ ମାନଙ୍କରେ ମୁକ୍ତିଲାଭ କରିଥିଲା । ପ୍ରଥମେ, ପୂଜାର ଠିକ୍ ଅବ୍ୟବହିତ ପୂର୍ବରୁ "ସମର, ସଲମନ୍, ସାଇମନ୍" ମୁକ୍ତି ପାଇଲା । କିନ୍ତୁ ଏ ଛବିଟି ଏମିତି କମ୍ ମାନର ହୋଇଥିଲା ଯେ, ପୂଜା ଅବହାୱା ସତ୍ତ୍ୱେ କମ୍ ଦିନରେ ହିଁ ଅପସରି ଗଲା । ସେପ୍ଟେମ୍ବର ପ୍ରଥମ ଓ ଦ୍ୱିତୀୟ ସପ୍ତାହରେ ଅନ୍ୟ ଯେଉଁ ଚାରୋଟି କଥାଚିତ୍ର ମୁକ୍ତି ପାଇଲା, ସେ ଗୁଡ଼ିକ ହେଲା 'ଶ୍ରୀକୃଷ୍ଣଙ୍କ ରାସଲୀଳା' (୭ ସେପ୍ଟେମ୍ବର ୧୯୭୯) ଏବଂ 'ମଥୁରା ବିଜୟ' 'ଶ୍ରୀ ଜଗନ୍ନାଥ' ଓ 'ନୀଳ ମାଧବ' (୧୪ ସେପ୍ଟମ୍ବର ୧୯୭୯) । କେବଳ 'ମଥୁରା ବିଜୟ' ତିନୋଟି ସିନେମା ହଲରେ ମୁକ୍ତି ପାଇଲା । କଟକରେ ସେତେବେଳକୁ ମାତ୍ର ସାତୋଟି ସିନେମା ହଲ୍ ଥିଲା । ଏଣୁ ସେଥିମଧ୍ୟରୁ ଛଅଟି ପ୍ରେକ୍ଷାଳୟରେ ଓଡ଼ିଆ ସିନେମା ପ୍ରଦର୍ଶିତ ହେଉଥିଲା ।

ନିର୍ମାତାମାନଙ୍କ ମଧ୍ୟରେ ପ୍ରତିଯୋଗିତା କେତେ ତୀବ୍ର ହେଉଥିଲା, ତାର କେତୋଟି ଲକ୍ଷଣ ସେତିକିବେଳେ ପ୍ରକାଶ ପାଇଥିଲା । ଛାୟାବାଣୀ ପ୍ରତିଷ୍ଠାନ୍ (କଟକ)ର ଶ୍ରୀ ବାବୁଲାଲ୍ ଦୋଶୀ 'ମଥୁରା ବିଜୟ' କଥାଚିତ୍ର ନିର୍ମାଣ କରିଥିଲେ । ସାଧାରଣମାନର ଏଇ ରଙ୍ଗୀନ୍ ଛବିଟିକୁ ସେ ଯେ କଟକର ତିନୋଟି ସିନେମା ହଲ୍‌ରେ ଏକାଥରେ ପ୍ରଦର୍ଶନ

ପାଇଁ ବ୍ୟବସ୍ଥା କରି ପାରିଥିଲେ, ଏଥିରୁ ଓଡ଼ିଆ ଚଳଚ୍ଚିତ୍ର ଦୁନିଆରେ ତାଙ୍କର ପ୍ରଭାବ ହୃଦ୍‌ବୋଧ କରିହୁଏ । କିନ୍ତୁ ତାଙ୍କର କୌଣସି ଜଣେ ପ୍ରତିଦ୍ୱନ୍ଦୀ ସେ ଚିତ୍ରଟିର ପ୍ରଦର୍ଶନରେ ବାଧା ସୃଷ୍ଟି କରିବା ପାଇଁ କୋର୍ଟରୁ ଗୋଟିଏ ନିଷେଧାଦେଶ ମିଳିଥିବା ବିଷୟ ମଧ୍ୟ କଟକର ଗୋଟିଏ ଦୈନିକ ଖବର କାଗଜରେ ପ୍ରକାଶ ପାଇଥିଲା । କିନ୍ତୁ ଛାୟାବାଣୀ ପ୍ରତିଷ୍ଠାନ ସମ୍ଭବତଃ ଏ ସବୁକୁ ଭ୍ରୂକ୍ଷେପ କରି ନ ଥିଲା; ବରଂ ପ୍ରଚାର ଦୌଡ଼ରେ ଉକ୍ତ ପ୍ରତିଷ୍ଠାନ ଏମିତି ପାରି ଉଠିଲା ଯେ ଉକ୍ତ ସିନେମାର ୫୦ ଦିନ ପୂର୍ତ୍ତି ଉପଲକ୍ଷେ ଗୋଟିଏ ଦୃଷ୍ଟି-ଆକର୍ଷକ ଉତ୍ସବର ଆୟୋଜନ କରିଥିଲା ଏବଂ ସେଇ ବିବରଣୀ 'ସମାଜ' ଭଳି ରକ୍ଷଣଶୀଳ ଖବର କାଗଜରେ ଫୋଟ ସହ ପୂରା ଦୁଇ କଲମରେ ପ୍ରକାଶ ପାଇଥିଲା । ଛାୟାବାଣୀ ପ୍ରତିଷ୍ଠାନର ମାଲିକ, ଓଡ଼ିଆ ସିନେମା ଜଗତରେ ଦିଗ୍‌ବିଜୟୀ ବୋଲି ଏସବୁ ହୁଏତ ସୂଚନା ଦେଇଥିଲା ।

ଗୋଟିଏ ମାସରେ ମୁକ୍ତି ପାଇଥିବା ଏ ଯେଉଁ ଚାରୋଟି ଛବି କଥା କୁହାଗଲା, ସେଥିରୁ କେବଳ 'ନୀଳମାଧବ' ହିଁ ଥିଲା କଳାଧଳା; ବାକି ତିନୋଟି ଥିଲା ରଙ୍ଗୀନ୍ । 'ଶ୍ରୀକୃଷ୍ଣଙ୍କ ରାସଲୀଳା' ଓଡ଼ିଆ ସିନେମା ଜଗତରେ ଏକ ପରୀକ୍ଷା ମୂଳକ ଛବି; କାରଣ ସମଗ୍ର ଛବିଟି ହିଁ ଗୀତ ଓ ନୃତ୍ୟ ମାଧମରେ ପରିବେଷିତ କହିଲେ ଅତ୍ୟୁକ୍ତି ହେବନି । ପୁଣି ଗୀତ ଗୁଡ଼ିକ ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ଅମର କବିମାନଙ୍କର ଲୋକପ୍ରିୟ ରଚନାର ସମାହାର; ଏଣୁ ଏ ଛବିଟିର କଳାତ୍ମକ ଗୁଣ ବି ରହିଛି । ଏହା ସତ୍ତ୍ୱେ ଏ ଛବିଟି କଟକରେ ମାତ୍ର ତିନି ସପ୍ତାହ ଚାଲିଥିଲା । ଅଥଚ 'ମଥୁରା ବିଜୟ' ମିଳିତ ୧୫ ସପ୍ତାହ ଚାଲିବାର କୃତିତ୍ୱ ହାସଲ କରିଥିଲା ଓ 'ଶ୍ରୀ ଜଗନ୍ନାଥ' ୧୨ ସପ୍ତାହ ଚାଲିଥିଲା ।

ଆଲୋଚନାର ଏଇ ପର୍ଯ୍ୟାୟରେ ଏକ ଅପରିହାର୍ଯ୍ୟ ପ୍ରଶ୍ନ ଆତ୍ମ ପ୍ରକାଶ କରେ; ସିନେମା ବ୍ୟବସାୟ ଯେଉଁଠି ଏମିତି ଗଳା କଟାକଟି ପର୍ଯ୍ୟାୟରେ ପହଞ୍ଚିଯାଏ; ସେଠାରେ କଳାତ୍ମକ ଚଳଚ୍ଚିତ୍ର ନିର୍ମାଣ କରୁଥିବା ବ୍ୟକ୍ତିଙ୍କର ସ୍ଥାନ କାହିଁ ? ପ୍ରତିକୂଳ ସ୍ରୁଅ କାଟି କଳା ସୃଷ୍ଟି ପାଇଁ ନିର୍ମିତ ହେଉଥିବା ସିନେମା ଭାଗ୍ୟରେ ଏଠାରେ ଘଟେ କ'ଣ ?

୧୯୬୫ରେ ମୃଣାଳ ସେନ୍ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର 'ମାଟିର ମଣିଷ' ବହିଟି ନେଇ ଚଳଚ୍ଚିତ୍ରଟିଏ ନିର୍ମାଣ କଲାବେଳେ, ସେ କାହାଣୀଟିକୁ ଯେପରି ଭାବେ ଯଥା-ଇଚ୍ଛା ଅଦଳ ବଦଳ କରିଦେଲେ, ବର୍ତ୍ତମାନ୍ ତାହା ସମ୍ଭବ ହୋଇ ନ ଥାନ୍ତା । ସିନେମା କାରିଗରୀ ସହ ପରିଚିତ ଥିବା ନିର୍ଦ୍ଦେଶକମାନେ ସେତେବେଳେ ଓଡ଼ିଶାରେ ଆଦୌ ନ ଥିଲେ କହିଲେ ଚଳେ; କିନ୍ତୁ ପରବର୍ଷ ମାନଙ୍କରେ ଏଠାରେ ଅବହାଓ୍ୱାର ଅନେକ ପରିବର୍ତ୍ତନ ଆସିଗଲା । ବ୍ୟବସାୟିକ ଚଳଚ୍ଚିତ୍ର ନିର୍ମାଣ କରି ପାରିବା ଭଳି କୁଶଳୀ ନିର୍ଦ୍ଦେଶକ ତ ଏଠାରେ ଦେଖାଗଲେ; ତା' ସଙ୍ଗେ ସଙ୍ଗେ ଶ୍ରୀ ନିରଦ ମହାପାତ୍ର ଓ ଶ୍ରୀ ମନମୋହନ ମହାପାତ୍ରଙ୍କ ଭଳି ପ୍ରତିଭାବାନ୍ ନିର୍ଦ୍ଦେଶକମାନେ ମଧ୍ୟ ଏଠାରେ ଆତ୍ମ ପ୍ରକାଶ କଲେ । 'ମାଟିର ମଣିଷ' ମସ୍କୋ ଚଳଚ୍ଚିତ୍ର ଉତ୍ସବରେ ପୁରସ୍କୃତ ହେଲେ ବି, ମୃଣାଳ ସେନ୍ ମାଟିର

ମଣିଷକୁ ମାଟି କରିଦେଲେ ବୋଲି ପ୍ରତି ସଚେତନ ଓଡ଼ିଆ ଅନୁଭବ କରନ୍ତି । ତଥାପି ଛାୟାବାଣୀ ପ୍ରତିଷ୍ଠାନର ପାରିବାର ପଣିଆରୁ ଏ ଚିତ୍ରଟି ଅନ୍ତତଃ ବ୍ୟବସାୟିକ ପ୍ରେକ୍ଷାଳୟ ମାନଙ୍କରେ ମୁକ୍ତି ପାଇପାରିଥିଲା । କାଳନ୍ଦୀ ଚରଣଙ୍କ ସାହିତ୍ୟ କୃତିର ମୂଲ୍ୟ ତୁଳନାରେ ମୃଣାଳ ସେନ୍‌ଙ୍କ ସିନେମାକୃତି ଯେତେ ନ୍ୟୁନ ହେଉ କି ନ ହେଉ ବିଷୟ ବସ୍ତୁର ବାସ୍ତବଧର୍ମୀ ଚିତ୍ରାୟନ ଦୃଷ୍ଟିରୁ 'ମାଟିର ମଣିଷ' ଓଡ଼ିଆ ଚଳଚ୍ଚିତ୍ର ଜଗତରେ ଏକ ମାଇଲ୍ ସ୍ତମ୍ଭ । ଗ୍ରାମ୍ୟ ଜୀବନକୁ ରୂପାୟିତ କରିବାରେ ମୃଣାଳ ସେନ୍‌ଙ୍କ ଶୈଳୀ, କେତେକାଂଶରେ ଦୁଇ ପରବର୍ତ୍ତୀ ଉଲ୍ଲେଖଯୋଗ୍ୟ ସିନେମା ସୃଷ୍ଟି, ବିପ୍ଳବ ରାୟ ଚୌଧୁରୀଙ୍କ 'ଚିଲିକାତୀରେ' ଏବଂ ମନମୋହନ ମହାପାତ୍ରଙ୍କ 'ନୀରବ ଝଡ଼'କୁ କେତେକାଂଶରେ ପ୍ରଭାବିତ କରିଥିବା ମନେହୁଏ । 'ନୀରବ ଝଡ଼'ରେ ମଧ 'ମାଟିର ମଣିଷ'ର ହରି ମିଶ୍ରଙ୍କ ଭଳି ଅର୍ଥଗୃଧ୍ନୁ ଖଳ



''ନୀରବ ଝଡ଼''ରେ ଜୟା

ଚରିତ୍ର ମାନେ ଆତ୍ମ-ପ୍ରକାଶ କରିଛନ୍ତି । ତେବେ ଶୈଳୀ ଦୃଷ୍ଟିରୁ ବିପ୍ଳବ ରାୟ ଚୌଧୁରୀ, ମୃଣାଳ ସେନ୍‌ଙ୍କ ଅଧିକ ନିକଟବର୍ତ୍ତୀ; ''ଚିଲିକା ତୀରେ'' ଚିତ୍ରରେ ସେ ଏକ ସିଂହକୁ ପ୍ରତୀକରୂପେ ବ୍ୟବହାର କରିଛନ୍ତି । 'ମାଟିର ମଣିଷ'ରେ ଶ୍ରୀ ସେନ୍ ଗୋଟିଏ ପେଚାକୁ ପ୍ରତୀକରୂପେ ବ୍ୟବହାର କରିଛନ୍ତି । ଉଭୟେ ସେମାନଙ୍କ ସିନେମାରେ କିଛି ଲୋକନୃତ୍ୟ ପ୍ରଦର୍ଶନ କରିଛନ୍ତି । ଉଭୟ ଚଳଚ୍ଚିତ୍ର ଓଡ଼ିଶାର ଗ୍ରାମ୍ୟ ଜୀବନକୁ ଆଧାର କରି ରଚିତ ।

ଗ୍ରାମ୍ୟ ଜୀବନ, ବିଶେଷତଃ ଗାଆଁର ମେହନତି ମଣିଷର ଜୀବନ ପରିବେଷଣ କରିବା ସ୍ପୃହା 'ନୀରବ ଝଡ଼'ରେ ବି ପରିଦୃଷ୍ଟ । ତେବେ ମନମୋହନଙ୍କ ପରିବେଷଣ ଶୈଳୀ ସ୍ୱତନ୍ତ୍ର । ଏ ସିନେମାର ବିଷୟବସ୍ତୁ ମଧ୍ୟ କିଛିଟା ସ୍ୱତନ୍ତ୍ର ଧରଣର । ଆଧୁନିକ ଓଡ଼ିଶାର ପଲ୍ଲୀମାନଙ୍କରୁ ଶହ ଶହ ସଂଖ୍ୟାରେ ଶ୍ରମିକ ଓ କୃଷକ କୁଲିଗିରି କରିବା ପାଇଁ ଅନ୍ୟ ପ୍ରଦେଶମାନଙ୍କୁ ଦୂର ଦୂରାନ୍ତ ସହରକୁ ଯାଆନ୍ତି । ଆମ ଗାଆଁମାନଙ୍କରେ ପର୍ଯ୍ୟାପ୍ତ କାମ ଓ ସମ୍ବଳର ଅଭାବ ଦାଦନ ଶ୍ରମିକ ପରଂପରାକୁ ଜନ୍ମ ଦେଇଛି । ଏହି ଯାତନାମୟ ଜୀବନଯାତ୍ରା ଅନ୍ତରାଳରେ ଥିବା ବାସ୍ତବତାକୁ 'ନୀରବ ଝଡ଼' ଏକ ସ୍ୱକୀୟ ଶୈଳୀରେ ରୂପାୟିତ କରିଛି । ଗୋଟାଏ ଗାଆଁରେ ପରିଦୃଷ୍ଟ ଦାରିଦ୍ର୍ୟ ଓ ବୁଭୁକ୍ଷା ଦର୍ଶାଇବା ପାଇଁ ସିନେମାର ପ୍ରାରମ୍ଭରୁ ହିଁ କେତୋଟି ନାଟକୀୟ ଅଥଚ ମୌଳିକ ଦୃଶ୍ୟ ସର୍ଜନା କରାଯାଇଛି । ଜମିଦାରୀ ପ୍ରଥାର ବିଲୋପ ଘଟିଥିଲେ ମଧ୍ୟ ପୂର୍ବର ଜମିଦାରମାନେ ବର୍ତ୍ତମାନ ମଧ୍ୟ ଆମ ସାମାଜିକ ତଥା ଅର୍ଥନୈତିକ ଜୀବନରେ କିପରି ନବାବ୍‌ଗିରି ଚଳାଇଛନ୍ତି ତାହା ବି ଏ ଚଳଚ୍ଚିତ୍ରରେ ଦର୍ଶାଯାଇଛି ।

ସ୍ୱଳ୍ପ ଜମିଥିବା ଜଣେ କୃଷକର ଜୀବନକୁ କେନ୍ଦ୍ରକରି 'ନୀରବ ଝଡ଼' ନିର୍ମିତ । ଚାଷ ବାସ ଋତୁ ସରିଗଲେ ଜଣେ ବିପତ୍ନୀକ କୃଷକ ମୂଲ ଲାଗି ପରିବାର ଚଳାନ୍ତି । ଘରେ ଏକ ମାତ୍ର ଯୁବତୀ ଝିଅ । ଗାଁରେ ତା'ର ଅନ୍ୟ ଜଣେ ସମଦଶାପନ୍ନ ଦରଦୀ ବଂଧୁ ରହିଛି । ଏହି ଦ୍ୱିତୀୟ କୃଷକ ଅର୍ଥାଭାବରେ ପଡ଼ି ଦାଦନ କୁଲି ହୋଇଛି । ତେବେ ଦାଦନ କୁଲି ଯେଉଁ ଯାତନାମୟ ଅବସ୍ଥାର ସମ୍ମୁଖୀନ ହୁଏ ତାହା ସହ୍ୟ କରିନପାରି ସେ ଲୁଚି ଚାଲି ଆସୁଛି ଆଉ ବଂଧୁ ଆଗରେ ନିର୍ଯ୍ୟାତନା ବୟାନ କରୁଛି ।

ବିପତ୍ନୀକ କୃଷକ ମଧ୍ୟ ବିଭିନ୍ନ ପ୍ରକାରର ଦୁର୍ଯୋଗ ଦେଇ ଗତି କରୁଛି ଏବଂ ଅଭାବରେ ପଡ଼ି ଗାଆଁ ମହାଜନଙ୍କଠାରୁ ଟଙ୍କା ଧାର କରୁଛି । ଅର୍ଥ ଥଳି ଧରି ବସିଥିବା ମହାଜନ ଅର୍ଥ ଓ ପାରିବାରିକ ପରଂପରା ବଳରେ ଗାଆଁର ନୀତି ନିୟମ ନିର୍ଦ୍ଧାରକ, ଏପରିକି ନିୟାମକ ମଧ୍ୟ । କୃଷକର ଯୁବତୀ ଝିଅର ଜଣେ ଗ୍ରାମ୍ୟ ଯୁବକ ସହ ପ୍ରେମ ସଂପର୍କ ଯେମିତି ପ୍ରଚାର ହୋଇଛି, ସମାଜର ଏହି ବଡ଼ପଣ୍ଡା ତା' ପରିବାରକୁ ଏକଘରକିଆର ଆଦେଶ ଦିଅନ୍ତି; ଋଣ ପରିଶୋଧ ନ କରିଥିବା ଆଳରେ ତା'ର ଜମି ଅକ୍ତିଆର କରନ୍ତି । ତରୁଣୀ ଝିଅକୁ ନେଇ କୃଷକ ଗାଆଁ ଛାଡ଼େ ।

ଆମେ ଯାହାକୁ ସମାଜ କହୁ ତାହା ବ୍ୟକ୍ତି ଜୀବନକୁ କବଳିତ କରିବାକୁ କିପରି ବ୍ୟଗ୍ର, ତା' ମଧ୍ଯ 'ନୀରବ ଝଡ଼'ର ଅନ୍ୟତମ ବକ୍ତବ୍ୟ। ମନମୋହନଙ୍କ ଏ ସିନେମାର କେତୋଟି ଦୃଶ୍ୟ ସହଜରେ ଭୁଲି ହୁଏ ନାହିଁ। ଅୟମାରମ୍ଭରେ ଦେଖାଯାଇଛି ଗାଆଁର ସମସ୍ତ ସୁସ୍ଥ ମରଦ ପିତ୍ତଳ ଗରାମାନଙ୍କରେ ପାଣିନେଇ ସାପ କାମୁଡ଼ାରେ ଆହତ ଜଣେ ଲୋକ ଉପରେ ଢାଳିବାରେ ବ୍ୟସ୍ତ। ପରେ ଗାଁ ଲୋକ ଜାଣି ପାରୁଛନ୍ତି ଯେ ପିତ୍ତଳ ଗରାଗୁଡ଼ିକ ମଧ୍ଯରୁ ଗୋଟାଏ ଚୋରୀ ହୋଇ ଯାଇଛି ଏବଂ ଜଣେ ଅନାହାରକ୍ଲିଷ୍ଟ ବ୍ୟକ୍ତି ପେଟ ଦାଉରେ ତାହା ନେଇ ଯାଇଥିଲା। ଗାଁ ମହାଜନ ଏହାର ନିଶାପ କରି ଲୋକଟିକୁ ଚାବୁକ୍ ମାଡ଼ର ଶାସ୍ତି ବିଧାନ କରୁଛନ୍ତି। ଏହି ଦୃଶ୍ୟଦ୍ୱାରା ଗାଁଆରେ ଥିବା ଦାରିଦ୍ର୍ୟ ଓ ସେଇ ସୁଯୋଗରେ ବଡ଼ଲୋକ ହୋଇଥିବା ମହାଜନ ଉଭୟ ଉପସ୍ଥାପିତ ହୋଇପାରିଛନ୍ତି।

କୃଷକ କନ୍ୟାର ପ୍ରେମ ବ୍ୟାପାର ସମ୍ପର୍କୀୟ ଗୋଟାଏ ଦୃଶ୍ୟ ମଧ୍ଯ ଚମତ୍କାର ହୋଇଛି। ଗାଆଁର ନୀତିବାଗୀଶମାନଙ୍କ ଦୃଷ୍ଟିରେ ପ୍ରେମ ଯେହେତୁ ଖୁବ୍ ଗୋଟାଏ ନୀତିହୀନ ଘଟଣା, ତାର ନିଶାପଭାର ମଧ୍ଯ ସେହି ମହାଜନଙ୍କ ଉପରେ ହିଁ ନ୍ୟସ୍ତ ହୋଇଛି। ନିଶାପ ସ୍ଥଳୀକୁ ନ ଯାଇ ଘରେ ଥିବା ଅଭିଆଡ଼ି ଝିଅକୁ କୃଷକ ବାପା ଯେତେବେଳେ ଏ ବିଷୟରେ ପଚାରୁଛନ୍ତି, ଝିଅ ଅଭିଯୋଗରେ ସତ୍ୟତା ନ ଥିବା କହୁଛି। କିନ୍ତୁ ମୁଖିଆମାନେ ମିଳିତ ହୋଇ ଯେତେବେଳେ ଅଭିଯୋଗ ନେଇ ପଚାରିବାକୁ ଆସୁଛନ୍ତି, ଭୟଭୀତ ଝିଅ ଯେଉଁ ପ୍ରତିକ୍ରିୟା ପ୍ରକାଶ କରିଛି ସେଥିରେ ଅଭିଯୋଗର ସତ୍ୟତା ଆପେ ଆପେ ପ୍ରକାଶିତ ହୋଇ ଯାଉଛି। ଝିଅ ଭୂମିକାରେ ରୋଲ୍ କରିଥିବା ଅଭିନେତ୍ରୀ ଜୟା ସ୍ୱାମୀଙ୍କ କଳାକାର ଜୀବନର ଶ୍ରେଷ୍ଠ ଅଭିନୟ ସମ୍ଭବତଃ ସେଇ ଦୃଶ୍ୟଟି।

ପ୍ରଧାନତଃ ଦାରିଦ୍ର୍ୟ ଓ ଶୋଷଣ ପ୍ରଦର୍ଶିତ କରିଥିବା 'ନୀରବ ଝଡ଼'ର ଶେଷ ଦୃଶ୍ୟଟିରେ ନିର୍ଦ୍ଦେଶକ କିଛିଟା ଆଶାର ଝଲକ ଓ ଝଙ୍କାର ପରଷିଛନ୍ତି। ଗ୍ରାମ୍ୟ ବିତାଡ଼ିତ କୃଷକ ସେ ଅଞ୍ଚଳ ଛାଡ଼ି ଚାଲିଯିବା ପାଇଁ ରେଲ୍ ଷ୍ଟେସନ୍‌ରେ ବସିଛି ଝିଅ ସହ। ସେଠାରେ ସେ ନିଜ ଆଶା ବ୍ୟକ୍ତ କରିଛି ଯେ, ସେମାନେ ଗାଆଁକୁ ଦିନେ ନା ଦିନେ ନିଶ୍ଚୟ ଫେରିଯିବେ। ଆଶା ସଂଚାରୀ ସଂଗୀତ ସହ ସିନେମା ପରିସମାପ୍ତ ଘଟିଛି।

୧୯୮୩ର ଶ୍ରେଷ୍ଠ ଓଡ଼ିଆ ଚଳଚ୍ଚିତ୍ର ରୂପେ ଭାରତ ସରକାର ଜାତୀୟସ୍ତରରେ ଦେଉଥିବା ପୁରସ୍କାର ହାସଲ କରିଥିଲା 'ନୀରବ ଝଡ଼'। ଉକ୍ତ ବର୍ଷ ଶ୍ରେଷ୍ଠ କଳାଧଳା ଫୋଟଗ୍ରାଫି ପୁରସ୍କାର ମଧ୍ଯ 'ନୀରବ ଝଡ଼' ପାଇଁ ପ୍ରଦାନ କରାଯାଇଥିଲା। ହେମନ୍ତ ଦାସ, ମଣିମାଳା, ନିରଞ୍ଜନ ପଟ୍ଟନାୟକ, ଅସୀମ ବସୁ, ବଟକୃଷ୍ଣ ତ୍ରିପାଠୀ ପ୍ରଭୃତି ଭଲ ଅଭିନୟ କରି ଏ ସିନେମାର ମୂଲ୍ୟ ବୃଦ୍ଧି କରିଛନ୍ତି। ସାମଗ୍ରିକ ଗଠନ ରୂପରେ କିଛିଟା ତ୍ରୁଟି ସତ୍ତ୍ୱେ 'ନୀରବ ଝଡ଼' ଏକ ମୂଲ୍ୟବାନ ଚଳଚ୍ଚିତ୍ର ସର୍ଜନା।

'ନୀରବ ଝଡ଼' ଯେଉଁ ବର୍ଷ ଆତ୍ମ-ପ୍ରକାଶ କଲା ସେହି ବର୍ଷଟି ଓଡ଼ିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସର ରୂପେ ପାଳିତ ହୋଇଥିଲା । ଏ ଉପଲକ୍ଷେ କଟକରେ ଏକ ଆକର୍ଷଣୀୟ ସିନେମା ଉତ୍ସବର ଆୟୋଜନ କରାଯାଇଥିଲା । ଗ୍ରାଣ୍ଡ୍ ସିନେମାରେ ଅନୁଷ୍ଠିତ ବହୁ ଦିନବ୍ୟାପୀ ଏହି ଉତ୍ସବର ପ୍ରାରମ୍ଭିକ ରଜନୀଟି ଥିଲା ସବୁଠୁ ଅଧିକ ଆକର୍ଷଣୀୟ । ପଚାଶ ବର୍ଷ ମଧ୍ୟରେ ଓଡ଼ିଆ ସିନେମାର ସଂଗୀତ କିପରି ଗତିକରିଛି ତା'ର ପରିଚୟ ଦେବା ପାଇଁ କିଛି ପ୍ରତିନିଧି-ମୂଳକ ଚଳଚ୍ଚିତ୍ର ଗୀତ ବିଭିନ୍ନ ସଂଗୀତ ନିର୍ଦ୍ଦେଶକଙ୍କ ଦ୍ୱାରା ପରିବେଷିତ ହୋଇଥିଲା । ସେହି ଉତ୍ସବ ସମୟରେ ହିଁ ପ୍ରଦର୍ଶିତ ହୋଇଥିଲା ଓଡ଼ିଆ ସିନେମା ଜଗତର ଅନ୍ୟ ଦୁଇଟି ସ୍ମରଣୀୟ ସୃଷ୍ଟି—ଶ୍ରୀ ନିରଦ ମହାପାତ୍ରଙ୍କ 'ମାୟା ମିରିଗ' ଏବଂ ଶ୍ରୀ ସାଗୀର ଅହମଦ୍‌ଙ୍କ 'ଧାରେ ଆଲୁଅ' । ଦକ୍ଷତାରେ ତାରତମ୍ୟ ପରିଲକ୍ଷିତ ହୋଇଥିଲେ ବି ଉଭୟ ନିର୍ଦ୍ଦେଶକ ନିଜ ନିଜ କୃତିରେ ସତ୍ୟ ଉଦ୍‌ଘାଟନରେ ବ୍ରତୀ ହୋଇଛନ୍ତି ।

ଶ୍ରୀ ନିରଦ ମହାପାତ୍ରଙ୍କ ନିର୍ମିତ ''ମାୟା ମିରିଗ'' ଓଡ଼ିଆ ଚଳଚ୍ଚିତ୍ର ପାଇଁ ସର୍ବାଧିକ ସୁଖ୍ୟାତି ଆଣିବାରେ ସକ୍ଷମ ହୋଇଛି । ୧୯୭୧ ସାଲରେ ପୁନାସ୍ଥିତ ଭାରତର ସିନେମା ଓ ଟେଲିଭିଜନ୍ ପ୍ରତିଷ୍ଠାନରୁ ପାସ୍ କରିଥିବା ଶ୍ରୀ ମହାପାତ୍ର କିଛି ବର୍ଷ ପାଇଁ ସେହି ଅନୁଷ୍ଠାନରେ ଶିକ୍ଷକତା କରିଥିଲେ । ଓଡ଼ିଶାରେ ''ସିନେଷ୍ଟାକ୍‌ସି'' ସିନେମା ସୋସାଇଟି ସ୍ଥାପନରେ ମଧ୍ୟ ସେ ଅଗ୍ରଣୀ ଭୂମିକା ନେଇଥିଲେ । ବହୁ ବର୍ଷର ଉଦ୍ୟମ ପରେ ଶ୍ରୀ ମହାପାତ୍ର ''ମାୟା ମିରିଗ'' ନିର୍ମାଣ କରିବାରେ ସକ୍ଷମ ହୋଇଥିଲେ । ଏ ସିନେମାର ଅନ୍ୟତମ ବିଶେଷତ୍ୱ ହେଲା ଯେ, ସେଥିରେ ମୁଖ୍ୟ ଭୂମିକାମାନଙ୍କରେ ପେଷାଦାର କଳାକାରମାନେ ଅଭିନୟ କରି ନଥିଲେ, ଅଥଚ ପ୍ରାୟ ସମସ୍ତେ ନିଖୁଣ ଅଭିନୟ କରିଛନ୍ତି ।



''ମାୟା ମିରିଗ''ରେ ମନସ୍ୱିନି ରାୟ

"ମାୟା ମିରିଗ" ସଂପୂର୍ଣ୍ଣ ରୂପେ ନିର୍ଦ୍ଦେଶକଙ୍କ ସିନେମା । ଯୁଗ ଯୁଗ ଧରି ଭାରତୀୟ ସମାଜରେ ତିଷ୍ଠିଥିବା ଏକାନ୍ନବର୍ତ୍ତୀ ପରିବାର ଗୁଡ଼ିକ ବିଂଶ ଶତାବ୍ଦୀରେ ବଢ଼ୁଥିବା ଆଧୁନିକତାର ହାଓ୍ୱାରେ କିପରି ଭାଙ୍ଗି ପଡୁଛି ତାହା ଗୋଟିଏ କ୍ରମବର୍ଦ୍ଧିଷ୍ଣୁ ମଧ୍ୟବିତ୍ତ ପରିବାରର ଜୀବନ ଚିତ୍ରଦ୍ୱାରା "ମାୟା ମିରିଗ" ଦର୍ଶାଇଛି । ଗୋଟିଏ ଦୃଷ୍ଟି କୋଣରୁ ୧୯୩୨ରେ ପ୍ରକାଶିତ "ମାଟିର ମଣିଷ" ଉପନ୍ୟାସର ବିଷୟ ବସ୍ତୁ ମଧ୍ୟ ଏକ ଭାଙ୍ଗି ପଡୁଥିବା ପରିବାରର ଚିତ୍ର ପଦାନ କରିଛି । କିନ୍ତୁ "ମାଟିର ମଣିଷ"ର ପୃଷ୍ଠ ପଟ୍ଟ ପଲ୍ଲୀଜୀବନ; "ମାୟା ମିରିଗ" ସହର ପୃଷ୍ଠପଟ୍ଟରେ ରୂପାୟିତ । ଗାନ୍ଧୀ ଦର୍ଶନଦ୍ୱାରା ମୂଲ୍ୟବୋଧ ରକ୍ଷା ପାଇଁ କ୍ଳେଶ ବରଣ–"ମାଟିର ମଣିଷ"କୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇଛି । ଦଶରଥଙ୍କ ସତ୍ୟରକ୍ଷା ପାଇଁ ଶ୍ରୀରାମ ବନବାସ ଯିବା ପରି, ବାପା ଶାମ ପ୍ରଧାନର କଥା ("ଘର ମଝିରେ ପାଚେରୀ ଉଠିବନି") ରଖିବା ପାଇଁ ବରଜୁ ପ୍ରଧାନ ଘର ଛାଡ଼ି ଚାଲିଯାଇଛି । "ମାୟା ମିରିଗ"ରେ ଅବଶ୍ୟ ସେ ପ୍ରକାର ଚାରିତ୍ରିକ ମହନୀୟତା ନାହିଁ; କିନ୍ତୁ କଳାତ୍ମକ ଚିତ୍ରାୟନ ସିନେମାଟିକୁ ଉନ୍ନତ କୋଟିକୁ ନେଇଛି ।

ଭାରତ ସରକାର ୧୯୮୩ରେ ଜାତୀୟ ସ୍ତରରେ ଦେଇଥିବା ସିନେମା ପୁରସ୍କାର ଯେଉଁ କୃତି ଚଳଚ୍ଚିତ୍ର ଗୁଡ଼ିକ ପାଇଁ ଦେଇଥିଲେ "ମାୟା ମିରିଗ" ସେଗୁଡ଼ିକ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ସେଇ ବର୍ଷର ଦ୍ୱିତୀୟ ଶ୍ରେଷ୍ଠ ଚଳଚ୍ଚିତ୍ରର ସମ୍ମାନ ହାସଲ କରିଥିଲା "ମାୟା ମିରିଗ" (ଶ୍ରେଷ୍ଠ ଚଳଚ୍ଚିତ୍ର ରୂପେ ପୁରସ୍କୃତ ହୋଇଥିଲା ସଂସ୍କୃତ ଭାଷାରେ ନିର୍ମିତ "ଆଦି ଶଙ୍କରାଚାର୍ଯ୍ୟ") । ୟୁରୋପ୍‌ର କାର୍ଲୋଭି ଭେରିରେ "ଜଣେ ନିର୍ଦ୍ଦେଶକଙ୍କ ପ୍ରଥମ ସିନେମା" ବିଭାଗରେ ମଧ୍ୟ ତାହା ପୁରସ୍କୃତ ହୋଇଥିଲା ।

ପୁନାର ସିନେମା ଓ ଟେଲିଭିଜନ ପ୍ରତିଷ୍ଠାନର ଅନ୍ୟତମ ଶିକ୍ଷକ ଶ୍ରୀ ସାଗିର ଅହମଦ୍ ବ୍ୟକ୍ତିଗତ ଉଦ୍ୟମରେ "ଧାରେ ଆଲୁଅ" ନିର୍ମାଣ କରିଥିଲେ । ଅଷ୍ଟମ ଦଶକରେ ଓଡ଼ିଶାରେ ପରିଦୃଷ୍ଟ କିଛି ସାମାଜିକ ବାସ୍ତବତା ଏଥିରେ ସେ ପ୍ରତିଫଳିତ କରିବାକୁ ଚେଷ୍ଟା କରିଛନ୍ତି । ୧୯୮୪ରେ ବମ୍ବେରେ ଅନୁଷ୍ଠିତ ଭାରତର ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବରେ "ଧାରେ ଆଲୁଅ" ଓ "ମାୟା ମିରିଗ" ପ୍ରଦର୍ଶିତ ହୋଇଥିଲା । ଭାରତ ଆୟୋଜନ କରୁଥିବା ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ ମାନଙ୍କରେ ୧୯୮୪ ଯାଏଁ ଓଡ଼ିଆ ସିନେମା ମାନଙ୍କର ସ୍ଥାନ ନ ଥିଲା କହିଲେ ଚଳେ । ସେହି ବର୍ଷ "ଭାରତୀୟ ପାନୋରାମା" ବିଭାଗରେ ପ୍ରଥମ ଥର ପାଇଁ ଉପରେ କଥିତ ଦୁଇ ସିନେମା ଅନ୍ତର୍ଭୁକ୍ତ ହେବାର ଗୌରବ ଅର୍ଜନ କରିଥିଲା ଓ ଉଭୟ ସିନେମା ସମାଲୋଚକମାନଙ୍କର ସପ୍ରଶଂସ ଦୃଷ୍ଟି ଆକର୍ଷଣ କରି ପାରିଥିଲେ ।

ଏଣୁ ଓଡ଼ିଶାରେ ଦୁଇ ସ୍ତରର ନିର୍ଦ୍ଦେଶକ ନବମ ଦଶକରେ ଆତ୍ମପ୍ରକାଶ କରିବାରେ ସକ୍ଷମ ହୋଇଥିଲେ । ନିଛକ ମନୋରଂଜନଧର୍ମୀ ଚିତ୍ର ନିର୍ମାଣରେ ଶ୍ରୀ ପ୍ରଶାନ୍ତ ନନ୍ଦ, ଶ୍ରୀ ଶିଶିର ମିଶ୍ର ପ୍ରଭୃତି ନିର୍ଦ୍ଦେଶକ ସଫଳ ହୋଇଥିଲା ବେଳେ ବାସ୍ତବ ଧର୍ମୀ ସିନେମା

ନିର୍ମାଣରେ ବ୍ରତୀଥିବା ସିନେମା ନିର୍ଦ୍ଦେଶକମାନଙ୍କ ଦ୍ୱାରା "ଶୀତ ରାତି", "ଧାରେ ଆଲୁଅ" ଓ "ମାୟା ମିରିଗ" ପ୍ରସ୍ତୁତ ହୋଇଥିଲା । ତେବେ ପ୍ରଥମ ଶ୍ରେଣୀର ସିନେମା ନିର୍ଦ୍ଦେଶକ ମାନଙ୍କ ଚଳଚ୍ଚିତ୍ର ପାଇଁ ଓଡ଼ିଶାରେ ପ୍ରଦର୍ଶନ କ୍ଷେତ୍ର ରହିଥିବା ବେଳେ ଦ୍ୱିତୀୟୋକ୍ତ ନିର୍ଦ୍ଦେଶକମାନଙ୍କ ପାଇଁ ସେ କ୍ଷେତ୍ର ଆଦୌ ନ ଥିଲା । ଏପରି କ୍ଷେତ୍ରରେ କଳାତ୍ମକ ସୃଷ୍ଟି ଗୁଡ଼ିକ ପାଇଁ କିଛି ଉଦ୍ୟମ ଅବଶ୍ୟ ହୋଇଥିଲା ଯଦିଓ ସେହି ଉଦ୍ୟମ ବିଶେଷ ଅଗ୍ରଗତି କରିପାରି ନ ଥିଲା । ଅଷ୍ଟମ ଦଶକ ମଧ୍ୟ-ଭାଗରେ ଭୁବନେଶ୍ୱରରେ ସ୍ଥାପିତ ହୋଇ କିଛି କାଳ ସକ୍ରିୟ ହୋଇଥିବା "ସିନେଟାକ୍‌ସୀ" ଥିଲା ଏକ ସିନେମା ସୋସାଇଟି । ଭଲମାନର ସିନେମା ପାଇଁ ଆଗ୍ରହ ସୃଷ୍ଟି କରିବାରେ ଏହି ସୋସାଇଟି କିଛି ମାତ୍ରାରେ ଉଦ୍ୟମ କରିଥିଲା । କିନ୍ତୁ ଏ ଉଦ୍ୟମ ଦୀର୍ଘସ୍ଥାୟୀ ହୋଇ ନ ଥିଲା; ପୁଣି ଏହାର ପ୍ରସାର ଓଡ଼ିଶାର ଆୟତନ ତୁଳନାରେ ଅତି ସୀମିତ ଥିଲା ।

ଓଡ଼ିଶାରେ ଅଧିକାଂଶ ସିନେମା ହଲ୍ ସହରମାନଙ୍କରେ ରହି ଆସିଛି । ଓଡ଼ିଶା ଗ୍ରାମ ବହୁଳ; ଏବଂ ୧୯୮୧ ଜନ ଗଣନା ଅନୁଯାୟୀ ଓଡ଼ିଶାର ଜନସଂଖ୍ୟା ୨ କୋଟି ୬୨ ଲକ୍ଷ ମଧ୍ୟରୁ ମାତ୍ର ୩୧ ଲକ୍ଷ ଲୋକ ସହର ଗୁଡ଼ିକରେ ବାସ କରୁଥିଲେ । ଏଣୁ ଓଡ଼ିଶାର ବିପୁଳ ସଂଖ୍ୟକ ଲୋକଙ୍କ ପାଇଁ ସିନେମା ନାମକ ମନୋରଂଜନ ହାତ ପାଆନ୍ତାରେ ନାହିଁ । ଏ ପରିସ୍ଥିତିରେ, ୧୦ ଲକ୍ଷ ବା ତଦୂର୍ଦ୍ଧ ଟଙ୍କା ବ୍ୟୟରେ ନିର୍ମିତ ହେଉଥିବା ରଂଗୀନ୍ ଛବି ଗୁଡ଼ିକ ସେମାନଙ୍କ ବିନିଯୋଗ ଅର୍ଥ, ଫେରି ପାଇବା ସମୟ ସାପେକ୍ଷ ହୋଇ ଉଠୁଛି । ପ୍ରକୃତରେ ବର୍ତ୍ତମାନିକ ଓଡ଼ିଶାରେ ୧,୦୦୦ରୁ ଅଧିକ ସିନେମା ହଲ୍ ରହିବା କଥା କାରଣ ପ୍ରତି ୨୫,୦୦୦ ଲୋକଙ୍କ ପାଇଁ ଗୋଟିଏ ସିନେମା ହଲ୍ ରହିବା ହିଁ ଆଦର୍ଶ । (୧୯୮୧ ସାଲର ଗୋଟିଏ ଗଣନା ଅନୁଯାୟୀ ପଡ଼ୋଶୀ ଆନ୍ଧ୍ର ପ୍ରଦେଶର ସିନେମା ହଲ୍ ସଂଖ୍ୟା ଥିଲା, ୧୯୦୩) । ସାଂପ୍ରତିକ ଯୁଗରେ ଭ୍ରାମ୍ୟମାଣ ସିନେମା ପାଇଁ ଓଡ଼ିଶାରେ କେହି ଉଦ୍ୟମ କରିଥିବା ଜଣାଯାଇ ନାହିଁ । କିନ୍ତୁ ଏ ପ୍ରଦେଶରେ ଏଥିପାଇଁ ପ୍ରକୃଷ୍ଟ କ୍ଷେତ୍ର ରହିଥିବା ମନେହୁଏ ।)

କଳାତ୍ମକ ସିନେମା ବା ନୂତନ-ଧର୍ମୀ (Off-beat) ସିନେମାର ସଫଳତା ପାଇଁ କିନ୍ତୁ କେବଳ ହଲ ସଂଖ୍ୟା ବଢ଼ିବା ଯଥେଷ୍ଟ ନୁହେଁ । ୧୯୮୦ ସାଲ୍‌ରୁ ଓଡ଼ିଆ ଚିତ୍ର ନିର୍ମାତାମାନେ ରଂଗୀନ୍ ସିନେମା ଉପରେ ଜୋର୍ ଦେବା ଆରମ୍ଭ କରିଛନ୍ତି । ଉକ୍ତ ବର୍ଷ ସର୍ବମୋଟ ଆଠ ଗୋଟି ସିନେମା ମୁକ୍ତିଲାଭ କରିଥିଲା । ସେଥିରୁ ଚାରୋଟି ଥିଲା ରଂଗୀନ୍; ଏ ଗୁଡ଼ିକ ହେଲା—"ବଳୀଦାନ", "ଶ୍ରୀକୃଷ୍ଣଙ୍କ ରାସଲୀଳା", "ଶ୍ରୀ ଜଗନ୍ନାଥ" ଓ "ମଥୁରା ବିଜୟ" । ପରବର୍ତ୍ତୀ ବର୍ଷ ସର୍ବମୋଟ ୧୩ଟି ଛବି ମୁକ୍ତି ପାଇଲା; ଏଥିରୁ ଛଅ ଗୋଟି ଛବି ରଂଗୀନ୍ ଓ ଦୁଇଟି ଆଂଶିକ ରଂଗୀନ୍ ହୋଇଥିଲା । ୧୯୮୧ରେ ସର୍ବମୋଟ ୧୦ଟି ସିନେମା ମୁକ୍ତି ଲାଭକଲା, ସେଥିରୁ ଆଠଟି ସିନେମା ଥିଲା ରଂଗୀନ୍ । ୧୯୮୨ର ଛଅଟି ସିନେମା ମଧ୍ୟରୁ ପାଞ୍ଚଟି ଥିଲା ରଂଗୀନ୍ । ୧୯୮୩ ସାଲର ୧୦ ସିନେମା ମଧ୍ୟରୁ

ସାତୋଟି ରଂଗୀନ୍ ହୋଇଥିଲା । ଏହା ନିଶ୍ଚୟ ଏକ ଆଖି ଦୃଶିଆ ଅଗ୍ରଗତି ।

ସେହିପରି ଓଡ଼ିଆ ସିନେମା କ୍ଷେତ୍ରରେ ଏକ ଆଖି ଦୃଶିଆ ପଶ୍ଚାତ୍ ଗତି ମଧ୍ୟ ଏତେବେଳେ ପରିଲକ୍ଷିତ ହେଲା; ତା ହେଲା ଓଡ଼ିଆ ସିନେମାମାନଙ୍କରୁ ଓଡ଼ିଆ ଗାୟିକା ମାନଙ୍କର କ୍ରମଃ ଅପସାରଣ । ଓଡ଼ିଆ ସିନେମାର ପ୍ରଚ୍ଛଦପଟ ଗାୟିକା ଭାବରେ ଏଣିକି ଅଣ-ଓଡ଼ିଆ ଗାୟିକାମାନଙ୍କର କଣ୍ଠସ୍ୱର ହିଁ ଶୁଣାଗଲା । ପ୍ରଚ୍ଛଦପଟ ଗାୟିକା ଭାବରେ ଭୁବନେଶ୍ୱରୀ ମିଶ୍ର, ତୃପ୍ତି ଦାସ ଓ ଗୀତା ପଟ୍ଟନାୟକ ଏତେବେଳକୁ ସଫଳତା ହାସଲ କରିଥିଲେ ମଧ୍ୟ, ଏମାନେ ଅଧିକରୁ ଅଧିକ ବାଦ୍ ପଡ଼ିଲେ । ଏହାର କାରଣ, କଳିଙ୍ଗ ଷ୍ଟୁଡ଼ିଓରେ ଗୀତ ରେକଡ଼ିଂ ବ୍ୟବସ୍ଥା ଥିଲେ ମଧ୍ୟ, ଓଡ଼ିଶାରେ ଆର୍କେଷ୍ଟ୍ରା ପାଇଁ ଯଥେଷ୍ଟ ଯନ୍ତ୍ର-ସଂଗୀତ ଶିଳ୍ପୀ ନ ଥିଲେ । ଗୋଟିଏ ଗୀତ ରେକଡ଼ିଂ ପାଇଁ ଅତି କମ୍‌ରେ ୩୦ ଜଣ ଯନ୍ତ୍ର ସଂଗୀତ ଶିଳ୍ପୀଙ୍କର ଆବଶ୍ୟକତା ପଡ଼େ । ବିଭିନ୍ନ ଯନ୍ତ୍ର ଉପରେ ଦକ୍ଷତା ହାସଲ କରିଥିବା ସଂଗୀତ ଶିଳ୍ପୀଙ୍କର ଏଠାରେ ଅଭାବ ଥିଲା । ଏଣୁ ଓଡ଼ିଆ ଚିତ୍ର ପାଇଁ ଗୀତ ରେକଡ଼ିଂ ପୂର୍ବଭଳି ମାଡ୍ରାସ କିମ୍ବା ବମ୍ବେରେ ହେଲା ଓ ବେଳେବେଳେ କଲିକତାରେ ହେଲା । ଏଇ ଦୂର ଦୂରାନ୍ତର ସହର ଗୁଡ଼ିକ ଓଡ଼ିଆ ଗାୟିକାମାନଙ୍କୁ ନେବାର ବ୍ୟବସ୍ଥା ପ୍ରଯୋଜକମାନେ କରୁ ନଥିଲେ । ଏ ସଂକ୍ରାନ୍ତରେ ସୁଗାୟିକା ତୃପ୍ତି ଦାସ ଏଇ ଲେଖକର ସଂପାଦନାରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା ''ସୁବିଚାର'' ପତ୍ରିକାରେ ଯାହା ଲେଖିଥିଲେ, ଏଠାରେ ଉଲ୍ଲେଖ କରାଯାଇ ପାରେ : ''କେହି କେହି ନିର୍ଦ୍ଦେଶକ କହନ୍ତି ଅଣ-ଓଡ଼ିଆ ଗାୟିକାମାନଙ୍କ ପରି ଓଡ଼ିଶାରେ ଗାୟିକା ନାହାନ୍ତି । ଅଣ-ଓଡ଼ିଆ ଗାୟିକାମାନେ କ'ଣ କିଛି ଭିନ୍ନ ଧାତୁରେ ଗଢ଼ା ? ଯଦି ଓଡ଼ିଆ ଗାୟିକାମାନେ ସୁଯୋଗ ପାଆନ୍ତେ, ସେମାନେ ମଧ୍ୟ ଅଣ ଓଡ଼ିଆ ଗାୟିକାଙ୍କ ସମକକ୍ଷ ବା ତାଠୁ ଉଚ୍ଚକୁ ଯାଇ ପାରନ୍ତେ ବୋଲି ମୋର ମତ । କେବଳ ତତ୍ତ୍ୱାବଧାରକ (escort) ସମସ୍ୟାରୁ ନିଜ ତରଫରୁ ମୋତେ କେତୋଟି ଚଳଚ୍ଚିତ୍ର ଛାଡ଼ିବାକୁ ହୋଇଛି । ପ୍ରଯୋଜକମାନେ (ଖର୍ଚ୍ଚ ଭୟରେ) ସାଙ୍ଗରେ 'ଏସ୍କର୍ଟ' ଦେବାକୁ ପ୍ରସ୍ତୁତ ନୁହନ୍ତି । ନିର୍ମାତାମାନେ ଯଦି ବ୍ୟବସାୟିକ ଦୃଷ୍ଟିକୋଣ ଏତେଟା ସଙ୍କୁଚିତ ନ କରି ବରଂ ସମ୍ପୂର୍ଣ୍ଣ ଓଡ଼ିଆ ଧର୍ମୀ ଚଳଚ୍ଚିତ୍ର ପ୍ରସ୍ତୁତ କରନ୍ତେ, ତେବେ ଓଡ଼ିଆ ଗାୟିକାମାନଙ୍କ ଉନ୍ନତି ଏମିତି ବାଧାପ୍ରାପ୍ତ ହୁଅନ୍ତାନି । ଦ୍ୱିତୀୟତଃ, ନିର୍ଦ୍ଦେଶକମାନେ ଯଦି ଓଡ଼ିଆ ଗାୟିକାମାନଙ୍କର ଅପରିପକ୍ୱ କଣ୍ଠକୁ ନିର୍ଦ୍ଦେଶନା ଦ୍ୱାରା ପରିପକ୍ୱ କରିପାରନ୍ତେ ତା'ହେଲେ ତାଙ୍କ ନିର୍ଦ୍ଦେଶନା ବାହାଦୂରିର ଚାହିଦା ବଢ଼ନ୍ତା । କିନ୍ତୁ ଅଣ-ଓଡ଼ିଆ ଗାୟିକାମାନଙ୍କୁ ନିର୍ଦ୍ଦେଶନା ଦେବାରେ ବାହାଦୂରି ବିଶେଷ ଅଛି ବୋଲି ମୋର ମନେହୁଏନି ।''

ଓଡ଼ିଆ ଚଳଚ୍ଚିତ୍ରର ଅଧିକାଂଶ ସଂଗୀତ ନିର୍ଦ୍ଦେଶକ ବର୍ତ୍ତମାନ ସୁଦ୍ଧା ସିନେମାରେ ଦିଆଯାଉଥିବା ପୂରା ସଂଗୀତର ନିର୍ଦ୍ଦେଶକ ନୁହନ୍ତି; ଅଧା ସଂଗୀତରେ ହିଁ ନିର୍ଦ୍ଦେଶକ ଅର୍ଥାତ୍ ଏମାନେ ଗୀତ ଗୁଡ଼ିକରେ ହିଁ ନିର୍ଦ୍ଦେଶନା ଦିଅନ୍ତି; ପୃଷ୍ଠପଟ ସଂଗୀତର ନିର୍ଦ୍ଦେଶନା

ଏ ସଂଗୀତ ନିର୍ଦ୍ଦେଶକମାନେ ଦିଅନ୍ତିନି । ଚଳଚ୍ଚିତ୍ର ସଂଗୀତ ନିର୍ଦ୍ଦେଶକ ଭାବରେ ଖ୍ୟାତି ପ୍ରାପ୍ତ ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲ କର, ବାସୁଦେବ ରଥ ଓ ସରୋଜ ପଟ୍ଟନାୟକ କେହି ଜଣେ ମଧ ଗୋଟିଏ ବି ଚଳଚ୍ଚିତ୍ରର ପୃଷ୍ଠପଟ୍ଟ ସଂଗୀତ ସେତେବେଳେ ରଚନା କରୁ ନ ଥିଲେ ।

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଗତ ଅନେକ ବର୍ଷ ହେଲା (୧୯୭୨ ସାଲରୁ) ଚଳଚ୍ଚିତ୍ରର ଉତ୍କର୍ଷତା ନାମରେ ଏକାଧିକ ପୁରସ୍କାର ବିତରଣ କରୁଛନ୍ତି । କିନ୍ତୁ ଓଡ଼ିଶାରେ ବିଧିବଦ୍ଧ ମୂଲ୍ୟାୟନ ବୋଲି କିଛି ନଥିବାରୁ ଏଠାରେ ଉତ୍କର୍ଷତା ବା ତାର ଅଭାବ ବିଷୟରେ ସଚେତନତା ମଧ ସର୍ବନିମ୍ନ । ପୁରସ୍କାର ଦେଉଥିବା ବିଚାରକ ମଣ୍ଡଳୀରେ ଏଣୁ ବିଶେଷଜ୍ଞମାନେ ରହୁ ନ ଥିଲେ; ରହୁଥିଲେ କୌଣସି ନା କୌଣସି କ୍ଷେତ୍ରରେ ପ୍ରଭାବ ବିସ୍ତାର କରିପାରିଥିବା ବ୍ୟକ୍ତିବୃନ୍ଦ । ଏଣୁ ରାଜ୍ୟ ସରକାରଙ୍କ ଏ ପୁରସ୍କାର ଗୁଡ଼ିକକୁ ଆଦୌ ଗୁରୁତ୍ୱ ଦେବା ସମ୍ଭବ ହେଉ ନ ଥିଲା ।

ଓଡ଼ିଶାରେ ସିନେମା ଅବହାଓ୍ୱାର ଉନ୍ନତି ପାଇଁ କିନ୍ତୁ ଗୋଟିଏ ହିତକର ପରଂପରା ଆରମ୍ଭ ହୋଇଥିଲା । ଓଡ଼ିଶା ଚଳଚ୍ଚିତ୍ର ନିଗମ, ଜାତୀୟ ଚଳଚ୍ଚିତ୍ର ନିଗମ (ବମ୍ବେ) ସହାୟତାରେ ୧୯୭୯ ସାଲରୁ ଆଞ୍ଚଳିକ ସିନେମା ଉତ୍ସବର ଆରମ୍ଭ ହେଲା । ଉକ୍ତ ବର୍ଷ ନଭେମ୍ବର ମାସରେ ଏହା କଟକର ଗ୍ରାଣ୍ଡ ସିନେମା ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରେ ନିର୍ମିତ ପୁରସ୍କୃତ ଚଳଚ୍ଚିତ୍ର ଗୁଡ଼ିକ ଏଥିରେ ପ୍ରଦର୍ଶିତ ହୋଇଥିଲା । ସେହି ସାଲରୁ ଏହା ପ୍ରାୟ ପ୍ରତିବର୍ଷ ଅନୁଷ୍ଠିତ ହୋଇ ଆସୁଛି । ସେହି ୧୯୭୯ ସାଲରୁ ହିଁ ଶିଶୁ ଚଳଚ୍ଚିତ୍ର ଉତ୍ସବମାନ ମଧ ଭାରତୀୟ ଶିଶୁ ଚଳଚ୍ଚିତ୍ର ସୋସାଇଟି ସହାୟତାରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାରେ ସିନେମା-ସଂସ୍କୃତିର ବିକାଶ ପାଇଁ ଏ ସବୁ କିଛିଟା କ୍ଷେତ୍ର ନିଶ୍ଚୟ କରିପାରିଥିଲା ।

ଅଷ୍ଟମ ଦଶକଟି ଏଣୁ ଏକାଧିକ ଦୃଷ୍ଟିରୁ ଓଡ଼ିଆ ସିନେମାର ଅଗ୍ରଗତି ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

୧୯୭୭ରୁ ୧୯୮୪ ଏଇ ଆଠ ବର୍ଷ ମଧରେ ୭୪ ଗୋଟି ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର ନିର୍ମାଣ ହୋଇ ପାରିଥିଲା । ଏହି ଆଠ ବର୍ଷ ମଧରେ ଯେଉଁ ଅନ୍ୟ ଉଲ୍ଲେଖନୀୟ ଚଳଚ୍ଚିତ୍ର ଗୁଡ଼ିକ ପ୍ରସ୍ତୁତ ହୋଇଥିଲା ସେ ଗୁଡ଼ିକ ହେଲା, ''ଅମର ପ୍ରେମ'' (୧୯୭୭), ''ଅଭିମାନ'' (୧୯୭୭), ''ତଅପୋଇ'' (୧୯୭୮), ''ଚିଲିକା ତୀରେ'' (୧୯୭୮), ''କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ'' (୧୯୭୮), ''ନିଛୁମ ରାତିର ସାଥି'' (୧୯୭୯), ''ଶ୍ରୀକୃଷ୍ଣଙ୍କ ରାସଲୀଳା'' (୧୯୭୯), ''ଶ୍ରୀ ଜଗନ୍ନାଥ'' (୧୯୮୦), ''ତପସ୍ୟା'' (୧୯୮୦), ''ସୀତା ଲବକୁଶ'' (୧୯୮୧), ''ପୂଜା'' (୧୯୮୧), ''ଅନ୍ତରାଗ'' (୧୯୮୨), ''ଫୁଲ ଚନ୍ଦନ'' (୧୯୮୨), ''ଝିଅଟି ସୀତା ପରି'' (୧୯୮୩) ଓ ''ସ୍କୁଲ ମାଷ୍ଟର'' (୧୯୮୩) ।

ଉଲ୍ଲେଖନୀୟ ଯେ ୧୯୩୬-୧୯୭୬ ମଧ୍ୟରେ, ଦୀର୍ଘ ୪୧ ବର୍ଷ ଭିତରେ ମାତ୍ର ୪୮ଟି ଗୋଟି ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଥିବା ସ୍ଥଳେ, ପରବର୍ତ୍ତୀ ଆଠ ବର୍ଷରେ ୭୪ ଗୋଟି ପୂର୍ଣ୍ଣାଙ୍ଗ ଚିତ୍ର ପ୍ରସ୍ତୁତ ହୋଇ ଓଡ଼ିଆ ସିନେମାକୁ ବହୁ ଦୂର ଆଗେଇ ନେଇଥିଲେ ।



''ଚିଲିକା ତୀରେ'' ଚଳଚ୍ଚିତ୍ରର ଏକ ଦୃଶ୍ୟରେ ସୁଜାତା ଆନନ୍ଦ ଓ ଜଣେ ଅଭିନେତା



# ସାମ୍ପ୍ରତିକ ଓଡ଼ିଆ ସିନେମା

ଶେଷ କିଛି ବର୍ଷପାଇଁ ଓଡ଼ିଆ ସିନେମା ଧନ୍ଦାରେ ଥିବା ଲୋକେ ଗୋଟାଏ ଗୋଲକ ଧନ୍ଦାରେ ପଡ଼ିଯାଇଥିବା ମନେ ହେଉଥିଲା । ମନେ ହେଉଥିଲା ସେମାନଙ୍କ ଭିତରେ ଥୋକେ ସ୍ଥିର କରି ପାରୁନଥିଲେ, କେଉଁଠି ଆବାସ ରଚିବା ସେମାନଙ୍କ ଧନ୍ଦାପାଇଁ ଅନୁକୂଳ ହେବ, କଟକ ସହର ନା ଭୁବନେଶ୍ୱର ?

ସିନେମା ବ୍ୟବସାୟ ଦୃଷ୍ଟିରୁ କେବଳ ନୁହେଁ, ସିନେମା ନିର୍ମାଣ ଦୃଷ୍ଟିରୁ ମଧ୍ୟ କଟକ ବର୍ଷ ବର୍ଷ, ଯୁଗ ଯୁଗ ଧରି ଥିଲା ଗୁରୁତ୍ୱପୂର୍ଣ୍ଣ । ବିତରକ, ପ୍ରଯୋଜକ, କଳାକାର– ସମସ୍ତେ ସ୍ୱୀକାର କରୁଥିଲେ କଟକର ଅପ୍ରତିହତ ପ୍ରାଧାନ୍ୟ ।

କିନ୍ତୁ ନବମ ଦଶକ ଶେଷ ବେଳକୁ କଟକ ନୁହେଁ ଭୁବନେଶ୍ୱର ହିଁ ଓଡ଼ିଆ ସିନେମା ନିର୍ମାଣର କେନ୍ଦ୍ରସ୍ଥଳୀ ହୋଇ ଉଠିଲା । ଯଦିଓ ପ୍ରାୟ ସମସ୍ତ ସିନେମା ବିତରକ ଏବେ ମଧ୍ୟ କଟକରେ, ରାଜ୍ୟର ରାଜଧାନୀ ଭୁବନେଶ୍ୱର କିନ୍ତୁ ସିନେମା ପ୍ରସ୍ତୁତିର ପ୍ରାଣ କେନ୍ଦ୍ର ହୋଇ ଉଠୁଥିଲା । ଏଣୁ ଅନେକ ସିନେମା-ବ୍ୟକ୍ତିତ୍ୱ ଭୁବନେଶ୍ୱରରେ ରହିବା ଉଚିତ ମଣିଲେ ।

ସିନେମା ନିର୍ମାଣ ଦୃଷ୍ଟିରୁ ଭୁବନେଶ୍ୱର କ୍ରମଶଃ ଅଧିକରୁ ଅଧିକ ପ୍ରାଧାନ୍ୟ ଲାଭ କରୁଥିବାର ସବୁଠାରୁ ଅବଶ୍ୟ ବଡ଼ କାରଣ, ଏଠାରେ ନିର୍ମିତ ହୋଇଥିବା କଳିଙ୍ଗ ଷ୍ଟୁଡ଼ିଓ । ତା'ଛଡ଼ା ଭୁବନେଶ୍ୱରରେ ଡାଇନାମିକ୍ ଷ୍ଟୁଡ଼ିଓ ପ୍ରଭୃତି କେତେକ ସଂସ୍ଥା ମଧ୍ୟ ସିନେମା ନିର୍ମାଣ ପାଇଁ ଦରକାର ପଡୁଥିବା କେତେକ ଯନ୍ତ୍ରପାତି ଭଡ଼ାରେ ଦେବା ଆରମ୍ଭ କଲେ । ଓଡ଼ିଶାର ରାଜନୈତିକ ରାଜଧାନୀ କେବଳ ନୁହେଁ, ଭୁବନେଶ୍ୱର କ୍ରମଶଃ ଏ ରାଜ୍ୟର ସାଂସ୍କୃତିକ ରାଜଧାନୀ ମଧ୍ୟ ହୋଇ ଉଠିଲା । ଭୁବନେଶ୍ୱରରେ କଟକ ଅପେକ୍ଷା ଅଧିକ

ସଂଖ୍ୟାରେ ନୃତ୍ୟଶିଳ୍ପୀ ଓ ସଂଗୀତ ଶିଳ୍ପୀ ଦେଖିବାକୁ ମିଳିଲେ । ଏ ସମସ୍ତ ଏଠାରେ ସିନେମା ନିର୍ମାଣ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କଲେ ।

ଏ ପରିପ୍ରେକ୍ଷୀରେ, କିଛି ଉଦାହରଣ ଏଠାରେ ଦିଆଯାଇପାରେ । ବହୁବର୍ଷ ହେଲା ଚଳଚ୍ଚିତ୍ର ଶିଳ୍ପ ସହ, ବିଶେଷତଃ ଓଡ଼ିଆ ଚଳଚ୍ଚିତ୍ର ସହ ଶ୍ରୀ ପ୍ରଶାନ୍ତ ନନ୍ଦ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ । ପ୍ରାକ୍-ତାରୁଣ୍ୟରୁ ଅଭିନେତା ରୂପେ ସେ ଓଡ଼ିଆ ଚଳଚ୍ଚିତ୍ର ମାନଙ୍କରେ ଅଭିନୟ କରିଥିଲେ । ଅଭିନୟ ଜୀବନର ପ୍ରାୟ ୧୦ ବର୍ଷ ଅତିକ୍ରାନ୍ତ ହେବାପରେ ବମ୍ବେସ୍ଥିତ ପ୍ରସିଦ୍ଧ ରାଜଶ୍ରୀ ପ୍ରଡ଼ାକ୍‌ସନ୍‌ର କେତୋଟି ହିନ୍ଦୀ ଚିତ୍ର (ଯଥା ''ପହେଲି'', ''ନୟା'')ର ନିର୍ଦ୍ଦେଶକ ଭାବେ ସେ ଆତ୍ମପ୍ରକାଶ କଲେ । ଅବଶ୍ୟ ସେ ସବୁ ନର୍ଦ୍ଦେଶନା ଦେବାର ଠିକ୍ ପୂର୍ବରୁ ପ୍ରଶାନ୍ତ ''ଶେଷ ଶ୍ରାବଣ'' ଓଡ଼ିଆ କଥାଚିତ୍ରର ନିର୍ଦ୍ଦେଶନା ଦେଇଥିଲେ । ଅଷ୍ଟମ ଦଶକର ଉତ୍ତରାଂଶରେ ବମ୍ବେରେ ହିନ୍ଦୀ ଚିତ୍ର ନିର୍ମାଣରେ ବ୍ୟସ୍ତ ରହିବା ପରେ ଶ୍ରୀ ନନ୍ଦ ପୁନଶ୍ଚ ନିଜ ଜନ୍ମ-ସହର କଟକ ଫେରି ଆସି ''ମା ଓ ମମତା'', ''ପୂଜା'', ''ହିସାବ ନିକାଶ'', ''ଜଗା ବଳିଆ'' ପ୍ରକୃତି ନିର୍ମାଣ କଲେ । କିନ୍ତୁ ୧୯୮୬ ବେଳକୁ ସେ ମଧ୍ୟ ଭୁବନେଶ୍ୱରରେ ହିଁ ନିଜର ବାସ ସ୍ଥାନ ବାଛି ନେଲେ ।

କ୍ରମାଗତ ଓଡ଼ିଆ ସିନେମା କରୁଥିବା ଅନ୍ୟ ଏକ ସିନେମାସଂସ୍ଥା, ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍ ମଧ୍ୟ ଭୁବନେଶ୍ୱରରେ ହିଁ ଜନ୍ମ ନେଇଛି । ୧୯୮୫ ସାଲରେ ଉକ୍ତ ସଂସ୍ଥା ''ହାକିମ ବାବୁ'' ନିର୍ମାଣ କରିଥିଲା ଏବଂ ପରେ ''ମମତା ମାଗେ ମୂଲ'', ''ପୁଅ ମୋର କଳା ଠାକୁର'' ଓ ''ଚକା ଆଖି ସବୁ ଦେଖୁଛି'' ପ୍ରଭୃତି ମସଲା-ଜର୍ଜରୀତ ମନୋରଂଜନ ପରଷିଛି ।

ତାରକା–ଗୋତ୍ରୀୟ ଅଭିନେତା ଶ୍ରୀରାମ ପଣ୍ଡା ମଧ୍ୟ ରାଜଧାନୀରେ ହିଁ ନିବାସସ୍ଥଳୀ କରି ନିର୍ମାତା-ନିର୍ଦ୍ଦେଶକ ରୂପେ ୧୯୮୮ରେ ତାଙ୍କ ପ୍ରଥମ ସୃଷ୍ଟି ''କୁରୁକ୍ଷେତ୍ର'' ନିର୍ମାଣ କରିଥିଲେ ।

ଓଡ଼ିଆ ଚଳଚ୍ଚିତ୍ର ଜଗତର ଅନ୍ୟତମ ବିସ୍ମୟ ମନମୋହନ ମହାପାତ୍ର ମଧ୍ୟ ଭୁବେନେଶ୍ୱରକୁ ହିଁ ତାଙ୍କ କର୍ମକ୍ଷେତ୍ର କରିଛନ୍ତି ଏବଂ ଉକ୍ତ ଦଶକର ଆରମ୍ଭରୁ ପ୍ରାୟ ପ୍ରତି ବର୍ଷ କ୍ରମାଗତ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ କରୁଛନ୍ତି । ଶ୍ରୀ ମହାପାତ୍ର ଲାଗ ଲାଗ ପାଞ୍ଚ ବର୍ଷ ମଧ୍ୟରେ ଯେଉଁ ପାଞ୍ଚୋଟି ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ କରିଛନ୍ତି ସେଗୁଡ଼ିକ ହେଲା– ''କ୍ଳାନ୍ତ ଅପରାହ୍ନ'' (୧୯୮୪), ''ମଝି ପାହାଚ'' (୧୯୮୫), ''ନିଷିଦ୍ଧ ସ୍ୱପ୍ନ'' (୧୯୮୭), ''ତ୍ରି ସଂଧ୍ୟା'' (୧୯୮୭), ଏବଂ ''କିଛି ସ୍ମୃତି କିଛି ଅନୁଭୂତି'' (୧୯୮୮) ।

ଶ୍ରୀ ମହାପାତ୍ରଙ୍କୁ ଓଡ଼ିଆ ଚଳଚ୍ଚିତ୍ରର ବିସ୍ମୟ ବୋଲି ଅଭିହିତ କରିବାର ମାନେ ହେଲା ଯେ, ସେ ବାସ୍ତବଧର୍ମୀ ସିନେମା ପ୍ରସ୍ତୁତିରେ ବ୍ରତୀ ଯାହା ସିନେମା ହଲ୍‌ମାନଙ୍କରେ



ଓଡ଼ିଆ ସିନେମାର ଅନ୍ୟତମ ବିସ୍ମୟ, **ମନମୋହନ** ମହାପାତ୍ର

ଆଦୌ ମୁକ୍ତି ପାଏ ନାହିଁ । ଅଥଚ ନିର୍ଦ୍ଦେଶକ ତାଙ୍କ ସିନେମା ନିର୍ମାଣ ଆଦର୍ଶରୁ ସାମାନ୍ୟ ବି ବିଚ୍ୟୁତ ନୁହନ୍ତି । ସିନେମା ନିର୍ମାଣ ପରି ଏକ ଖର୍ଚ୍ଚ ବହୁଳ ଉଦ୍ୟୋଗରେ ଏପରି ସାହସିକତା ବା ଦୁଃସାହସିକତା ଅତି କମ୍ ଦୃଷ୍ଟିଗୋଚର ହୁଏ । ''ଶୀତ ରାତି''ରୁ ''କିଛି ସ୍ମୃତି, କିଛି ଅନୁଭୂତି''ଯାଏଁ ତାଙ୍କ ସିନେମା ନିର୍ମାଣ ଉଦ୍ୟୋଗ ଅବିଚ୍ଛିନ୍ନ କହିଲେ ଅତ୍ୟୁକ୍ତି ହେବନାହିଁ ।

ମନମୋହନଙ୍କ ଅଧିକାଂଶ କୃତି କୌଣସି ନା କୌଣସି ସାମାଜିକ ସମସ୍ୟା ଏବଂ ସେହି ସମସ୍ୟା ବ୍ୟକ୍ତିକୁ ଓ ପାରିବାରିକ ଜୀବନକୁ କିପରି ସଂକ୍ରମିତ କରେ ତାହା ରୂପାୟିତ କରିଛି । ଆମ ସମାଜରେ ପରିଦୃଷ୍ଟ ଉତ୍କଟ ଯୌତୁକ ସମସ୍ୟା ଦର୍ଶାଇବା ''କ୍ଲାନ୍ତ ଅପରାହ୍ନ''ର ମୂଳଲକ୍ଷ୍ୟ; କିନ୍ତୁ ତା ସଂଗେ ସଂଗେ ସିନେମାଟିରେ କିଛି ବର୍ଷୀୟାନ୍ ବ୍ୟକ୍ତିଙ୍କର ଚରିତ୍ର ଚିତ୍ରଣ ମଧ୍ୟ କରାଯାଇଛି କେତେକାଂଶରେ ଉପନ୍ୟାସ ସୁଲଭ ଶୈଳୀରେ । ''ମଝି ପାହାଚ''ର ନାୟକ ମଧ୍ୟବିତ୍ତ ପରିବାରର ଅର୍ଥନୈତିକ ଟଣାଓଟରରେ ଶେଷକୁ ଆଦର୍ଶତକ ଜଳାଞ୍ଜଳି ଦେଇ ଯୌତୁକର ସହଜ ଅର୍ଥରେ କେତେ କ'ଣ କରିଯିବାର ପରିକଳ୍ପନା କରୁଛି, ପୁରୁଷ ପୁରୁଷର ଭଙ୍ଗା ଘର ସଜାଡ଼ିବା ଠାରୁ ନିଜ କବିତା ପ୍ରକାଶନ ଯାଏଁ! ଏପରି ନାୟକ, ଅଣନାୟକମାନଙ୍କୁ ଆମେ ଆମ ଚାରିପଟେ ସର୍ବତ୍ର ଦେଖୁ । ''ନିଷିଦ୍ଧ ସ୍ୱପ୍ନ'' ଆମ ସମାଜରେ ବଦ୍ଧମୂଳ ଜାତିଆଣ ଭାବ ବ୍ୟକ୍ତି ଜୀବନକୁ କିପରି ପ୍ରଭାବିତ କରେ, ବ୍ୟଷ୍ଟିର ଜୀବନ ଉପରକୁ ସମଷ୍ଟିର କାଳ୍ପନିକ କଟକଣା ଗୁଡ଼ିକ କିପରି ମାଡ଼ି ଆସନ୍ତି ତାହା ଗୋଟିଏ ପ୍ରେମ କାହାଣୀ ଦ୍ୱାରା ଦର୍ଶାଇଛି । ''ନୀରବ ଝଡ଼'' ଓ ''କ୍ଲାନ୍ତ ଅପରାହ୍ନ''ରେ ଆତ୍ମପ୍ରକାଶ କରିଥିବା ନିର୍ଦ୍ଦେଶକଙ୍କର କିଛି ବକ୍ତବ୍ୟ ''ନିଷିଦ୍ଧ ସ୍ୱପ୍ନ''ରେ ମଧ୍ୟ ଆତ୍ମ ପ୍ରକାଶ କରିଛି ।

ତେବେ ମନମୋହନଙ୍କ ପରବର୍ତ୍ତୀ ଦୁଇ ସୃଷ୍ଟି ''ତ୍ରିସଂଧ୍ୟା'' ଓ ''କିଛି ସ୍ମୃତି ଓ କିଛି ଅନୁଭୂତି'' କଳାକାର ରୂପେ ତାଙ୍କ ଅଗ୍ରଗତିର ସୂଚନା ଦିଏ । ଏ ଦୁଇ ଚିତ୍ରରେ

ବ୍ୟକ୍ତି ଯେଉଁ ନିଷ୍କରୁଣ ସତ୍ୟମାନଙ୍କର ସମ୍ମୁଖୀନ ହୁଏ ତାହା ସେ ଏପରି ଏକ ଶୈଳୀ ମାଧ୍ୟମରେ ପରିବେଷଣ କରିଛନ୍ତି ଯାହା ''ଡକ୍ୟୁମେଣ୍ଟରୀ ସିନେମା'' ବା ପ୍ରାମାଣିକ ଚଳଚ୍ଚିତ୍ର ସୁଲଭ । ନିର୍ଦ୍ଦେଶକ ତାଙ୍କ ସୃଷ୍ଟି ମାନଙ୍କରେ ବହୁଳଭାବେ ''ଲଙ୍ଗ୍ ସଟ୍'' ବ୍ୟବହାର କରିଥିବା ପରିଦୃଷ୍ଟ । ତେବେ ନିର୍ଦ୍ଦେଶକଙ୍କ ଶ୍ରେଷ୍ଠ କୃତି ଗୁଡ଼ିକ ଆଗାମୀ ବର୍ଷ ମାନଙ୍କରେ ହିଁ ଜନ୍ମ ନେବ ଏପରି ସମ୍ଭାବନା ସୃଷ୍ଟି ହୋଇଛି ।

ସାଂପ୍ରତିକ ସମୟର ନିରବଚ୍ଛିନ୍ନ ବାସ୍ତବଧର୍ମୀ ଓଡ଼ିଆ ସିନେମା ନିର୍ମାତାଙ୍କ ସଂପର୍କରେ ଏ ହେଲା ନାତିଦୀର୍ଘ ବିବରଣୀ । କିନ୍ତୁ ମନୋରଂଜନ ଲକ୍ଷ୍ୟରେ ମଧ ଓଡ଼ିଶାରେ ବର୍ଷକୁ ପ୍ରାୟ ଡଜନଟିଏ ସିନେମା ନିର୍ମିତ ହେଉଛି । ସେଥିରୁ ଅଧିକାଂଶ ବମ୍ବେ ଫର୍ମୁଲା-ଧର୍ମୀ ଶସ୍ତା ଦରର ମନୋରଂଜନ ହେଲେ ମଧ ବିଭିନ୍ନ କାରଣରୁ ସେଥିରୁ କେତୋଟି ଆଲୋଚନା ପରିସରକୁ ଅଣାଯାଇପାରେ । ୧୯୮୫ ସାଲରେ ସମୁଦାୟ ବାର ଗୋଟି ସିନେମା (ମନମୋହନଙ୍କ ''କ୍ଳାନ୍ତ ଅପରାହ୍ଣ'' ସମେତ) ନିର୍ମିତ ହୋଇଥିଲା ଯେଉଁ ଗୁଡ଼ିକ ମଧରେ ''ମାନିନୀ'', ''ନଳ ଦମୟନ୍ତୀ'', ''ନିନାଦ'', ''ଛଅ ମାଣ ଆଠ ଗୁଣ୍ଠ'' ପ୍ରଭୃତି ଅର୍ନ୍ତଭୁକ୍ତ । ଉଲ୍ଲେଖ କରାଯାଇଥିବା ଏହି ଚାରିଗୋଟି ସିନେମା ସୂଚନା ଦିଏ ଯେ ଫର୍ମୁଲା ବାହାରେ ମଧ ପୌରାଣିକ, ପାରିବାରିକ, ମନସ୍ତାତ୍ତ୍ୱିକ ଇତ୍ୟାଦି ବିଭିନ୍ନ ଶ୍ରେଣୀୟ ସିନେମା ପାଇଁ ଏଠାରେ ଉଦ୍ୟମ ହେଉଛି । ୧୯୮୭ରେ ମୁକ୍ତି ପାଇଥିବା ଚଳଚ୍ଚିତ୍ର ସଂଖ୍ୟା ମାତ୍ର ଥିଲା ଆଠଗୋଟି ଯେଉଁଥିରୁ ଅଧିକାଂଶ ଥିଲା ଫର୍ମୁଲାଶ୍ରୟୀ; ତେବେ ପ୍ରଥମ ଶିଶୁ ଚଳଚ୍ଚିତ୍ର ''ବାବୁଲା'' ସେହି ସିନେମାମାନଙ୍କ ମଧରେ ଅନ୍ୟତମ । ତତ୍‌ପର ବର୍ଷ ମଧ ''କିଛି ସ୍ମୃତି କିଛି ଅନୁଭୂତି'' ସମେତ ପ୍ରାୟ ଏକ ଡଜନ୍ ଚଳଚ୍ଚିତ୍ର ନିର୍ମିତ ହୋଇଥିଲା ।

୧୯୮୮ ସାଲରେ ଆଖି-ଦୃଶିଆ ତିନିଗୋଟି ହିଟ୍ ଚିତ୍ର ସମ୍ଭବ ହୋଇଥିଲା । ଏହି ଅସାମାନ୍ୟ ବକ୍ସ-ଅଫିସ ସଫଳ ଚିତ୍ର ଗୁଡ଼ିକ ହେଲା, ''ଲାଲ୍‌ପାନ୍ ବିବି'', ''ସୁନା ଚଢ଼େଇ'' ଏବଂ ''ଯାହାକୁ ରଖିବେ ଅନନ୍ତ'' । ଶ୍ରୀ ପ୍ରଶାନ୍ତ ନନ୍ଦଙ୍କ ''ଲାଲ୍‌ପାନ୍ ବିବି'' ଅପରାଧ ଓ ପ୍ରତିଶୋଧର କାହାଣୀ ଅବଲମ୍ବନରେ ନିର୍ମିତ ଏବଂ ଏ ସିନେମା ଦେଖିଲା ବେଳେ ହିନ୍ଦୀ ହିଟ୍ ''ଅନ୍ଧା କାନୁନ୍'' (୧୯୮୪ରେ ନିର୍ମିତ) ଆପେ ଆପେ ମନେ ପଡ଼ିଯାଏ । ଗୋଟିଏ ହତ୍ୟାକାଣ୍ଡର ପ୍ରତ୍ୟକ୍ଷଦର୍ଶୀ ରୂପେ ଜଣେ ପୁରୋହିତ ସତକଥାଟା ପୁଲିସକୁ ଜଣାଇ ଥିବାରୁ ତାଙ୍କୁ ନୃଶଂସ ଭାବେ ଖୁନ୍ କରାଯାଉଛି । କିନ୍ତୁ ପୁରୋହିତଙ୍କ ଯୁବତୀ ଝିଅ ନରହନ୍ତା ମାନଙ୍କୁ ଗୋଟି ଗୋଟି କରି ମାରୁଛି । ଚିତ୍ରଟିର ଏକ ଚରିତ୍ରକୁ ମୁଖ୍ୟମନ୍ତ୍ରୀଙ୍କ ପୁଅ ବୋଲି ଉଲ୍ଲେଖ କରାଯାଇଛି । କିଛି ମାତ୍ରାରେ ଏହା ରାଜନୈତିକ ସିନେମା ସଦୃଶ୍ୟ । ୧୯୮୮ର ପ୍ରାରମ୍ଭରେ ଏ ଚିତ୍ର ଏକାଥରକେ ୧୬ ଗୋଟି ପ୍ରେକ୍ଷାଳୟରେ ମୁକ୍ତିପାଇ ପ୍ରବଳ ଦର୍ଶକ ଆଗ୍ରହ ସୃଷ୍ଟି କରିଥିଲା ।

''ସୁନା ଚଢ଼େଇ'' ସଂପୂର୍ଣ୍ଣ ଭିନ୍ନ ଧରଣର ଗୋଟିଏ ଛବି; କିନ୍ତୁ ଏ ଚିତ୍ରର କାହାଣୀ ବି ମୌଳିକ ନୁହେଁ, ବରଂ ଏକାଧିକ ସିନେମାରୁ ଆହରିତ । ତେବେ ତାର

ମୂଳ ଉତ୍ସଟି ହଲିଉଡ୍ ନିର୍ମିତ 'ଲାଭ୍ ଷ୍ଟୋରି'। ବମ୍ବେର ଟି. ଭି. ଷ୍ଟାର ଅର୍ଚ୍ଚନା ଯୋଗଲେକର୍ ନାୟିକା ରୂପେ "ସୁନା ଚଢ଼େଇ"ର ଆବେଦନ ଯଥେଷ୍ଟ ବଢ଼ାଇଛନ୍ତି। ଆବେଗ ଭରା ପ୍ରେମ କାହାଣୀ ଯେ ଯୁଗେ ଯୁଗେ ଜନ-ମାନସକୁ ଆକୃଷ୍ଟ କରେ ତାହା "କେଦାର ଗୌରୀ" ପ୍ରମାଣିତ କରିଥିଲା, "ସୁନା ଚଢ଼େଇ" ବି ପ୍ରମାଣିତ କଲା।

ବସନ୍ତ ନାୟକଙ୍କ ପ୍ରଯୋଜିତ "ଯାହାକୁ ରଖିବେ ଅନନ୍ତ" ଗୋଟିଏ ନାଗସାପର କରାମତି ରୂପେଲି ପରଦାରେ ପ୍ରଦର୍ଶିତ କରି ୧୯୮୮ର ସୁପରହିଟ୍ ହୋଇପାରିଥିଲା। ସିନେମାର ସାପ ବହୁ ପ୍ରକାରର ଚ୍ମକପ୍ରଦ କାମ କରିବା ଦେଖା ଯାଉଛି; ଯଥା– କ୍ରନ୍ଦନରତ ଶିଶୁ ମୁହଁରେ ଖିର ବୋତଲ ଦେବା, ଦୋଳି ଝୁଲାଇବା, ଇତ୍ୟାଦି। "ଯାହାକୁ ରଖିବେ ଅନନ୍ତ"ର କାହାଣୀ କୃତ୍ରିମତାରେ ଭରପୂର; କିନ୍ତୁ ସାପର କରାମତି ସାଧାରଣ ଦର୍ଶକମାନଙ୍କୁ ସତେ ଯେମିତିକି ମନ୍ତ୍ର-ମୁଗ୍ଧ କରିଥିଲା।

ଓଡ଼ିଆମାନଙ୍କ ସମୂହ ଚେତନା ଉପରେ ଏ ଜାତିର ଆରାଧ୍ୟ ଦେବତା ଜଗନ୍ନାଥଙ୍କର ପ୍ରଭାବ ବେଶ୍ ଗଭୀର ଓ ଅଧିକାଂଶ ସିନେମା ନିର୍ମାତା ଏଥିପ୍ରତି ସଚେତନ। କେତେକ ଓଡ଼ିଆଙ୍କର ଏଇ ଦୁର୍ବଳତା'କୁ ପୁଞ୍ଜିକରି ସିନେମା ପରଷିଛନ୍ତି। (ଓଡ଼ିଆ ଭାଷାର ଦ୍ୱିତୀୟ ଓ ତୃତୀୟ ଚିତ୍ର "ଲଳିତା" ଏବଂ "ଶ୍ରୀ ଜଗନ୍ନାଥ" ସେହି ଗଣଦେବତାଙ୍କୁ ଆଧାର କରି ନିର୍ମିତ ହୋଇଥିବା ପୂର୍ବରୁ ଉଲ୍ଲେଖ କରାଯାଇଛି।) ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍‌ର ତୃତୀୟ ଅବଦାନ ହେଲା "ପୁଅ ମୋର କଳା ଠାକୁର" (୧୯୮୮ର ପୂଜାବେଳେ ଯାହା ବଜାରକୁ ଆସିଥିଲା)। ଜଗନ୍ନାଥଙ୍କ ନାମ ବ୍ୟବହାର କରି ଏ ହେଲା ହିଂସାବହୁଳ ଏକ ଅତି ନିମ୍ନରୁଚିର ସିନେମା।

ଓଡ଼ିଆ ଚଳଚ୍ଚିତ୍ର ଇତିହାସ ଲେଖିବା ବେଳେ ଓଡ଼ିଶାକୁ ଟେଲିଭିଜନ୍‌ର ଆଗମନ ମଧ୍ୟ ଉଲ୍ଲେଖ କରିବାର ଆବଶ୍ୟକତା ରହିଛି। କାରଣ ସିନେମା ଭଳି ଟି.ଭି. ମଧ୍ୟ ଆବଶ୍ୟକ କରେ ସେହି ଗୋଟଏ ଉପାଦାନ– ସଚଳ-ଚିତ୍ରର ଝରଣା। ପାର୍ଥକ୍ୟ ପ୍ରଧାନତଃ ଏତିକି, ଯେ ସିନେମାର ସଚଳ ଚିତ୍ର ଗୁଡ଼ିକ ବଡ଼ ପରଦାରେ ଝଲସିତ ହୁଏ, କିନ୍ତୁ ଟେଲିଭିଜନ୍‌ରେ ତାହା ଆତ୍ମପ୍ରକାଶ କରେ ସାନ ପରଦାରେ।

ଭାରତର ରାଜଧାନୀ ଦିଲ୍ଲୀକୁ ଟେଲିଭିଜେନ୍ ଆସିବାର ଛଅବର୍ଷ ପରେ (୧୯୬୯ ଅକ୍ଟୋବର ଦୁଇ ତାରିଖ, ଗାନ୍ଧି ଶତବାର୍ଷିକୀ ଦିନ ଦିଲ୍ଲୀରେ ଆଞ୍ଚଳିକ ଟି.ଭି ପ୍ରସାରଣ ଆରମ୍ଭ ହୋଇଥିଲା) ୧୯୭୫ ଅଗଷ୍ଟ ପହିଲାରୁ ଓଡ଼ିଶାର ମାତ୍ର ତିନୋଟି ଜିଲ୍ଲାପାଇଁ ଟେଲିଭିଜନ୍ କାର୍ଯ୍ୟକ୍ରମ ପ୍ରସାରଣ "ସେଟେଲାଇଟ୍" ବା କୃତ୍ରିମ ଉପଗ୍ରହ ମାଧ୍ୟମରେ ଆରମ୍ଭ ହେଲା। ଏଇ ଜିଲ୍ଲା ତ୍ରୟ ହେଲେ ସମ୍ବଲପୁର, ଫୁଲବାଣୀ ଓ ଢେଙ୍କାନାଳ। ଜିଲ୍ଲା ତିନୋଟିର ସମୁଦାୟ ୩୫୦ ଗୋଟି ଗ୍ରାମରେ ସରକାରୀ ପ୍ରଦତ୍ତ ଟେଲିଭିଜନ୍ ସେଟ୍ ଓ ଏକ ସ୍ୱତନ୍ତ୍ର ଧରଣର ଏଣ୍ଟିନା ସାହାଯ୍ୟରେ କାର୍ଯ୍ୟକ୍ରମ ଦେଖି ହେଉଥିଲା। ପ୍ରଧାନତଃ

ଗାଁ ଗହଳ ଉପଯୋଗୀ ଓଡ଼ିଆ ଟି.ଭି. କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ପାଇଁ କଟକରେ ଗୋଟିଏ ଟେଲିଭିଜନ୍ ଷ୍ଟୁଡ଼ିଓ ନିର୍ମାଣ କରାଯାଇଥିଲା । ଏଠାରେ ପ୍ରସ୍ତୁତ କାର୍ଯ୍ୟକ୍ରମ ଦିଲ୍ଲୀ ଟି.ଭି. କେନ୍ଦ୍ରକୁ ପଠାଯାଉଥିଲା ଏବଂ ଦିଲ୍ଲୀରୁ କୃତ୍ରିମ ଉପଗ୍ରହ ଦ୍ୱାରା କାର୍ଯ୍ୟକ୍ରମ ଗୁଡ଼ିକ ପ୍ରସାରିତ ହୋଇ ସେହି ୩୫୦ ଗ୍ରାମରେ ଦେଖିବାକୁ ମିଳୁଥିଲା । କୃତ୍ରିମ ଉପଗ୍ରହଟି ଧାର ସୂତ୍ରରେ ଆସିଥିଲା ଯୁକ୍ତରାଷ୍ଟ୍ର ଆମେରିକାର ଜାତୀୟ ଏରୋନାଟିକସ୍ ଏବଂ ମହାକାଶ ଗବେଷଣା ସଂସ୍ଥା ''ନାସା''ରୁ ।

ଓଡ଼ିଶାର ନିର୍ଦ୍ଦିଷ୍ଟ ସଂଖ୍ୟକ ଗ୍ରାମ ପାଇଁ ଏହି କାର୍ଯ୍ୟକ୍ରମ ପରୀକ୍ଷା ମୂଳକ ଭାବେ ମାତ୍ର ବର୍ଷକ ପାଇଁ ଚାଲିଲା । ଏଇ କାର୍ଯ୍ୟକ୍ରମ ତଦାରଖ ଓ ଅନୁଧ୍ୟାନ ପାଇଁ ଗବେଷଣା ସଂସ୍ଥା ସମ୍ବଲପୁରରେ ଗୋଟିଏ ଅଫିସ୍ କରିଥିଲା । ପରୀକ୍ଷାର ଦୁଇବର୍ଷ ପରେ ଏପ୍ରିଲ ୩୦, ୧୯୭୯ ସାଲରେ ସମ୍ବଲପୁରରେ ଗୋଟିଏ ଟି.ଭି. ପ୍ରସାରଣ କେନ୍ଦ୍ର ସ୍ଥାପିତ ହେଲା । ସେଠାରେ ସ୍ଥାପିତ ଟ୍ରାନସ୍‌ମିଟର ଦ୍ୱାରା ୪୦ କିଲୋମିଟର ବ୍ୟାସାର୍ଦ୍ଧ ପରିମିତ ଅଞ୍ଚଳରେ ଟେଲିଭିଜନ୍ କାର୍ଯ୍ୟକ୍ରମ ଦେଖି ହେଉଥିଲା । ୧୯୮୧ ସାଲରେ ଭାରତୀୟ ଟେଲିଭିଜନ୍ ଜଗତରେ ଏକ ବଡ଼ ଅଗ୍ରଗତି ଆସିଲା । ସେଇ ବର୍ଷ ନୂଆଦିଲ୍ଲୀରେ ଏସିଆଡ୍ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହେଲା । ମହାଦେଶୀୟ ସ୍ତରରେ ଅନୁଷ୍ଠିତ ସେଇ କ୍ରୀଡ଼ା ପ୍ରତିଯୋଗିତାରେ ଏସିଆର ସମସ୍ତ ପ୍ରଧାନ ରାଷ୍ଟ୍ର ଯୋଗ ଦେଇଥିଲେ । ଉତ୍ସବର ସଜୀବ ପ୍ରସାରଣ ଓ ରିଲେ ପାଇଁ ଦେଶର ବିଭିନ୍ନ ସ୍ଥାନରେ ବହୁ କେନ୍ଦ୍ର ସ୍ଥାପିତ ହୋଇଥିଲା । ସେତେବେଳେ ଭୁବନେଶ୍ୱରରେ ମଧ୍ୟ ଗୋଟିଏ ରିଲେ କେନ୍ଦ୍ର କାର୍ଯ୍ୟକଲା । ତେବେ ନଭେମ୍ବର ୩, ୧୯୮୫ରେ କଟକରେ ଗୋଟାଏ ଟ୍ରାନସ୍‌ମିଟର୍ ସ୍ଥାପିତ ହେବା ପରେ ଭୁବନେଶ୍ୱର କେନ୍ଦ୍ରଟି ବନ୍ଦ କରି ଦିଆଗଲା । ୧୦ କିଲୋୱାଟ୍ ଶକ୍ତି ସଂପନ୍ନ କଟକ କେନ୍ଦ୍ରର କାର୍ଯ୍ୟକ୍ରମ ୧୦୦ କିଲୋମିଟର ବ୍ୟାସାର୍ଦ୍ଧ ପରିମିତ ଅଞ୍ଚଳରେ ଦେଖିବା ପାଇଁ ସମ୍ଭବ ହେଉଥିଲା । ନଭେମ୍ବର ୧୬, ୧୯୮୭ କଟକ କେନ୍ଦ୍ରରୁ ଓଡ଼ିଆ କାର୍ଯ୍ୟକ୍ରମ୍ ପ୍ରସାରଣ ଆରମ୍ଭ ହେଲା ।

୧୯୮୯ ଶେଷ ସୁଦ୍ଧା ଓଡ଼ିଶାରେ ସମ୍ବଲପୁର, କଟକ ସମେତ ୨୪ ଗୋଟି ଟି.ଭି. ଟ୍ରାନସ୍‌ମିଟର ସ୍ଥାପିତ ହୋଇଥିଲା । ଏ ଗୁଡ଼ିକ ହେଲା ବ୍ରହ୍ମପୁର (୧୯୮୪), ରାଉରକେଲା (୧୯୮୪), କୋରାପୁଟ (୧୯୮୫), ଭବାନୀ ପାଟଣା, ଜୟପୁର, ବାରିପଦା, ସୁନ୍ଦରଗଡ଼, ବାଲେଶ୍ୱର (୧୯୮୮), ଫୁଲବାଣୀ, ବଲାଙ୍ଗୀର, କେଉଁଝର, ବାଲିଆପାଳ, ଭଦ୍ରଖ, ଆନନ୍ଦପୁର, ଜୋଡ଼ା, ଅନୁଗୁଳ,. ପାରଳାଖେମୁଣ୍ଡି, ରାୟଗଡ଼ା, ବରଗଡ଼, ଝାରସୁଗୁଡ଼ା, ଏବଂ ସୁନାବେଡ଼ା (୧୯୮୯) ।

ଟେଲିଭିଜନର ଆଗମନ ଓଡ଼ିଆ ଚଳଚ୍ଚିତ୍ରକୁ କେତେକାଂଶରେ ଯେ ପ୍ରଭାବିତ ନ କରିଛି ତା' ନୁହେଁ । ଟି. ଭି. ପ୍ରସାରଣ ସମ୍ଭାବନା ଦ୍ୱାରା ଆଶାନ୍ୱିତ ହୋଇ ଓଡ଼ିଶାରେ ମଧ୍ୟ ଜଣେ ଦି'ଜଣ ନିର୍ମାତା ସିନେମା ପ୍ରସ୍ତୁତ କରନ୍ତି । ଏପରି ଉଦ୍ୟମ ଗୁଡ଼ିକ ସାଧାରଣତଃ




ଓଡ଼ିଶାକୁ ଟି.ଭି. ଆଗମନ   ସମ୍ବଲପୁର ଟି.ଭି. ଷ୍ଟୁଡ଼ିଓ

କଳାତ୍ମକ ହୁଏ । କଟକ ଦୂରଦର୍ଶନ କେନ୍ଦ୍ର ମଧ୍ୟ ୧୯୮୯ ମସିହାରେ ଉଲ୍ଲେଖଯୋଗ୍ୟ ସଂଖ୍ୟକ ସିନେମା ନିର୍ମତାଙ୍କୁ ଟି.ଭି. ଚିତ୍ର ପ୍ରସ୍ତୁତି ପାଇଁ ସୁଯୋଗ ଦେଇଥିଲେ । ଶ୍ରୀ ନିରଦ ମହାପାତ୍ର, ଶ୍ରୀ ଗୋପାଳ ଘୋଷ, ଶ୍ରୀଗୋବିନ୍ଦ ତେଜ ପ୍ରଭୃତି ଟି.ଭି. ସିନେମା କରିବାରେ ସୁଯୋଗ ପାଇଥିଲେ । ଏହି କ୍ରମରେ ଶ୍ରୀ ମହାପାତ୍ର ''ତମସାତୀରେ'' ଟେଲି ସିନେମା ପ୍ରସ୍ତୁତ କରିଥିଲେ ।

୧୯୮୯ ସାଲରେ ଓଡ଼ିଆ ଚଳଚ୍ଚିତ୍ର ଜଗତରେ କେତୋଟି ନାଟକୀୟ ଘଟଣା ଘଟିଥିଲା । ଏ ବର୍ଷ ସମୁଦାୟ ୧୩ଟି ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଥିଲା । ଶ୍ରେଷ୍ଠ ଆଞ୍ଚଳିକ ଚଳଚ୍ଚିତ୍ର  ନିର୍ମାତା ରୂପେ ନିର୍ଦ୍ଦେଶକ ମନମୋହନ ମହାପାତ୍ରଙ୍କ ''ଅନ୍ଧ ଦିଗନ୍ତ'' ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲା । ଔପନାସିକ କାହ୍ନୁଚରଣ ମହାନ୍ତିଙ୍କ କାଳଜୟୀ ସାହିତ୍ୟକୃତ ''ଶାସ୍ତି'' ମଧ୍ୟ ଏଇ ବର୍ଷ ହିଁ ଚଳଚ୍ଚିତ୍ର ରୂପରେ ରୂପାୟିତ ହୋଇଥିଲା । ନିର୍ଦ୍ଦେଶକ ବୃନ୍ଦାବନ ଜେନାଙ୍କ ଦ୍ୱାରା ନିର୍ମିତ ଏ ଚିତ୍ର ଏହି ବର୍ଷର ଅନ୍ୟତମ ଉଲ୍ଲେଖନୀୟ ଚଳଚ୍ଚିତ୍ର । ସମ୍ବଲପୁରୀ ସଂଳାପ ବହୁଳ ଶ୍ରୀ ସବ୍ୟସାଚୀ ମହାପାତ୍ରଙ୍କ ''ଭୁଖା'' ମଧ୍ୟ ୧୯୮୯ର ଅନ୍ୟ ଏକ ସାହସିକ ଉଦ୍ୟମ । ତେବେ ସବୁଠୁ ଅଧିକ ଉତ୍ତେଜନା ସୃଷ୍ଟି କରିଥିଲା ଶସ୍ତା ଉପାଦାନ ବହୁଳ ''ଚକା ଆଖି ସବୁ ଦେଖୁଛି'' । ଉତ୍ତେଜନା ସୃଷ୍ଟିର ପ୍ରଧାନତମ କାରଣ, ସିନେମାଟି ଗୋଟାଏ ରାଜନୈତିକ ରୂପ ନେଇଥିଲା ।

''ଚକା ଆଖି ସବୁ ଦେଖୁଛି'' ମୁକ୍ତି ପାଇବାର ବେଶ୍ କିଛିମାସ ପୂର୍ବରୁ ଓଡ଼ିଶାର ଜଣେ ମନ୍ତ୍ରୀ ଓ ଜଣେ ପ୍ରଶାସକଙ୍କ ମଧ୍ୟରେ ଗୋଟିଏ ସ୍ତରର ସଂଘର୍ଷର ସୂତ୍ରପାତ ହୋଇଥିଲା । କ୍ୟାବିନେଟ୍ ମନ୍ତ୍ରୀ ଯେଉଁ ଜିଲ୍ଲାର ବ୍ୟକ୍ତି ଥିଲେ ପ୍ରଶାସକ ସେହି ଜିଲ୍ଲାର କଲେକ୍ଟର ରୂପେ ଅବସ୍ଥାପିତ ହୋଇଥିଲେ । ମନ୍ତ୍ରୀଥିଲେ କ୍ୟାବିନେଟ୍ ପାହ୍ୟାର; ଏଣେ ପ୍ରଶାସକ ମଧ୍ୟ କମ୍ ପ୍ରଭାବଶଳୀ ନଥିଲେ । ମନ୍ତ୍ରୀ ପ୍ରଭାବ ପକାଇ ଜିଲ୍ଲାପାଳଙ୍କୁ ଜିଲ୍ଲାରୁ ସ୍ଥାନାନ୍ତରୀତ କରିଦେଲେ ସତ; ପ୍ରଶାସକ କିନ୍ତୁ ଓଡ଼ିଶାର ସର୍ବପ୍ରଧାନ ଜିଲ୍ଲାରେ କଲେକ୍ଟର ରୂପେ ରହି ଗୋଟିଏ ଚାଞ୍ଚଲ୍ୟ ଉପାଦାନ ବହୁଳ ସିନେମା କାହାଣୀ ଲେଖିଲେ । ସେହି କାହାଣୀରେ ସେ ଜଣେ ମନ୍ତ୍ରୀଙ୍କୁ ଦୁଷ୍କର୍ମର ଉସ ରୂପେ ଚିତ୍ରିତ କଲେ ଏବଂ ଜଣେ ସଚ୍ଚୋଟ କଲେକ୍ଟରଙ୍କର ଛୋଟକାଟ ଭୂମିଟାଏ ରଖିଦେଲେ । ଚାଞ୍ଚଲ୍ୟକାରୀ କାହାଣୀକୁ ପୁଞ୍ଜିକରି ସେତେବେଳେ ସିନେମା ବ୍ୟବସାୟ ଚଳାଇଥିବା ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍ ନାମକ ଚଳଚ୍ଚିତ୍ର ନିର୍ମାଣ ସଂସ୍ଥା ସେ କାହାଣୀକୁ ଯେ ଖାଲି ଆଦରି ନେଲା, ତା'ନୁହେଁ; ପ୍ରଶାସକଙ୍କୁ କଲେକ୍ଟର ଭୂମିକାରେ ଅଭିନୟ କରିବାର ସୁଯୋଗ ଦେଲା ମଧ୍ୟ । ୧୯୮୯ର ମଧ୍ୟ ଭାଗରେ ''ଚକା ଆଖି ସବୁ ଦେଖୁଛି'' ଶିରୋନାମାରେ ଏ ଚଳଚ୍ଚିତ୍ର ମୁକ୍ତି ପାଇବା ପରେ ମନ୍ତ୍ରୀ-ପ୍ରଶାସକ ଖଣ୍ଡ-ଯୁଦ୍ଧ ପୁଣି ଆରମ୍ଭ ହୋଇଗଲା ।

''ଚକା ଆଖି ସବୁ ଦେଖୁଛି'' ଓଡ଼ିଶାର ବହୁ ସ୍ଥାନରେ ଏକାଥରେ ମୁକ୍ତି ପାଇଥିଲା । କିନ୍ତୁ ଭଦ୍ରଖର ଗୋଟିଏ ପ୍ରେକ୍ଷାଳୟରେ ଏହାର ମୁକ୍ତି ବିରୁଦ୍ଧରେ ଜନମତ ସୃଷ୍ଟି ହୋଇଥିଲା ଏବଂ ବାଲେଶ୍ୱରର ତତ୍‌କାଳୀନ ଜିଲ୍ଲାପାଳ ସେଠାରେ ସିନେମାର ମୁକ୍ତି ସ୍ଥଗିତ ରଖିଥିଲେ । ତେବେ ରାଜନୈତିକ ଚାପ ବଳରେ ଏ ସ୍ଥଗିତାଦେଶ ବେଶିଦିନ ଚାଲୁରହି ପାରି ନ ଥିଲା । ପରେ ପରେ ଓଡ଼ିଶାର କଂଗ୍ରେସ ଦଳ ମଧ୍ୟରେ ଏ ସିନେମାକୁ କେନ୍ଦ୍ରକରି ବିବାଦର ଝଡ଼ ଉଠିଲା । ଜଣେ ଦୁର୍ନୀତି ଗ୍ରସ୍ତ ଅତ୍ୟାଚାରୀ ମନ୍ତ୍ରୀ ''ଚକାଆଖି ସବୁ ଦେଖୁଛି''ର ଅନ୍ୟତମ ପ୍ରଧାନ ଚରିତ୍ର ହୋଇଥିବାରୁ ଦଳର ଭାବମୂର୍ତ୍ତି ବିରୁଦ୍ଧରେ ଏ ଚଳଚ୍ଚିତ୍ର କାମ କରିବ ବୋଲି ରାଜ୍ୟର କେତେକ କଂଗ୍ରେସୀ କର୍ଣ୍ଣଧାର ଜାତୀୟ ନେତାଙ୍କ ଦୃଷ୍ଟିକୁ ନେଇଥିଲେ । ତେବେ ଏ ସମସ୍ତ ବାଦବିବାଦ ''ଚକା ଆଖି ସବୁ ଦେଖୁଛି''ର ବ୍ୟବସାୟ ପାଇଁ ଖୁବ୍ ଅନୁକୂଳ ହୋଇଥିଲା ।

ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କ ''ଭୂଖା''ର ମୁକ୍ତି ମଧ୍ୟ କେତୋଟି ନାଟକୀୟ ଘଟଣାର ହେତୁ ହୋଇଥିଲା । ନିର୍ଦ୍ଦେଶକ ଏ ଚଳଚ୍ଚିତ୍ରରେ ସମ୍ବଲପୁର ଅଞ୍ଚଳର ଏକ ଲୋକ ସଂଗୀତ ପରଂପରା ଓ ସେହି ସଂଗୀତ ଶିଳ୍ପୀମାନଙ୍କୁ ବିଷୟବସ୍ତୁ ରୂପେ ନେଇଛନ୍ତି । ସେ ଅଞ୍ଚଳର ଡମ ସଂପ୍ରଦାୟରେ ଯେଉଁମାନେ ବାଜା ବଜାନ୍ତି ସେମାନଙ୍କୁ ବଜନିଆ ବୋଲି କୁହାଯାଏ । ଆଧୁନିକ ଯୁଗରେ ବେଣ୍ଡବଜା ସେମାନଙ୍କ ଭୂମିକାକୁ ନ୍ୟୂନ କରି ଦେଉଥିବାରୁ ଏହି ପାରଂପରିକ ଲୋକ କଳା ଆଜି ସଂକଟାପନ୍ନ ଏବଂ ଏଇ ବିଷୟବସ୍ତୁକୁ ନେଇ ''ଭୂଖା'' ନିର୍ମିତ ହୋଇଛି ।



ଭୂଖା ଚଳଚ୍ଚିତ୍ରରେ ଅଭିନେତା ସାଧୁ ମେହେର୍

ସେଇବର୍ଷ ଜୁନ୍ ମାସରେ ଚିତ୍ରଟି ସମ୍ବଲପୁର ଓ ଆଖପାଖ ଅନ୍ୟ କେତେକ ସହରରେ ମୁକ୍ତି ପାଇ ପ୍ରବଳ ଜନ ଆକର୍ଷଣ ସମ୍ଭବ କରିଥିଲା । ସିନେମାଟିରେ ସମ୍ବଲପୁରୀ ସଂଳାପର ବହୁଳ ବ୍ୟବହାର ଏପରି ଜନଭିଡ଼ର ଅନ୍ୟତମ କାରଣ । ତେବେ ବଡ଼ଗଡ଼ ସହରରେ ମେଟିନୀ ସୋ ପରେ ପରେ, ଚଳଚ୍ଚିତ୍ରକୁ କେନ୍ଦ୍ରକରି ରୀତିମତ ହାତାହାତି ଏବଂ ରକ୍ତାକ୍ତ ସଂଘର୍ଷ ହୋଇଥିଲା । ''ଭୂଖା'' ଦେଖିଥିବା ଡମ୍ ସଂପ୍ରଦାୟର କେତେକ ଯୁବକ ଏଥିରେ ଥିବା କିଛି ଦୃଶ୍ୟ ଓ ସଂଳାପ ସେମାନଙ୍କ ସଂପ୍ରଦାୟ ପ୍ରତି ଅପମାନଜନକ ବୋଲି ମନେ କରିଥିଲେ ଏବଂ ସେଠାରେ ସମବେତ ହୋଇଥିବା କଳାକାର, ପ୍ରଯୋଜକ, ନିର୍ଦ୍ଦେଶକ ପ୍ରଭୃତିଙ୍କୁ ଆକ୍ରମଣ କରିଥିଲେ । ଏ ସିନେମା ହଲ୍ ଆଗରେ ଏକ ପ୍ରକାରର ଖଣ୍ଡ ଯୁଦ୍ଧ ହୋଇଥିଲା । ସେଥିରେ କେତେଜଣ ଆହତ ହୋଇ ହସ୍‌ପିଟାଲରେ ଶଯ୍ୟାଶାୟୀ ହୋଇଥିଲେ । ୧୯୮୯ ସାଲର ଜୁନ୍ ମାସରେ ''ଭୂଖା'' ବରଗଡ଼ରେ ପ୍ରଦର୍ଶିତ ହେଲାବେଳେ କିପରି ଅଘଟଣ ଘଟିଥିଲା, ସେଇ ବିବରଣୀ ଗୋଟିଏ ଓଡ଼ିଆ ସାପ୍ତାହିକୀରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଥିଲା—

''ବରଗଡ଼ସ୍ଥିତ ଉମା ଟକିଜ୍‌ରେ 'ଭୂଖା' ପ୍ରଦର୍ଶନ ବେଳେ କେତେକ ଦୃଶ୍ୟ ଓ ସଂଳାପକୁ କେନ୍ଦ୍ରକରି ଏକ ସଂପ୍ରଦାୟ ମଧ୍ୟରେ ଉତ୍ତେଜନା ସୃଷ୍ଟି ହୋଇଥିଲା । ଫଳ ସ୍ୱରୂପ ମେଟିନୀ ସୋ ଚାଲିଥିବା ବେଳେ କେତେକ ଯୁବକ ଚଳଚ୍ଚିତ୍ରର କେତେକ ଦୃଶ୍ୟ ହରିଜନ ସଂପ୍ରଦାୟ, ବିଶେଷ କରି ବଜ୍‌ନୀୟା ଗୋଷ୍ଠୀର ମାନହ୍ରାସ ଜନିତ କାରଣ ଦର୍ଶାଇ ହଲ୍ ବାହାରକୁ ଚାଲି ଆସିଥିଲେ । ସେମାନେ ପ୍ରଥମ ସୋ ନିମନ୍ତେ ଆସିଥିବା କଳାକାର, ପ୍ରଯୋଜକମାନଙ୍କୁ ପରେ ପାନେ ଦେବାପାଇଁ ଏବଂ ଚଳଚ୍ଚିତ୍ର ବନ୍ଦ୍ କରିଦେବା ପାଇଁ ପାଟିତୁଣ୍ଡ ସମେତ ଧସ୍ତାଧସ୍ତି କରିଥିଲେ ।

''ଗଣ୍ଡୋଗୋଳକାରୀମାନେ ହାସ୍ୟ ଅଭିନେତା ବିନ୍ଦୁ ମଲ୍ଲିକଙ୍କୁ ମାଡ଼ ଦେବା ପରେ ଉତ୍ତେଜନା ବୃଦ୍ଧି ପାଇଥିଲା । ଉପସ୍ଥିତ ଶତାଧିକ ଲୋକ ହସ୍ତକ୍ଷେପ କରି ଗଣ୍ଡଗୋଳକାରୀମାନଙ୍କୁ ବାଧା ଦେଇଥିଲେ । ଏହି ଧସ୍ତାଧସ୍ତି ମଧ୍ୟରେ ଆହତ ହୋଇ ଜଣେ ପୋଲିଶ୍ କର୍ମଚାରୀ ମଧ୍ୟ ଡାକ୍ତରଖାନାରେ ଚିକିତ୍ସିତ ହୋଇଥିଲେ । କେତେକ ହରିଜନ ଯୁବକ ମଧ୍ୟ ଆହତ ହୋଇଥିବା ପ୍ରକାଶ ।

''ଚଳଚ୍ଚିତ୍ରର ଏକ ଭୂମିକାରେ ଡାକ୍ତର ଗ୍ରାମବାସୀମାନଙ୍କୁ 'ଜନ୍ତୁ' ବୋଲି କହିବା ଏବଂ ବଜ୍‌ନୀୟାମାନେ ଗାମୁଛାରେ ଭାତ ରଖି ଖାଇବା ପ୍ରଭୃତି ସଂଳାପ ଏବଂ ଦୃଶ୍ୟ ଅପମାନ ସୂଚକ ବୋଲି ଏହି ଯୁବକମାନେ ଆପତ୍ତି କରୁଥିବା ଜଣା ପଡ଼ିଛି ।''

*–''ପ୍ରଜାତନ୍ତ୍ର ସାପ୍ତାହିକୀ'' (୩ ସେପ୍ଟେମ୍ବର୍ ୧୯୮୯)*

''ଭୂଖା'' ବିରୁଦ୍ଧରେ ଏ ପ୍ରକାରର ବିରୋଧ ସତ୍ତ୍ୱେ, ଚଳଚ୍ଚିତ୍ରଟି ବିଭିନ୍ନ ପ୍ରେକ୍ଷାଳୟରେ ଏବଂ ପରବର୍ତ୍ତୀ ବର୍ଷ ଓଡ଼ିଶାର ପାଞ୍ଚଗୋଟି ସହରରେ ଅନୁଷ୍ଠିତ ହୋଇଥିବା ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବରେ ପ୍ରଦର୍ଶିତ ହୋଇ ବିଦ୍‌ଗ୍ଧ ଦର୍ଶକମାନଙ୍କୁ ଆକୃଷ୍ଟ କରିଥିଲା । ଏହି ଅୟମାରମ୍ଭ ଚିତ୍ରଟିଦ୍ୱାରା ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ର ଓଡ଼ିଆ ସିନେମା ଜଗତରେ ଏକ ନିର୍ଦ୍ଦିଷ୍ଟ ଅସନ ଅଧିକାର କରିବାରେ ସକ୍ଷମ ହୋଇଛନ୍ତି ।

୧୯୮୯ ସାଲରେ ଔପନ୍ୟାସିକ କାହ୍ନୁଚରଣ ମାହାନ୍ତିଙ୍କ ଶ୍ରେଷ୍ଠ ସାହିତ୍ୟ କୃତି ''ଶାସ୍ତି''କୁ ଚଳଚ୍ଚିତ୍ରରେ ରୂପାୟିତ କରିଥିଲେ ନିର୍ଦ୍ଦେଶକ ବୃନ୍ଦାବନ ଜେନା । ଶ୍ରୀ ଜେନା ପୂର୍ବରୁ ଯଦିଓ ସିନେମା ନିର୍ଦ୍ଦେଶନା ଦେଇଥିଲେ ତାଙ୍କ ନିର୍ଦ୍ଦେଶନା ଦକ୍ଷତାର ଉଲ୍ଲେଖଯୋଗ୍ୟ ବିକାଶ ''ଶାସ୍ତି''ରେ ପ୍ରତିଫଳିତ ହୋଇଥିବା ଦେଖିବାକୁ ମିଳିଲା । ତେବେ ବ୍ୟବସାୟିକ ସଫଳତା ପାଇଁ କିଛିଟା ବ୍ୟଗ୍ରତା ଏବଂ ବିଷୟବସ୍ତୁ ପ୍ରତି ବିଶ୍ୱସ୍ତ ରହିବାର ଅର୍ନ୍ତଦ୍ୱନ୍ଦ ସିନେମାଟିରେ ମଧ୍ୟ ଆତ୍ମପ୍ରକାଶ କରିଛି ।

ନିର୍ଦ୍ଦେଶକ ମନମୋହନ ମହାପାତ୍ରଙ୍କ ଦ୍ୱାରା ନିର୍ମିତ ଅଷ୍ଟମ ଚିତ୍ର ''ଅନ୍ଧ ଦିଗନ୍ତ'' ୧୯୮୯ରେ ଶ୍ରେଷ୍ଠ ଓଡ଼ିଆ ଚଳଚ୍ଚିତ୍ର ରୂପେ ଭାରତ ସରକାରଙ୍କ ଦ୍ୱାରା ଜାତୀୟ ସ୍ତରରେ ପୁରସ୍କୃତ ହୋଇଥିଲା । ବିଷୟବସ୍ତୁ ଦୃଷ୍ଟିରୁ ''ଅନ୍ଧ ଦିଗନ୍ତ'' ଶ୍ରୀ ମହାପାତ୍ରଙ୍କ ଦୁଇଟି

ପୂର୍ବ କୃତିଠୁଁ ବିଶେଷ ଭିନ୍ନ ନୁହେଁ । ଏଇ ଚଳଚ୍ଚିତ୍ରରେ ସେ ଏକ ଅବିବାହିତ ମାଆର ଜୀବନ-ନିର୍ବାହ ସଂକଟ ରୂପେଲି ପରଦାରେ ଚିତ୍ରାୟିତ କରିଛନ୍ତି । ''ଅନ୍ଧ ଦିଗନ୍ତ''ରେ ମଧ୍ୟ ବ୍ୟକ୍ତି ଜୀବନକୁ କବଳିତ କରି ଆସିଛି ସମାଜ, ଠିକ୍ ଯେପରି ତାହା କବଳିତ କରିଥିଲା ''ନୀରବ ଝଡ଼''ର କୃଷକ ପରିବାରକକୁ ଏବଂ ''କ୍ଲାନ୍ତ ଅପରାହ୍ନ''ର ଶିକ୍ଷୟିତ୍ରୀଙ୍କୁ । ''ଅନ୍ଧ ଦିଗନ୍ତ''ର ମୁକ୍ତି ସମୟ ଯାହା ହେଉନା କାହିଁକି, ''କିଛି ସ୍ମୃତି, କିଛି ଅନୁଭୂତି'' ହିଁ ମନମୋହନ ମହାପାତ୍ରଙ୍କ କଳାକାର ରୂପେ ଅଗ୍ରଗତିର ପରିଚାୟକ ।

୧୯୮୯ରେ ଅନୁଷ୍ଠିତ ହୋଇଥିବା ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବ ମଧ୍ୟ ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା । ୧୯୭୯ରୁ ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମ ଅନୁଷ୍ଠିତ କରୁଥିବା ଏହି ଉତ୍ସବ କଟକର ଗ୍ରାଣ୍ଡ ସିନେମାରେ ହିଁ ୧୦ ବର୍ଷ ଧରି ପାଳିତ ହେଉଥିଲା । କିନ୍ତୁ ୧୯୮୯ରେ ଏହା କଟକ ଓ ଭୁବନେଶ୍ୱର ଉଭୟ ସହରରେ ଅନୁଷ୍ଠିତ ହେଲା । ଏ ବର୍ଷର ଉତ୍ସବସ୍ଥଳୀ ଥିଲା କଟକର ଶହୀଦ୍‌ଭବନ ଏବଂ ଭୁବନେଶ୍ୱରର କେଶରୀ ସିନେମା । ଓଡ଼ିଆ ଭାଷାର ଦ୍ୱିତୀୟ ଓ ତୃତୀୟ ଚଳଚ୍ଚିତ୍ର ''ଲଳିତା'' ଓ ''ଶ୍ରୀ ଜଗନ୍ନାଥ'' ସାମିଲ୍ ହୋଇ ଏହି ଉତ୍ସବର ମର୍ଯ୍ୟାଦା ବଢ଼ାଇଥିଲା ।

ଉକ୍ତ ବର୍ଷ ଓଡ଼ିଆ ସିନେମା ପାଇଁ ଅନ୍ୟ ଏକ ଉତ୍ସାହପ୍ରଦ ଘଟଣା ଘଟିଥିଲା । ମେ'୮ ତାରିଖ ଦିନ ତିନି କୋଟି ଟଙ୍କା ବ୍ୟୟରେ, କଳିଙ୍ଗ ଷ୍ଟୁଡ଼ିଓ ପରିସରରେ ଗୋଟିଏ ପ୍ରସେସିଂ ଲେବେରେଟରୀ ସ୍ଥାପନ ପାଇଁ ଭିତ୍ତି ପଡ଼ିଲା । ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମ ଏବଂ ମେତ୍ରାସର ପ୍ରସାଦ ଲେବେରେଟରୀର ମିଳିତ ଉଦ୍ୟମରେ ନିର୍ମାଣ ଆରମ୍ଭ ହେଲା ଏଇ କାରଖାନା, ଯେଉଁଥିରେ କଳା ଧଳା ଏବଂ ରଂଗୀନ୍ ଫିଲ୍ମ ପ୍ରସେସିଂ, ଶବ୍ଦ ରୋପଣ, ୧୬ ମିଲିମିଟର୍ ଫିଲ୍ମକୁ ୩୫ ମିଲିମିଟର୍‌ରେ ଏବଂ ୩୫ ମିଲିମଟର୍ ଫିଲ୍ମକୁ ୧୬ ମିଲିମିଟର୍‌ରେ ରୂପାନ୍ତରୀତ କରାଯିବାର ବ୍ୟବସ୍ଥା ରହିବା ବ୍ୟବସ୍ଥା ରହିଲା ।

୧୯୮୮ରେ ଓଡ଼ିଶା ବାହାରର ଦୁଇଜଣ ନିର୍ମାତାଙ୍କ ଦ୍ୱାରା ପ୍ରସ୍ତୁତ ଗୋଟିଏ ପ୍ରାମାଣିକ ଚଳଚ୍ଚିତ୍ର ମଧ୍ୟ ଉଲ୍ଲେଖର ଦାବି ରଖେ । ଶ୍ରୀମତୀ ବସୁଧା ଯୋଶୀ ଓ ଶ୍ରୀ ରଂଜିତ୍ ପାଲିତ୍‌ଙ୍କ ଦ୍ୱାରା ପ୍ରସ୍ତୁତ ୪୪ ମିନିଟ୍ ଦୀର୍ଘ ଏଇ ପ୍ରାମାଣିକ ସିନେମାର ନାମ, ''ଭୟସେସ୍ ଫ୍ରାମ୍ ବାଲିଆପାଳ'' (ବା ବାଲିଆପାଳର ଆୱାଜ୍) । ବାଲେଶ୍ୱର ଜିଲ୍ଲାର ବାଲିଆପାଳ ଅଞ୍ଚଳରେ ଭାରତର ପ୍ରତିରକ୍ଷା ମନ୍ତ୍ରଣାଳୟ ଗୋଟାଏ କ୍ଷେପଣାସ୍ତ୍ରଘାଟୀ ସ୍ଥାପନ ପାଇଁ ବିଭିନ୍ନ ପଦକ୍ଷେପ ନେଇଥିଲା; କିନ୍ତୁ କ୍ଷେପଣାସ୍ତ୍ରଘାଟୀ ବସାଇ ନ ଦେବା ପାଇଁ ସେ ଅଞ୍ଚଳର ଅବାଳବୃଦ୍ଧବନିତା ପ୍ରବଳ ପତିରୋଧ ଆରମ୍ଭ କରିଥିଲେ । ଓଡ଼ିଶାର ସେହି ଗ୍ରାମ୍ୟ ଜନତାର ସଂଘବଦ୍ଧ ପ୍ରତିରୋଧ ଥିଲା ସଂକଳ୍ପ ସମ୍ବଳିତ ଏବଂ ଦୀର୍ଘଦିନସ୍ଥାୟୀ । ବାଲିଆପାଳବାସୀଙ୍କ ଏହି ସୁଦୀର୍ଘ ସଂଗ୍ରାମକୁ ପ୍ରାମାଣିକ ଚଳଚ୍ଚିତ୍ରଟି ରୂପାୟିତ କରିଛି ପ୍ରଧାନତଃ ସଂଗ୍ରାମୀ ଜନତାର ନିଜସ୍ୱ ଗ୍ରାମ୍ୟ ଓଡ଼ିଆ ଭାଷାରେ ଯଦିଓ ଏହାର ପୃଷ୍ଠପଟ

ବିବରଣୀ ଇଂରାଜୀ ଥିଲା । ନିର୍ମାତା ନିର୍ଦ୍ଦେଶକଙ୍କର ଏହି ମିଳିତ ଉଦ୍ୟମ ବହୁ ଜାତୀୟ ଓ ଆନ୍ତର୍ଜାତିକ ପୁରସ୍କାର ହାସଲ କରିପାରିଥିଲା ।

ନବମ ଦଶନ୍ଧିରେ ଓଡ଼ିଶାରେ ସିନେମାହଲ୍ ସଂଖ୍ୟା ମଧ୍ୟ ଆଖି ଦୃଶିଆ ଭାବେ ବୃଦ୍ଧି ପାଇଥିଲା ଯଦିଓ ଲୋକସଂଖ୍ୟା ଅନୁପାତରେ ପ୍ରେକ୍ଷାଳୟ ସଂଖ୍ୟା ଯଥେଷ୍ଟ ନୁହେଁ । ଓଡ଼ିଶା ଚଳଚ୍ଚିତ୍ର ନିଗମର ବାର୍ଷିକ ବିବରଣୀ ପୁସ୍ତିକା (ମାର୍ଚ୍ଚ ୧୯୮୯) ଅନୁଯାୟୀ ଉକ୍ତ ଦଶକରେ ଚଳଚ୍ଚିତ୍ର ପ୍ରେକ୍ଷାଳୟ ସଂଖ୍ୟା ୧୩୯ରୁ ୨୫୬କୁ ବୃଦ୍ଧି ପାଇଥିଲା । ଏହି ହଲ୍‌ମାନଙ୍କ ମଧ୍ୟରୁ ୭୧ଗୋଟି କମ୍ ଅର୍ଥରେ ନିର୍ମିତ ଜନତା ସିନେମା ବୋଲି ପୁସ୍ତିକାରେ ଦର୍ଶାଯାଇଛି ।

ନବମ ଦଶକରେ ଓଡ଼ିଆ ସିନେମା ଦ୍ୱାରା ଯଶଲାଭ କରିଥିବା କେତେଜଣ ବ୍ୟକ୍ତିତ୍ୱ ଇହଲୀଳା ସାଙ୍ଗ କରିଥିଲେ । ସେଥିରୁ ଦି' ଜଣ ହେଲେ ପ୍ରଯୋଜକ ବାବୁଲାଲ ଦୋଶୀ ଓ ଅଭିନେତା ନିର୍ଦ୍ଦେଶକ ରାଧା ପଣ୍ଡା । ସେପ୍ଟେମ୍ବର ୯, ୧୯୮୫ରେ ୬୭ ବର୍ଷ ବୟସ୍କ ବାବୁଲାଲଙ୍କ ଦେହାନ୍ତ ଓଡ଼ିଶାର ସିନେମା ପ୍ରେମୀ କେବଳ ନୁହଁ କଳାପ୍ରେମୀମାନଙ୍କୁ ମଧ୍ୟ ଦୁଃଖାଭିଭୂତ କରିଥିଲା । ଗୁଜୁରାଟ୍‌ରେ ଜନ୍ମିତ ବାବୁଲାଲ୍ ଓଡ଼ିଶାର ନୃତ୍ୟ, ସଂଗୀତ ଓ ନାଟକର ଅଭିବୃଦ୍ଧି ପାଇଁ ନିଜକୁ ନିୟୋଜିତ କରିବାର ବହୁବର୍ଷ ପରେ ସିନେମା କ୍ଷେତ୍ରକୁ ଆସିଥିଲେ । ଅନ୍ୟାନ୍ୟ କଳାରେ ତାଙ୍କର ପୂର୍ବ ଅଭିଜ୍ଞତା ବାବୁଲାଲ୍‌ଙ୍କୁ ଚଳଚ୍ଚିତ୍ର ନିର୍ମାଣରେ ବହୁତ ସାହାଯ୍ୟ କରିଥିଲା । ଶ୍ରୀ ଚୈତନ୍ୟ ନାମରେ ଏକ ଶେଷ ସିନେମା ପ୍ରସ୍ତୁତ କରିବାର ଅଭିଳାଷ ତାଙ୍କର ଥିଲା ଓ ସେଥିପାଇଁ ସେ କିଛି ପ୍ରାଥମିକ ଉଦ୍‌ଯୋଗ ମଧ୍ୟ କରିଥିଲେ । ବାବୁଲାଲ୍‌ଙ୍କର ହଠାତ୍ ମୃତ୍ୟୁ ଓଡ଼ିଆ ସିନେମା ଶିଳ୍ପର ଅପୂରଣୀୟ କ୍ଷତି ଘଟାଇଛି, ଏହା ସମସ୍ତେ ଅକୁଣ୍ଠ ସ୍ୱରରେ ସ୍ୱୀକାର କରନ୍ତି । ଅନ୍ୟ ଏକ ଦୁଃଖର କଥା, ବାବୁଲାଲ୍‌ଙ୍କ ମୃତ୍ୟୁ ପରେ ପରେ ତାଙ୍କ ପ୍ରତିଷ୍ଠିତ ''ଛାୟାବାଣୀ ପ୍ରତିଷ୍ଠାନ''ର ସବସର୍ଵ ବିକ୍ରୀ ହୋଇଗଲା ଏବଂ ତା'ର ପ୍ରତିଷ୍ଠାତାଙ୍କ ଦେହାନ୍ତ ସହ ସେହି ସୁପରିଚିତ ସିନେମା ନିର୍ମାଣ ସଂସ୍ଥାର ନାଆଁଟି ମଧ୍ୟ ଲୋପ ପାଇଗଲା ।

ମୃତ୍ୟୁଦ୍ୱାରା ଆମ ଗହଣରୁ ଚାଲିଯାଇଥିବା ଚଳଚ୍ଚିତ୍ର ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ସ୍ୱର୍ଗତ ଭାସ୍କର ସାହୁ ମଧ୍ୟ ଉଲ୍ଲେଖନୀୟ । ଭାସ୍କର ବାବୁ କ୍ୟାମେରାମେନ୍ ରୂପେ ଓଡ଼ିଶା ସରକାରଙ୍କ ଅଧୀନରେ ଚାକିରିଆ ଥିଲେ; କିନ୍ତୁ ଶିମିଳିପାଳ ଜଙ୍ଗଲର ପୋଷା ମାନିଥିବା ବାଘ ''ଖଇରି'' ଉପରେ ସେ ଯେଉଁ ପ୍ରାମାଣିକ ଚଳଚ୍ଚିତ୍ରଟି କରିଥିଲେ ତାହା କାଳଜୟୀ । ୧୯୮୫ ସାଲର ଉତ୍ତରାର୍ଦ୍ଧରେ ଭାସ୍କର ସାହୁ ମଧ୍ୟ ମୃତ୍ୟୁ ଦ୍ୱାରା ଅଦିନରେ ଝରି ଗଲେ ।

ଓଡ଼ିଆ ସିନେମା ଜଗତର ଅନ୍ୟତମ ପରିଚିତ ବ୍ୟକ୍ତିତ୍ୱ ରାଧା ପଣ୍ଡାଙ୍କ ଆକସ୍ମିକ ବିୟୋଗ ଘଟିଲା ନଭେମ୍ବର ୨୩, ୧୯୮୭ରେ । ତାଙ୍କ ମୃତ୍ୟୁରେ ଏକ ପ୍ରତିଶ୍ରୁତି ପୂର୍ଣ୍ଣ ପ୍ରତିଭାର ହଠାତ୍ ପୂର୍ଣ୍ଣଛେଦ ଘଟିଲା କାରଣ ମୃତ୍ୟୁ ବେଳକୁ ତାଙ୍କୁ ମାତ୍ର ୪୬ ବର୍ଷ ହୋଇଥିଲା । ଜଣେ ହାସ୍ୟଅଭିନେତା ରୂପେ ସେ ପ୍ରାୟ ୧୫ ବର୍ଷ ଧରି ଦର୍ଶକଙ୍କ ମନ

ଉପାଣିତ କରିଥିଲେ । ତାଙ୍କ ନିର୍ଦ୍ଦେଶିତ ପ୍ରଥମ ଓ ଶେଷ ସିନେମା ''ଭକ୍ତ ସାଲବେଗ'' ମଧ୍ୟ କେତେକାଂଶରେ ଭଲ ମନୋରାଂଜନର ପ୍ରତିଶ୍ରୁତି ବହନ କରିଥିଲା ଓ ଜନ-ମନ ଆକର୍ଷଣ କରିବାରେ ସକ୍ଷମ ହୋଇଥିଲା । ୧୯୪୧ ସାଲରେ ଭଞ୍ଜନଗର ନିକଟସ୍ଥ ଗୋଟିଏ ପଲ୍ଲୀରେ ଜନ୍ମଲାଭ କରିଥିବା ରାଧାବାବୁଙ୍କ ଅଭିନୀତ ପ୍ରଧାନ ସିନେମା ଗୁଡ଼ିକ ହେଲା– ''ଘର ବାହୁଡ଼ା'', ''ଉଲ୍‌କା'', ''ତଅପୋଇ'', ''ଚିଲିକା ତୀରେ'', ''ମା ଓ ମମତା'', ''ବତାସୀ ଝଡ଼'', ''ସୁନାଚଢ଼େଇ'' ଇତ୍ୟାଦି ।

୧୯୮୭ ସାଲର ନଭେମ୍ବର ୧୪ରୁ ୨୩ ତାରିଖ ଯାଏଁ ଭୁବନେଶ୍ୱରରେ ଅନୁଷ୍ଠିତ ଭାରତର ପଞ୍ଚମ ଆର୍ନ୍ତଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ ଅନ୍ୟତମ ସିନେମା ଘଟଣା ରୂପେ ସ୍ମରଣୀୟ । ଓଡ଼ିଶାରେ ଏପରି ଉତ୍ସବ ଅନୁଷ୍ଠିତ ହେବାରେ ଏହା ପ୍ରଥମ । ଭୁବନେଶ୍ୱର ଓ କଟକର ପ୍ରାୟ ଏକ ଡଜନ୍ ସିନେମା ହଲ୍‌ରେ ଜାତୀୟ ଓ ଆର୍ନ୍ତଜାତୀୟ ସ୍ତରରୁ ଆସିଥିବା ବିଭିନ୍ନ ଶିଶୁ ଚଳଚ୍ଚିତ୍ର ଦର୍ଶକମାନଙ୍କ ପାଇଁ ପରିବେଷିତ ହୋଇଥିଲା । ଭଲ ଶିଶୁ ସିନେମା ଗୁଡ଼ିକ (ଯଥା : ଜାପାନ୍‌ରୁ ଆସିଥିବା ''ଚିତ୍ରନ୍‌ର ଅଭିଯାନ'') ଦର୍ଶକମାନଙ୍କ ପାଇଁ ସ୍ପଷ୍ଟ କରିଦେଲା ଯେ, ସୁନିର୍ମିତ ହୋଇଥିଲେ, କଳାତ୍ମକ ହୋଇ ଥିଲେ ପିଲାଙ୍କ ପାଇଁ ନିର୍ମିତ ସିନେମା ସମସ୍ତଙ୍କୁ ଆକୃଷ୍ଟ କରିପାରେ । ଅଭିନେତା ନିର୍ଦ୍ଦେଶକ ସାଧୁ ମେହେରଙ୍କ ଦ୍ୱାରା ନିର୍ଦ୍ଦେଶିତ ଓ ସେତେବେଳେ ଯାଏଁ ଏକମାତ୍ର ଓଡ଼ିଆ ଶିଶୁ ଚଳଚ୍ଚିତ୍ର ''ବାବୁଲା'' ଏଇ ଉତ୍ସବରେ ପ୍ରଦର୍ଶିତ ହୋଇଥିଲା ।

୧୯୮୮ରେ କଳିଙ୍ଗ ଷ୍ଟୁଡ଼ିଓ କର୍ମଚାରୀମାନେ ସେମାନଙ୍କର କେତେକ ଯୁକ୍ତିଯୁକ୍ତ ଦାବୀ ହାସଲ ପାଇଁ ଦୀର୍ଘଦିନ ଧରି ଧର୍ମଘଟ କରିଥିଲେ । ଷ୍ଟୁଡ଼ିଓରେ କାମକରୁଥିବା ସମସ୍ତ କାରୀଗର ଏ ଧର୍ମଘଟରେ ସାମିଲ ହୋଇଥିଲେ । ସେଇ ବର୍ଷ ସେପ୍ଟେମ୍ବର ଦୁଇ ତାରିଖରୁ ଆରମ୍ଭ ହୋଇ ଅକ୍ଟୋବର ତୃତୀୟ ସପ୍ତାହ ଯାଏଁ ସମସ୍ତ ଟେକ୍ନିସିୟନ୍ ଓଡ଼ିଶା ଏସେମ୍ବ୍ଲି ଆଗରେ ପ୍ରଥମେ ଧାରଣା ଦେଇ ବସି ରହିଥିଲେ ଓ ପରେ ଅନଶନ କରିଥିଲେ । ଓଡ଼ିଶାର ବହୁ ଲବ୍‌ଧ ପ୍ରତିଷ୍ଠ ଚଳଚ୍ଚିତ୍ର କଳାକାର, ଯଥା– ପ୍ରଶାନ୍ତ ନନ୍ଦ, ଉତ୍ତମ ମହାନ୍ତି, ମହାଶ୍ୱେତା ରାୟ ପ୍ରଭୃତି ଧର୍ମଘଟ ପ୍ରତି ସମର୍ଥନ ଜଣାଇ ଧାରଣାସ୍ଥଳୀକୁ ଯାଇଥିଲେ । କର୍ମଚାରୀମାନେ ସେମାନଙ୍କ ସ୍ତରର ଅନ୍ୟାନ୍ୟ ସରକାରୀ ଦରମା କର୍ମଚାରୀମାନେ ଯେଉଁ ଦରମା ଓ ସୁବିଧା ସୁଯୋଗ ପାଉଛନ୍ତି ତାହା ହିଁ ଦାବୀ କରିଥିଲେ । ଧାରଣା ଫଳପ୍ରଦ ନହେବାରୁ ୩୮ଜଣ କର୍ମଚାରୀ ଅନଶନ ଘୋଷଣା କରିଥିଲେ ଏବଂ ଅକ୍ଟୋବର ୫ ତାରିଖ ବେଳକୁ ସେମାନଙ୍କ ମଧ୍ୟରୁ ଚାରି ଜଣଙ୍କର ଅବସ୍ଥା ସଂକଟାପନ୍ନ ହୋଇଗଲା । ସେତେବେଳକୁ ଓଡ଼ିଶା ବିଧାନ ସଭାର ଅଧିବେଶନ ଚାଲିଥାଏ । ବାଚସ୍ପତି ପ୍ରସନ୍ନ କୁମାର ଦାସ ଓଡ଼ିଶାର ଶ୍ରମମନ୍ତ୍ରୀଙ୍କୁ ଧର୍ମଘଟ ସମାଧାନ ପାଇଁ ନିର୍ଦ୍ଦେଶ ଦେଇଥିଲେ । ଗୋଟାଏ କିଛି ବୁଝାମଣା ବି ହୋଇଥିଲା । କିନ୍ତୁ ଧର୍ମଘଟ ପ୍ରତ୍ୟାହାର କରି କର୍ମଚାରୀମାନେ ଶେଷ ସୁଦ୍ଧା ନିଜକୁ ପ୍ରତାରୀତ ମନେ କରିଥିଲେ ।

୧୯୮୮ରେ ଅଭିନେତ୍ରୀ ମହାଶ୍ୱେତା ରାୟ ଅନ୍ତତଃ କିଛି ଦିନ ପାଇଁ ଗୋଟିଏ ପ୍ରକାରର ଆଲୋଡ଼ନ ସୃଷ୍ଟି କରିଥିଲେ । ଓଡ଼ିଶା ସରକାର ଏକାଥରକେ ଚାରିବର୍ଷର ଓଡ଼ିଆ ସିନେମା ପୁରସ୍କାରର ବିଜେତାମାନଙ୍କର ନାମ ଘୋଷଣା କଲେ । ''କାବେରୀ'' ଚିତ୍ରରେ ଅଭିନୟ ପାଇଁ ମହାଶ୍ୱେତା ପୁରସ୍କୃତ ହେବେ ବୋଲି (୧୯୭୨ରୁ ପୁରସ୍କାର ଦେଉଥିବା) ଓଡ଼ିଶାର ସଂସ୍କୃତି ବିଭାଗ ଘୋଷଣା କଲେ । ଅଭିନେତ୍ରୀ ଘୋଷଣା କଲେ– ଯେଉଁ ବିଚାରକ ମଣ୍ଡଳି ପୁରସ୍କାର ନିରୂପଣ କରନ୍ତି ସେମାନଙ୍କ ଯୋଗ୍ୟତା ସନ୍ଦେହଜନକ । ମହେଶ୍ୱେତା ଏପରି ଘୋଷଣା କରିବାର କିଛି ଦିନ ମଧ୍ୟରେ ଶ୍ରୀ ପ୍ରଶାନ୍ତ ନନ୍ଦ, ଶ୍ରୀ ଦୁଃଖିରାମ ସ୍ୱାଇଁ ଓ ଶ୍ରୀ ଉତ୍ତମ ମହାନ୍ତି ମଧ୍ୟ ପୁରସ୍କାର ପ୍ରତ୍ୟାଖ୍ୟାନ ଘୋଷଣା କଲେ । ଯନ୍ତ୍ରଭଳି ପୁରସ୍କାର ଅଜାଡ଼ି ହୋଇ ଦେଉଥିବା ରାଜ୍ୟ ସରକାରୀ ମହଲରେ ଏସବୁ ପ୍ରତ୍ୟଖ୍ୟାନ ଘୋଷଣା ନିଃସନ୍ଦେହରେ କିଛିଟା ଆଲୋଡ଼ନ ସୃଷ୍ଟି କରିଥିଲା ।

ଯୋଗ୍ୟତା ବିଚାରକୁ ନ ନେଇ ବିଭିନ୍ନ ବ୍ୟକ୍ତିଙ୍କୁ ସାଂସ୍କୃତିକ ଜଗତର ବିଚାରକ ଆସନରେ ବସାଇଦେବା, ଓଡ଼ିଶାରେ ଏକ ଅସୁସ୍ଥ ପରଂପରାରେ ପରିଣତ ହୋଇଛି । ଏହା ଏକ ପ୍ରକାରର ବୌଦ୍ଧିକ ଅସାଧୁତା ଯା' ପାଇଁ ଆମ ସାଂପ୍ରତିକ ସମାଜରେ ଏବେ ସ୍ୱୀକୃତି ମିଳିଗଲାଣି କହିଲେ ଅତ୍ୟୁକ୍ତି ହେବନି । ଯେନ-ତେନ ବିଚାରକ ମଣ୍ଡଳୀ ଯଦି ସିନେମା ପରି ବହୁ-କଳା ସମନ୍ୱିତ ସୃଜନ ମାଧ୍ୟମର ମୂଲ୍ୟାୟନ କରନ୍ତି ସେହି ମୂଲ୍ୟାୟନର ମୂଲ୍ୟ ବା କ'ଣ ?

ଏ ଦୃଷ୍ଟିରୁ ବିଚାର କଲେ ଓଡ଼ିଶାର କଳା ଜଗତରେ ଏକ ପ୍ରକାରର କାଳ ଦୁର୍ଯୋଗ ଘଟି ଯାଇଛି । କେବଳ ସିନେମା ମୂଲ୍ୟାୟନରେ ବିଚାର–ଦୈନ୍ୟତା ସୀମିତ ନୁହେଁ; ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଚିତ୍ରକଳା, ନାଟକ ପ୍ରଭୃତି ପ୍ରତିଟି ସାଂସ୍କୃତିକ ଅଭିବ୍ୟକ୍ତିକୁ ଏଠାରେ ସମାଲୋଚନାର କଷଟି ପଥରରେ ପରୀକ୍ଷା କରାଯିବା ପାଇଁ ଉତ୍ସାହିତ କରାଯାଏନି । ଏପରିକି ସମୀକ୍ଷା ସ୍ପୃହା ଓ ଉଦ୍ୟମକୁ ଉତ୍କଳ ଭୂଇଁରେ (ଆକ୍ଷରିକ ଅର୍ଥରେ କଳାର ବିକାଶ ହୋଇଛି ଯେଉଁଠି) ବରଂ ଚାପି ଦିଆଯାଏ । ଓଡ଼ିଶୀ ନୃତ୍ୟ ଜଗତର ଗୋଟାଏ ଉଦାହରଣ ସ୍ପଷ୍ଟ କରିବ ଜଣେ ସମୀକ୍ଷକ ଏଠାରେ କିପରି ଦୁର୍ଦ୍ଦଶାଗ୍ରସ୍ତ ହୋଇପାରେ ।

ଜଣେ ଓଡ଼ୀଶୀ ନୃତ୍ୟଶିଳ୍ପୀଙ୍କ ନୃତ୍ୟ ଦେଖି ଜଣେ ବିଦ୍ୱାନ୍ କିଛି ବର୍ଷ ତଳେ ଗୋଟିଏ ସାପ୍ତହିକ ପତ୍ରିକାରେ ସମୀକ୍ଷାଟିଏ ଲେଖିଲେ । ସମୀକ୍ଷକ ନିଜେ ଚିତ୍ର ଶିଳ୍ପୀ ଇଂରାଜୀରେ ବହି ଲେଖି ଦେଶବିଦେଶରେ ସୁନାମ କରିଛନ୍ତି । ନୃତ୍ୟ ଶିଳ୍ପୀଙ୍କର ପସନ୍ଦ ହେଲାନାହିଁ ସମୀକ୍ଷକଙ୍କ ସେହି ମୂଲ୍ୟାୟନ; ସେ ବୋଧହୁଏ ମନେକଲେ ଦୂର ଦୂରାନ୍ତରେ ସେ ଜମେଇଥିବା ମନୋରଂଜନ୍ ମାର୍କେଟରେ ଏହା ଆଞ୍ଚ ଆଣିପାରେ । ବାସ୍ ! ନୃତ୍ୟ ଶିଳ୍ପୀ ଆକ୍ରମଣକରି ସମୀକ୍ଷକଙ୍କୁ ଏପରି ରକ୍ତାକ୍ତ କରିଦେଲେ ଯେ ପଳାଇଯିବାକୁ ଲେଖକ ବାଟ ପାଇଲେ ନାହିଁ । ଏଇହେଲା ସଂସ୍କୃତି ଜଗତରେ ସମୀକ୍ଷାର ପ୍ରୋତ୍ସାହନ !

ତେବେ ସିନେମା ଭଳି ଜନପ୍ରିୟ କଳାର ସମୀକ୍ଷା ନ ହେବା ଅନ୍ତରାଳରେ ହୁଏତ ବହୁ କାରଣ ଥାଇପାରେ । ସିନେମା ସାମ୍ବାଦିକମାନଙ୍କର ଗୋଟାଏ ଦୁଇଟା ସଂଘ ଓଡ଼ିଶାରେ ରହିଛି । ସିନେମା ପତ୍ରିକା ନାମରେ ଏଠୁ ସେଠୁ ଉଖାରିଥିବା ଲେଖାର ଓଡ଼ିଆ ଅନୁବାଦ ଭର୍ତ୍ତିକରି, ଶସ୍ତା ଉପାଦାନ ଯୋଡ଼ି ରଂଗ ବିରଂଗ ଫୋଟ ସହ ଛାପି ସେ ସବୁ ଏଠାରେ ଚଳାଇ ଦିଆଯାଏ । ସିନେମା ସାମ୍ବାଦିକ ସଂଘର ଟାଣୁଆ ସଭ୍ୟମାନେ ମଧ୍ୟ ଏପରି ପତ୍ରିକାର କଳେବର ସଜାଡୁ ଥା'ନ୍ତି । ଅଥଚ ଏସବୁରେ ଦେଖିବାକୁ ମିଳେନି ସମୀକ୍ଷା-ଯୋଗ୍ୟ କୌଣସି ଲେଖା ।

ଏଣୁ ସାଂପ୍ରତିକ ଓଡ଼ିଶାରେ ଏକ ବଡ଼ ଆବଶ୍ୟକତା ମୂଲ୍ୟାୟନ, ସିନେମାର ଓ ଅନ୍ୟାନ୍ୟ କଳାର ।

ଅବଶ୍ୟ ସିନେମା ସାମ୍ବାଦିକତା ଯେ ଓଡ଼ିଶାରେ ନୂଆ, ତା' ନୁହେଁ । ଏ ଦୃଷ୍ଟିରୁ ମଧ୍ୟ ଉଦ୍ୟମ ଆରମ୍ଭ ହୋଇଥିଲା ଅନେକ ଆଗରୁ । ଅତନୁ ଛଦ୍ମ ନାମରେ କୌଣସି ଜଣେ କଳା ସମୀକ୍ଷକ "ସୀତା ବିବାହ" ମୁକ୍ତି ପାଇବାର ପ୍ରଥମ ରଜନୀରେ ଚଳଚ୍ଚିତ୍ର ଦେଖି ସମୀକ୍ଷା ଲେଖିଥିଲେ "ଉତ୍କଳ ଦୀପିକାର" ୧ମେ ୧୯୩୬ ସଂସ୍କରଣ ପାଇଁ । ମାତ୍ର ମାସକ ପୂର୍ବରୁ ଓଡ଼ିଶା ପାଇଥାଏ ନୂଆ ରାଜନୈତିକ ରୂପ । କିଛି ତ୍ରୁଟି ଆଉ ମାତ୍ରାତିରିକ୍ତ କଠୋରତା ସତ୍ତ୍ୱେ, ଅତନୁଙ୍କ ସମୀକ୍ଷା ଲେଖିବା ଉଦ୍ୟମକୁ ପ୍ରଶଂସା ନ କରି ରହି ହେଉନି ।

ସାହିତ୍ୟିକ ବଂଶୀଧର ନାୟକଙ୍କ ସଂପାଦନାରେ ୧୯୪୨ ସାଲରେ ଆତ୍ମ-ପ୍ରକାଶ କରିଥିଲା "ଚିତ୍ର ଲେଖା" ନାମକ ଓଡ଼ିଆ ସିନେମା ପତ୍ରିକା । ତେବେ ସେହି ପତ୍ରିକାଟି ବେଶିକାଳ ତିଷ୍ଠିପାରି ନ ଥିଲା ।

ସିନେମା ପତ୍ରିକା ପ୍ରକାଶନର ପରବର୍ତ୍ତୀ ଉଦ୍ୟମ ଆରମ୍ଭ ହୋଇଥିଲା ବ୍ରହ୍ମପୁରରୁ । ଶ୍ରୀ କାଳୀ ଚରଣ ତ୍ରିପାଠୀ (ପରବର୍ତ୍ତୀ କାଳରେ ଗଠିତ "ପଞ୍ଚସଖା ପିକ୍‌ଚର୍ସ"ର ଅନ୍ୟତମ ଅଂଶୀଦାର) ୧୯୪୯ରେ ଆରମ୍ଭ କରିଥିଲେ "ସିନେ ଓଡ଼ିଶା" ନାମକ ମାସିକ ଓଡ଼ିଆ ପତ୍ରିକା । ସେହି ପତ୍ରିକା ସହ ସଂପୃକ୍ତ ହୋଇ ଦୀର୍ଘ-ମିଆଦି ସିନେମା ସାମ୍ବାଦିକତା କରିଥିଲେ ଶ୍ରୀ ଗଣେଶ ଚନ୍ଦ୍ର ମହାପାତ୍ର, ବ୍ରହ୍ମପୁରର ଖଲ୍ଲିକୋଟ୍ କଲେଜ୍‌ରୁ ସ୍ନାତକତା ହାସଲ କଲା ପରେ ଦିଲ୍ଲିରେ ଟେକ୍‌ଷ୍ଟାଇଲ୍ ଇଂଜିନିୟରିଂ ପଢୁଥିବା ଉତ୍ସାହୀ ଯୁବକ । ପ୍ରାୟ ଏକ ଦଶକ ଧରି "ସିନେ ଓଡ଼ିଶା" ବଞ୍ଚି ରହିଥିଲା; ଏବଂ ସେଇ ସମୟ ମଧ୍ୟରେ ଗଣେଶବାବୁ ଚଳଚ୍ଚିତ୍ର ସଂପର୍କୀୟ ଅନେକ ପ୍ରକାରର ବିବରଣୀ ସେହି ପତ୍ରିକା ପାଇଁ ଲେଖିଥିଲେ । ପରେ କଟକରୁ ପ୍ରକାଶିତ ହେଉଥିବା ସାହିତ୍ୟ ପତ୍ରିକା "ଜନ ସାହିତ୍ୟ", କଲିକତାରୁ ଆତ୍ମ-ପ୍ରକାଶ କରୁଥିବା "ଆସନ୍ତା କାଲି" ଓ ଦୈନିକ "ପ୍ରଜାତନ୍ତ୍ର" ପାଇଁ ମଧ୍ୟ ସେ ପ୍ରାୟ ନିୟମିତ ଲେଖୁଥିଲେ । ଜୀବନର ଶେଷ ସମୟ ଯାଏଁ ଶ୍ରୀ ମହାପାତ୍ର

ସିନେମା ଉପରେ କିଛି ନା କିଛି ଲେଖିବା ବଜାୟ ରଖିଥିଲେ । (ବମ୍ବେରେ ଥିବା ଫିଲ୍ମସ୍ ଡିଭିଜନରେ ସେ କାର୍ଯ୍ୟ କ୍ଷେତ୍ରରୁ ପୃଷ୍ଠପଟ୍ଟ ଓଡ଼ିଆ-ବିବରଣୀକାରୀ ରୂପେ କାର୍ଯ୍ୟକରି କାର୍ଯ୍ୟ କ୍ଷେତ୍ରରୁ ଅବସର ନେବା ପରେ ମଧ୍ୟ ସେହି ମହାନଗରୀରେ ସପରିବାରେ ରହୁଥିଲେ । ୧୯୯୬ ସାଲରେ ସେ ହଠାତ୍ ଇହଲୀଳା ସାଙ୍ଗ କଲେ ।)

ଓଡ଼ିଆ ଭାଷାରେ ''ଚିତ୍ରପୁରୀ'', ''ବାଣୀଚିତ୍ର'', ''ଜୀବନ ରଂଗ'', ''ସିନେ ସମ୍ବାଦ'' ପ୍ରଭୃତି କେତୋଟି ସିନେମା ପତ୍ରିକା ଅନିୟମିତ ହେଲେ ବି ପ୍ରକାଶ ପାଉଆସୁଛି । କିନ୍ତୁ ଅନିୟମିତତା ହିଁ ସେ ସବୁ ପତ୍ରିକାର ଏକ ମାତ୍ର ଦୋଷ ନୁହେଁ; ବମ୍ବେରୁ ପ୍ରକାଶ ପାଉଥିବା ଶସ୍ତା ସିନେମା ପତ୍ରିକା ଅନୁକରଣ ଦ୍ୱାରା ସେଗୁଡ଼ିକ ପ୍ରାୟ ହିଁ ଅନ୍ତଃସାର ଶୂନ୍ୟ ଓ ଚୌର୍ଯ୍ୟ-ପରିପୁଷ୍ଟ ଓ ସମୀକ୍ଷା-କାତର ।

ଅବଶ୍ୟ ଓଡ଼ିଶାରୁ ପ୍ରକାଶ ପାଉଥିବା କେତେକ ଦୈନିକ ଓଡ଼ିଆ ଖବରକାଗଜ (ଯଥା–''ପ୍ରଜାତନ୍ତ୍ର'', ''ଧରିତ୍ରୀ'', ''ପ୍ରଗତିବାଦୀ'', ପ୍ରଭୃତି) ସିନେମା ଜଗତର ହାଲ୍-ଚାଲ୍ ଦିଅନ୍ତି । ତେବେ ଏ ସବୁ ପତ୍ରିକାର ସିନେମା-ବିଭାଗ ମଣ୍ଡନପାଇଁ ସାମ୍ବାଦିକମାନଙ୍କ ଠାରୁ ମୌଳିକ ବିବରଣୀ ପାଇଁ ଉଦ୍ୟମ ହୁଏନି; ବମ୍ବେ, କଲିକତା ପ୍ରଭୃତି ସହରରୁ ପ୍ରକାଶ ପାଉଥିବା ଇଂରାଜୀ ଓ ହିନ୍ଦୀ ଭାଷାରେ ପ୍ରକାଶିତ ହେଉଥିବା ଚଳଚ୍ଚିତ୍ର ସଂପର୍କୀୟ ଲେଖା ଗୁଡ଼ିକୁ ଭାଷାନ୍ତରୀତ କରି ପରଷି ଦିଆଯାଏ । ମୌଳିକ ଲେଖା କେଉଁମାନେ ଲେଖିବାକୁ ସକ୍ଷମ ତାର ସଂଧାନ ବି କରନ୍ତିନି ମୂଲ୍ୟ-ବୋଧର ଡିଣ୍ଡିମ ପିଟୁଥିବା ଆମ ପତ୍ରିକା ସଂପାଦକମାନେ । ତଥାପି, ଓଡ଼ିଶାରେ ଅନ୍ତତଃ ଜଣେ ସିନେମା ସାମ୍ବାଦିକ ଅଷ୍ଟମ ଦଶକର ପ୍ରାରମ୍ଭରୁ ଏ କ୍ଷେତ୍ରରେ ସକ୍ରିୟ ଅଛନ୍ତି । ସେ ହେଲେ ଶ୍ରୀ ଦିଲୀପ ହାଲି । ଓଡ଼ିଆ ସିନେମା ଜଗତର ହାଲ୍-ଚାଲ୍ ଦେବାରେ ଶ୍ରୀ ହାଲି ସଦା ସକ୍ରିୟ । ବର୍ଷ ବର୍ଷ, ଦଶକ ଦଶକ ଧରି ସିନେମା-ସାମ୍ବାଦିକତା କରିଥିଲେ ମଧ୍ୟ ସେ ଏକଦା ବ୍ୟକ୍ତ କରିଥିଲେ– ''ଅଧିକାଂଶ ଓଡ଼ିଆ ଦୈନିକ ସିନେମା ବିବରଣୀ ସ୍ଥାନିତ କରିବା ପାଇଁ ଆଗ୍ରହୀ; କିନ୍ତୁ ଯତ୍ ସାମାନ୍ୟ ପାରିଶ୍ରମିକ ଦେବାକୁ କୁଣ୍ଠିତ । ଭଲ ଦରର ସିନେମା ସାମ୍ବାଦିକତା ପାଇଁ ଯେ ପ୍ରୋତ୍ସାହନ ଆବଶ୍ୟକ, ଏ ବିଷୟରେ ଆମ ସଂପାଦକମାନେ ସଚେତନ ନ ହେବା ଯାଏଁ ଏ କ୍ଷେତ୍ରରେ ଅଗ୍ରଗତି ଅସମ୍ଭବ ।''

ଶ୍ରୀ ହାଲି ଏକ ଖବର କାଗଜରେ ''ଓଡ଼ିଆ ଫିଲ୍ମ ସାମ୍ବାଦିକତା'' ଶିରୋନାମାରେ ଗୋଟିଏ ବିବରଣୀ ଦେଇଥିଲେ । ଓଡ଼ିଆ ସାମ୍ବାଦିକତା କ୍ଷେତ୍ରରେ ଯେପରି ଅଣ-ପେଷାଦାର ମନୋବୃତ୍ତି ବହୁଳ ପରିଦୃଷ୍ଟ, ଓଡ଼ିଆ ସିନେମା ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ତତୋଧିକ ଅଣ-ପେଷାଦାର ମନୋବୃତ୍ତି ପରିଦୃଷ୍ଟ । ଏ ଦିଗପ୍ରତି ଆଲୋକପାତ କରିଥିବା ଶ୍ରୀ ହାଲିଙ୍କ ଲେଖାରୁ କିଛି ଉଦ୍ଧୃତି ଦେବା ସମୀଚୀନ ମନେ କରୁଛି–

''....ଫିଲ୍ମ ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ଦଳେ ଚାକିରିଆ ତଥା ଅନ୍ୟାନ୍ୟ ପେଷାରେ ଥାଇ କିଛି ବ୍ୟକ୍ତି ବେଳେବେଳେ ଲେଖାଲେଖି କରି ନିଜକୁ ସବ୍‌ଜାନ୍ତା ବୋଲି

ଭାବି ନିଅନ୍ତି ଏବଂ କୌଣସି ପତ୍ରିକାରେ ସୁଯୋଗ ଟିକିଏ ପାଇଲେ ଏପରି ଲେଖି ବସନ୍ତି ଯେ ସେ ପୃଷ୍ଠା ପୂରଣ ହୋଇ ଆଉ କିଛି ବାକି ରହିଥାଏ ।

''ଦୁଇ ନାଆରେ ଯେଉଁମାନେ ରହି ଏହି ପେଷାର ଗୁରୁତ୍ୱ ନ ବୁଝି କାର୍ଯ୍ୟ କରୁଛନ୍ତି ଏବଂ କିଛି ନ ଜାଣି ଲେଖି ଏ ଲାଇନ୍ ପ୍ରତି ଅସମ୍ମାନ କରୁଛନ୍ତି ତାଙ୍କୁ ଠିକଣା ଜବାବ୍ ଦେବା ପାଇଁ କିଛି ସାମ୍ବାଦିକ ସଦାସର୍ବଦା ପ୍ରସ୍ତୁତ ...ହୋଇ ରହିଛନ୍ତି ।...

''ମେରୁଦଣ୍ଡ ବିହୀନ ସାମ୍ବାଦିକତା ପାଇଁ ସବୁ ପ୍ରଶଂସାଯୋଗ୍ୟ ଓ ଚଳନୀୟ । ଏହାକୁ ପିଠି ଥାପୁଡ଼ାଥାପୁଡ଼ି କୁହାଯିବ ସିନା ଆଉ କିଛି ନୁହେଁ ।'' —*''ଧରିତ୍ରୀ''*

ଶ୍ରୀ ହାଲିଙ୍କ ମନ୍ତବ୍ୟ ଆମର ମନନ ଦାବୀକରେ । ସିନେମା ପ୍ରଧାନତଃ ଏକ ମନୋରଂଜନ କଳା ବୋଲି ଯେ ସିନେମା ରିପୋର୍ଟିଂ, ସିନେମା ସମୀକ୍ଷା ପ୍ରଭୃତିକୁ ହାଲ୍କା ଭାବେ ଗ୍ରହଣ କରାଯିବ, ତା'ନୁହେଁ । ସିନେମା ସାମ୍ବାଦିକତାର ଏକି ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଆଉ ରୁଚିବୋଧର ଦିଗ୍‌ଦର୍ଶନ ପାଇଁ ସିନେମା ସମୀକ୍ଷା ଅପରିହାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।





''ନୀରବ ଝଡ଼''ରେ ଅସୀମ ବସୁ

# ବିଂଶ ଶତାବ୍ଦୀର ବହମାନ ଶେଷ ଦଶକ

୧୯୮୮ ସାଲ ଯାଏଁ ସାଲ-ପ୍ରତିର ଓଡ଼ିଆ ସିନେମା ନିର୍ମାଣ ସଂଖ୍ୟା ମୋଟାମୋଟି ମନ୍ଦ ନଥିଲା (ସେଇ ବର୍ଷ ସମୁଦାୟ ୧୬ ଗୋଟି ସିନେମା ନିର୍ମିତ ହୋଇଥିଲା); କିନ୍ତୁ ୧୯୮୯ରୁ ବାର୍ଷିକ ସିନେମା ନିର୍ମାଣ ସଂଖ୍ୟା କମିବାକୁ ଲାଗିଲା । ୧୯୮୯ରେ ମାତ୍ର ୧୩ ଗୋଟି ଚଳଚ୍ଚିତ୍ର ନିର୍ମିତ ହୋଇଥିଲା । ତେବେ ଏହି ବର୍ଷ କେବଳ ତିନୋଟି ଉଲ୍ଲେଖନୀୟ କଥାଚିତ୍ର ପ୍ରସ୍ତୁତ ହୋଇଥିଲା । ସେ ଗୁଡ଼ିକ ହେଲା, ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କ ''ଭୂଖା'', ନିର୍ଦ୍ଦେଶକ ବୃନ୍ଦାବନ ଜେନାଙ୍କ ''ଶାସ୍ତି'' ଏବଂ ନିର୍ଦ୍ଦେଶକ ମନମୋହନ ମହାପାତ୍ରଙ୍କ ''ଅନ୍ଧଦିଗନ୍ତ'' ।

୧୯୯୦ ସାଲରେ ସିନେମା ହଲ୍‌ମାନଙ୍କରେ ମାତ୍ର ନଅ ଗୋଟି ଚଳଚ୍ଚିତ୍ର ମୁକ୍ତି ପାଇଥିଲା । ତେବେ ସେ ବର୍ଷର ଶେଷ ଆଡ଼କୁ ଓଡ଼ିଶାର ସୁପରିଚିତ ସିନେମା ବ୍ୟକ୍ତିତ୍ୱ ଧୀରେନ୍ଦ୍ରନାଥ ବିଶ୍ୱାଳଙ୍କ ପ୍ରଯୋଜନାରେ ଓ ଶ୍ରୀ ମନମୋହନ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ''ଅଗ୍ନିବୀଣା'' ନାମକ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଥିଲା ।

ସଂଶିତ ବର୍ଷ ନିର୍ଦ୍ଦେଶକ ପ୍ରଶାନ୍ତ ନନ୍ଦଙ୍କ ନିର୍ମିତ ଦୁଇଟି ସିନେମା, ''ଯା ଦେବୀ ସର୍ବ ଭୂତେଷୁ'' ଏବଂ ''କଣ୍ଢେଇ'' ମୁକ୍ତି ପାଇଥିଲା । କଥାବସ୍ତୁ ଦୃଷ୍ଟିରୁ ପ୍ରଥମ ଚିତ୍ରଟି ଚର୍ବିତ ଚର୍ବଣ, ହିଂସା ଓ ପ୍ରତିହିଂସାକୁ ଆଧାର କରି ହିଁ ନିର୍ମିତ; ତେବେ ''କଣ୍ଢେଇ''ରେ ସେ କିଛିଟା ଭିନ୍ନ ହେବାକୁ ଚେଷ୍ଟା କରିଛନ୍ତି । ଏ ସିନେମାରେ ନାୟିକାକୁ ବିଭିନ୍ନ ପ୍ରକାରର ''ମେଲୋଡ୍ରାମାଟିକ୍'' ପରିସ୍ଥିତିରେ ରଖା ଯାଇଛି । କିନ୍ତୁ ଆବାସ୍ତବତା ଆଉ ଶସ୍ତା ଉପାଦାନ ''କଣ୍ଢେଇ''ର ମୂଲ୍ୟ ହ୍ରାସ କରିଛି ।

ଓଡ଼ିଆମାନଙ୍କର ଇଷ୍ଟଦେବତା ଜଗନ୍ନାଥଙ୍କ ନାମକୁ ବ୍ୟବହାର କରି ଦୁଇ ଗୋଟି ସିନେମା (''ଠାକୁର ଅଛନ୍ତି ଚଉ ବାହାକୁ'' ଏବଂ ''ଚକାଡ଼ୋଳା କରୁଛି ଲୀଳା'') ମଧ୍ୟ ଉକ୍ତ ବର୍ଷ ମୁକ୍ତି ପାଇଥିଲା । ସମାଜ ପାଇଁ ଗୋଟିଏ ସଂଦେଶ ଥାଇ ନିର୍ମିତ ହୋଇଥିବା କଥାଚିତ୍ର ''ଏଇ ସଂଘର୍ଷ''ରେ ନାୟିକା ରୂପେ ଅଭିନୟ କରିଥିଲେ ବମ୍ବେ ସିନେମା ଜଗତର ଖ୍ୟାତାନାମା ଅଭିନେତ୍ରୀ ଦୀପ୍ତି ନାଭାଲ୍ । ରଜନୀକାନ୍ତ ନିର୍ଦ୍ଦେଶିତ ''ଏଇ ସଂଘର୍ଷ'' ସବର୍ଣ୍ଣ-ଅସବର୍ଣ୍ଣମାନଙ୍କ ମଧ୍ୟରେ ଦ୍ୱନ୍ଦକୁ ବିଷୟବସ୍ତୁ ରୂପେ ଗ୍ରହଣ କରିଛି । ତେବେ ଦୀପ୍ତି ନାଭାଲ୍‌ଙ୍କ ସଜୀବ ଅଭିନୟ ସତ୍ତ୍ୱେ ଏକ ଦୁର୍ବଳ ଚିତ୍ରନାଟ୍ୟ ଏବଂ ବିଶେଷତ୍ୱ ନଥିବା ନିର୍ଦ୍ଦେଶନା ''ଏଇ ସଂଘର୍ଷ''କୁ ଏକ ସ୍ମରଣୀୟ ଚିତ୍ର ପର୍ଯ୍ୟାୟକୁ ନେଇ ପାରିନି ।

୧୯୭୯ରୁ ଓଡ଼ିଶାରେ ଆରମ୍ଭ ହୋଇଥିବା ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବ ୧୯୯୦ରେ ଏକ ନୂଆ ମୋଡ଼ ନେଲା । ପୂର୍ବ ବର୍ଷମାନଙ୍କରେ ଏ ଉତ୍ସବ ମୁଖ୍ୟତଃ କଟକରେ ହିଁ

ସୀମିତ ରହୁଥିଲା । କିନ୍ତୁ ୧୯୯୦ରେ ତାହା ଭୁବନେଶ୍ୱର, କଟକ, ବ୍ରହ୍ମପୁର, ସମ୍ବଲପୁର ଓ ରାଉର୍‌କେଲାରେ ଅନୁଷ୍ଠିତ ହୋଇଥିଲା । ତେବେ, ଏ ଉତ୍ସବର ଗୋଟାଏ ଉଲ୍ଲେଖନୀୟ ଘଟଣା ହେଲା ଯେ, ଉଦ୍‌ଘାଟନୀ ଉତ୍ସବଟି ପୂର୍ବ ବର୍ଷମାନଙ୍କ ପରି କଟକରେ ଅନୁଷ୍ଠିତ ନ ହୋଇ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ଏହାଦ୍ୱାରା ଅନେକେ ମନେ କଲେ ଯେ, ସିନେମା ଶିଳ୍ପରେ କଟକ ଓ ଭୁବନେଶ୍ୱର ମଧ୍ୟରେ ଯେଉଁ ପ୍ରଚ୍ଛନ୍ନ ପ୍ରତିଯୋଗିତା ଚାଲିଥିଲା ସେଥିରେ ଜିତାପଟ ହେଲା ଭୁବନେଶ୍ୱରର । ଏହି ଦୁଇ ସହରର ଭୂମିକା ବିଶ୍ଳେଷଣ କରି ଏଇ ଲେଖକ ଗୋଟାଏ ସମୀକ୍ଷା ଲେଖିଥିଲା । ସେଇ ସମୀକ୍ଷାର କିଛି ଏଠାରେ ଉଲ୍ଲେଖ କରାଯାଉଛି—

''ଗତ କିଛି ବର୍ଷ ହେଲା କଟକ ଓ ଭୁବନେଶ୍ୱର ମଧ୍ୟରେ ଏକ ପ୍ରକାରର ପ୍ରତିଯୋଗିତା ଚାଲିଥିଲା ଖାସ୍ ସିନେମା ଉତ୍ସବକୁ କେନ୍ଦ୍ରକରି । ପରଂପରା କ୍ରମେ କଟକ ହିଁ ଓଡ଼ିଶାରେ ଚଳଚ୍ଚିତ୍ର ବ୍ୟବସାୟର ପ୍ରାଣକେନ୍ଦ୍ର ହୋଇ ରହି ଆସିଛି । ଏବେ ମଧ୍ୟ ଓଡ଼ିଶାର ପ୍ରାୟ ସମସ୍ତ ସିନେମା ବିତରକ ସଂସ୍ଥା କଟକରେ ହିଁ ରହିଛି । ଓଡ଼ିଆ ସିନେମା ନିର୍ମାଣର ପ୍ରଧାନ କେନ୍ଦ୍ର ମଧ୍ୟ ପ୍ରାୟ ତିନି ଦଶକ ଧରି କଟକ ହିଁ ରହି ଆସିଥିଲା । ୧୯୫୦ରେ ମୁକ୍ତି ପାଇଥିବା ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀ ଜଗନ୍ନାଥ'ରୁ ୧୯୭୬ରେ ମୁକ୍ତି ପାଇଥିବା ଓଡ଼ିଆ କଥାଚିତ୍ରଗୁଡ଼ିକର ପ୍ରଯୋଜନା ସ୍ଥଳୀ ଥିଲା କଟକ । ଏ ସହର ଏପରି ପ୍ରାଧାନ୍ୟ ହାସଲ କରିବାର ଅନ୍ୟତମ କାରଣ ଏଇଆ ହୋଇପାରେ ଯେ, କଟକରେ ବହୁ ଦିନ ଧରି ଥିବା ଅର୍ଣ୍ଣପୂର୍ଣ୍ଣା 'ବି' ଗ୍ରୁପ୍ ଏବଂ ଜନତା ରଂଗମଞ୍ଚର ଶିଳ୍ପୀ ଓ ଥିଏଟର କାରିଗରଗଣ ଅନେକାଂଶରେ ସିନେମା ନିର୍ମାଣର ସହାୟକ ହୋଇଥିଲେ.... ।

''ତେବେ କଟକରେ ଓଡ଼ିଆ ଚିତ୍ର ମୁକ୍ତି କରାଇବା ପାଇଁ ପ୍ରଯୋଜକମାନଙ୍କ ମଧ୍ୟରେ ଏକଦା ଯେପରି ଗଳା-କଟା ପ୍ରତିଯୋଗିତା ଆରମ୍ଭ ହୋଇ ଯାଉଥିଲା ଏବେ ଆଉ ତାହା ପ୍ରାୟ ହେଉନି । ରାଉର୍‌କେଲା, ସମ୍ବଲପୁର, ବ୍ରହ୍ମପୁର ପ୍ରଭୃତି ଓଡ଼ିଶାର ଅନ୍ୟ କେତେକ ସହରରେ ସିନେମାର ପ୍ରଥମ ମୁକ୍ତି ନିଶ୍ଚିତ ବିପର୍ଯ୍ୟୟର ହେତୁ ବୋଲି ଏବେ ଆଉ ଗ୍ରହଣ କରା ଯାଉନି ।

''ଚଳଚ୍ଚିତ୍ର ନିର୍ମାଣ କ୍ଷେତ୍ରରେ ମଧ୍ୟ ଗତ କିଛି ବର୍ଷ ହେଲା କଟକର ପ୍ରାଧାନ୍ୟ ଯଥେଷ୍ଟ ହ୍ରାସ ପାଇଛି ଏବଂ ଏ ପ୍ରାଧାନ୍ୟ ଭୁବନେଶ୍ୱର କ୍ରମଶଃ ଅକ୍ତିଆର କରି ନେଇଛି । ଏହାର ପ୍ରଧାନ କାରଣ; ରାଜଧାନୀର ଖଣ୍ଡଗିରି ଅଞ୍ଚଳରେ ୧୯୮୧ରେ କଳିଙ୍ଗ ଷ୍ଟୁଡ଼ିଓ ନିର୍ମିତ ହୋଇଛି । ଏଣୁ ସଂପ୍ରତି ଅଧିକାଂଶ ସିନେମା କଳାକାର ଭୁବନେଶ୍ୱରରେ ନିବାସ ଗଢ଼ିବା ସୁବିଧାଜନକ ମନେ କଲେଣି । ପୁନାସ୍ଥିତ ଭାରତୀୟ ଫିଲ୍ମ ଓ ଟେଲିଭିଜନ୍ ପ୍ରତିଷ୍ଠାନରୁ ପାଶ୍ କରୁଥିବା ଅଧିକାଂଶ ସ୍ନାତକ ମଧ୍ୟ ଭୁବନେଶ୍ୱରରେ ରହି ସେମାନଙ୍କ କ୍ଷେତ୍ର ସଂଧାନ କରୁଥିବା ଦୃଷ୍ଟି ଗୋଚର ହେଉଛି ।

''ତେବେ ୧୯୭୯ରୁ ଆରମ୍ଭ ହୋଇଥିବା ଚଳଚ୍ଚିତ୍ର ଉତ୍ସବ ପ୍ରାରମ୍ଭରୁ ୧୯୮୮ଯାଏଁ କଟକରେ ହିଁ ସୀମିତ ଥିଲା । ୧୯୮୯ରେ ଉଦ୍‌ଘାଟନ ଉତ୍ସବଟି କଟକର ଶହୀଦ୍ ଭବନରେ ଅନୁଷ୍ଠିତ ହୋଇଥିଲା । (କୌଣସି କାରଣରୁ ପୂର୍ବ ସମସ୍ତ ବର୍ଷ ଭଳି ଏହା ଗ୍ରାଣ୍ଡ ସିନେମାରେ ଅନୁଷ୍ଠିତ ହୋଇ ନ ଥିଲା )। କିନ୍ତୁ ଉତ୍ସବ ପାଇଁ ନିରୂପିତ ଅଧିକାଂଶ ଚଳଚ୍ଚିତ୍ର ଭୁବନେଶ୍ୱରର କେଶରୀ ସିନେମାରେ ମଧ୍ୟ ପ୍ରଦର୍ଶିତ ହୋଇଥିଲା ।

''ସିନେମା ବ୍ୟବସାୟ ଦୃଷ୍ଟିରୁ କଟକର ସ୍ଥାନ ଯାହା ହେଉନା କାହିଁକି ଏକଦା ଓଡ଼ିଶାର ସାଂସ୍କୃତିକ ରାଜଧାନୀ ରୂପେ ସଂପ୍ରତି ଯଥେଷ୍ଟ ଅଧିକ ସଂଖ୍ୟକ ସାଂସ୍କୃତିକ ଉତ୍ସବ ଭୁବନେଶ୍ୱରରେ ଅନୁଷ୍ଠିତ ହୁଏ । ସଂସ୍କୃତି କ୍ଷେତ୍ରରେ ସକ୍ରିୟ ଅଧିକାଂଶ ବ୍ୟକ୍ତିଙ୍କ ମତରେ ତୁଳାନାତ୍ମକ ଭାବେ ରାଜଧାନୀର କଳାପ୍ରେମୀଙ୍କ ମଧ୍ୟରେ ଅଧିକ ଆଗ୍ରହ ପ୍ରକାଶ ପାଏ । ଏଣୁ ସିନେମା ସଂସ୍କୃତିକୁ ଆଧାର କରିଥିବା ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବ ଭୁବନେଶ୍ୱରରେ ହିଁ ଉଦ୍‌ଘାଟିତ ହେବା ସ୍ୱାଭାବିକ ମନେହୁଏ ।''

*– ''ଧରିତ୍ରୀ'' ୨୬ ଏପ୍ରିଲ୍ ୧୯୯୦*

୧୯୯୦ରେ ସିନେମା ବ୍ୟବସାୟ ପୂର୍ବାପେକ୍ଷା ଅଧିକ ବିପଦଗ୍ରସ୍ତ ହୋଇଥିବାର ଗୋଟିଏ ସୂଚନା ମିଳିଥିଲା । ଓଡ଼ିଶା ସମେତ ସମଗ୍ର ଭାରତ ବର୍ଷରେ ୨୦୦ରୁ ଅଧିକ ସିନେମା ହଲ୍ ବନ୍ଦ ହୋଇ ଯାଇଥିଲା । ୧୯୮୯ ସାଲରେ ଦେଶରେ ସର୍ବମୋଟ ୧୩, ୩୫୫ ଗୋଟି ସିନେମା ହଲ୍ ଥିବା ବେଳେ ୧୯୯୦ ସାଲରେ ହଲ୍ ସଂଖ୍ୟା ୧୩, ୧୫୫କୁ କମି ଆସିଥିଲା । ଓଡ଼ିଶାରେ ମଧ୍ୟ ୧୧ ଗୋଟି ଚଳଚ୍ଚିତ୍ର ପ୍ରେକ୍ଷାଳୟ ବନ୍ଦ ହୋଇ ଯାଇଥିଲା । ଏହି ବର୍ଷ ମଧ୍ୟ ଇଂପା (**All India Eastern Motion Pictures Association, AIEMPA**)ର ଅଫିସ୍ କଟକରୁ ଉଠାଇ ନିଆଗଲା କଲିକତାକୁ । ୧୯୯୦ ଜୁଲାଇରେ ଓଡ଼ିଆ ସିନେମାର ଜଣେ ଦୀର୍ଘସ୍ଥାୟୀ ନିର୍ଦ୍ଦେଶକ ନିତାଇ ପାଲିତ୍‌ଙ୍କର କଟକରେ ଦେହାନ୍ତ ହୋଇଥିଲା । ସେ ଦୀର୍ଘ ୩୯ ବର୍ଷ ଧରି ପ୍ରାୟ ଏକ ଡଜନ୍ ଚଳଚ୍ଚିତ୍ର ନିର୍ଦ୍ଦେଶନା ଦେଇଥିଲେ ଓ ଏ କ୍ଷେତ୍ରରେ ଅବଦାନ ପାଇଁ ୧୯୮୨ରେ ଜୟଦେବ ସମ୍ମାନ ଓ ୧୯୮୪ରେ ମୋହନ ସୁନ୍ଦର ଗୋସ୍ୱାମୀ ପୁରସ୍କାର ପାଇଥିଲେ । ନିର୍ଦ୍ଦେଶକଙ୍କର ସବୁଠାରୁ ଅଧିକ ଉଲ୍ଲେଖନୀୟ ତଥା ଏକ କଳାତ୍ମକ ଚଳଚ୍ଚିତ୍ର ଥିଲା ''ମଲା ଜହ୍ନ'' (୧୯୬୫) । ସ୍ୱର୍ଗତ ପାଲିତଙ୍କ ପ୍ରଥମ ସିନେମା ''କେଦାର ଗୌରୀ'' (୧୯୫୪) ମଧ୍ୟ ଏକ ଦର୍ଶନୀୟ ସୃଷ୍ଟି । ତାଙ୍କ ନିର୍ଦ୍ଦେଶିତ ଅନ୍ୟାନ୍ୟ ଓଡ଼ିଆ କଥାଚିତ୍ରଗୁଡ଼ିକ ହେଲା ''ଭାଇ ଭାଇ'', ''କିଏ କାହାର'', ''ବନ୍ଦନା'', ''ଧରିତ୍ରୀ'', ''ମନ ଆକାଶ'', ''କୃଷ୍ଣ ସୁଦାମା'', ''ବନ୍ଧୁ ମହାନ୍ତି'', ''ଅନୁରାଗ'' ଏବଂ ''କିଏ ଜିତେ କିଏ ହାରେ'' । ମୃତ୍ୟୁବେଳକୁ ତାଙ୍କର ଶେଷ ଛବି ''ରଘୁ ଅରକ୍ଷିତ'' ସଂପୂର୍ଣ୍ଣ ହୋଇପାରି ନ ଥିଲା ।

ଓଡ଼ିଆ ସିନେମା କ୍ଷେତ୍ରରେ ଗୋଟିଏ କାରସାଦି ହୋଇଥିବା କେତେକ ଖବରକାଗଜରେ ୧୯୯୦ ସାଲରେ ପ୍ରକାଶ ପାଇଥିଲା । ଖବରଟି ହେଲା ଯେ, ଇଷ୍ଟର୍ଣ୍ଣ

ମିଡ଼ିଆ ଲିମିଟେଡ୍ ୧୯୮୯ରେ ପ୍ରସ୍ତୁତ କରିଥିବା ''ଚକା ଆଖି ସବୁ ଦେଖୁଛି''କୁ ସେନ୍‌ସର୍ ବୋର୍ଡ଼ ''ଏ'' ସାର୍ଟିଫିକେଟ୍ ଦେଇଥିଲେ ମଧ, ସାର୍ଟିଫିକେଟ୍ ପ୍ରଦର୍ଶନ ନକରି ହିଂସା ଭରପୂରର ସେଇ ସିନେମାଟିର ଅବାଧ ପ୍ରଦର୍ଶନ ଚାଲିଥିଲା । ଏପରି ସମ୍ବାଦମାନ ପ୍ରକାଶ ପାଇବା ସତ୍ତ୍ୱେ ପ୍ରଦର୍ଶନ ଅବ୍ୟାହତ ରହିଥିଲା; କାରଣ ପ୍ରଯୋଜକଙ୍କର କାଳେ ରାଜନୈତିକ ପୃଷ୍ଠପୋଷକତା ଥିଲା । ତେବେ ପରବର୍ତ୍ତୀ ବର୍ଷ ଅର୍ଥାତ୍ ୧୯୯୦ ସାଲରେ କଂଗ୍ରେସ ଦଳ ନିର୍ବାଚନରେ ଶୋଚନୀୟ ଭାବେ ପରାଜିତ ହେବା ପରେ (୧୪୭ ବିଶିଷ୍ଟ ବିଧାନ ସଭାରେ ସେ ଦଳ ପାଇଥିଲା ମାତ୍ର ୧୦ ଗୋଟି ଆସନ, ଯଦିଓ ୧୯୮୫ ନିର୍ବାଚନରେ କଂଗ୍ରେସ ଦଳ ହାସଲ କରିଥିଲା ୧୨୩ ଗୋଟି ଆସନ) ଏବଂ ଜନତା ଦଳ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ କ୍ଷମତାକୁ ଆସିବା ପରେ ''ଚକାଆଖି ସବୁ ଦେଖୁଛି''ର କେତୋଟି ପ୍ରିଣ୍ଟ କୋରାପୁଟ୍ ଜିଲ୍ଲାର ଜୟପୁରରେ ଜବତ୍ ହୋଇଥିଲା । ଏହି ସମ୍ବାଦ ମଧ ବିଭିନ୍ନ ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଥିବା ବିବରଣୀଟି ହେଲା

''ଇଷ୍ଟର୍ଣ୍ଣ ମିଡ଼ିଆ ଦ୍ୱାରା ପ୍ରଯୋଜିତ 'ଚକା ଆଖି ସବୁ ଦେଖୁଛି' ନାମକ ଗୋଟିଏ ଓଡ଼ିଆ ଚଳଚ୍ଚିତ୍ର ପ୍ରଦର୍ଶିତ ହେଉଥିବା ବେଳେ ସେନ୍‌ସର୍ ବୋର୍ଡ଼ର 'ଏ' ସାର୍ଟିଫିକେଟ୍ ନ ଦେଖାଇବା ଓ ଏହି ଚଳଚ୍ଚିତ୍ର ସେନ୍‌ସର୍ ବେଳେ ବୋର୍ଡ଼ ଦ୍ୱାରା ବାଦ୍ ଦିଆ ଯାଇଥିବା କେତେକ ଅଂଶକୁ ଯୋଡ଼ାଯାଇ ପ୍ରଦର୍ଶିତ ହେଉଥିବା ଅଭିଯୋଗରେ କୋରାପୁଟ୍ ପୋଲିଶ ଏହି ଚଳଚ୍ଚିତ୍ରକୁ ଜୟପୁରର ଏକ ପ୍ରେକ୍ଷାଳୟରୁ ଜବତ୍ କରିଛନ୍ତି ।''

- *''ଧରିତ୍ରୀ'', ୬.୪.୧୯୯୦*

ଉପରେ ବର୍ଣ୍ଣିତ କାରସାଦି ଓଡ଼ିଶାର ସିନେମା କ୍ଷେତ୍ରରେ ଅଭିନବ । ବ୍ୟବସାୟକୁ ଦେବତା ପରି ଯେଉଁ ହିନ୍ଦୀ ସିନେମା ଦୁନିଆ ମନେ କରେ ସେଇ ହିନ୍ଦୀ ସିନେମା କ୍ଷେତ୍ରରେ ବି ଏପରି କାରସାଦି ହୁଏତ ହେଉ ନ ଥିବ ।

୧୯୯୧ରେ ମୁକ୍ତି ପାଇଥିଲା ମାତ୍ର ଆଠ ଗୋଟି କାହାଣୀ-ସମ୍ବଳିତ ସିନେମା । ତେବେ ସେଇ ବର୍ଷ କୌଣସି ବ୍ୟବସାୟିକ ପ୍ରେକ୍ଷାଳୟରେ ମୁକ୍ତି ପାଇ ନ ଥିବା ଦୁଇଟି ସିନେମା 'ଆଦି ମିମାଂଶା' ଏବଂ ''ତାରା'', ସର୍ବ ଭାରତୀୟ ସ୍ତରରେ ପୁରସ୍କୃତ ହୋଇ ଜାତୀୟସ୍ତରରେ ଓଡ଼ିଆ ଚଳଚ୍ଚିତ୍ରର ଗୌରବ ସଂରକ୍ଷିତ ରଖିଥିଲା । ଏ ବର୍ଷ ଓଡ଼ିଆ ସିନେମା ଶିଳ୍ପ ପାଇଁ କେତୋଟି ଗୁରୁତ୍ୱପୂର୍ଣ୍ଣ ଘଟଣା ମଧ ଘଟିଥିଲା ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ହଲା ଯେ, କଟକରେ ସେ ବର୍ଷ ଆଞ୍ଚଳିକ ''ଫିଲ୍ମ ସେର୍ଟିଫିକେଶନ୍'' ଅଫିସ୍ ସ୍ଥାପିତ ହେଲା । ପୂର୍ବେ ଏ ପ୍ରକାରର ଅଫିସ୍ ସିନେମା ସେନ୍ସର ବୋର୍ଡ୍ ନାମରେ ଅଭିହିତ ହେଉଥିଲା । କେନ୍ଦ୍ର ସୂଚନା ଓ ବେତାର ବିଭାଗ ଅଧୀନରେ ଫିଲ୍ମ ସେର୍ଟିଫିକେଶନ୍ ସଂସ୍ଥା କାମ କରୁଥିବାରୁ, ଉକ୍ତ ବିଭାଗର ମନ୍ତ୍ରୀ ଅଜିତ୍ କୁମାର

ପାଣ୍ଡାଙ୍କ ଦ୍ୱାରା ଗୋଟିଏ ଆଡ଼ମ୍ବର ପୂର୍ଣ୍ଣ ଉତ୍ସବ ସହ ସେପ୍ଟେମ୍ବରର ୧୯୯୧ରେ ଉକ୍ତ ଅଫିସ୍ ଉନ୍ମୋଚିତ ହେଲା। ଉକ୍ତ ଦିନ ଜାତୀୟ ଚଳଚ୍ଚିତ୍ର ଉନ୍ନୟନ ନିଗମ (ଏନ୍.ଏଫ୍.ଡ଼ି.ସି.)ର ଗୋଟାଏ ଶାଖା ଅଫିସ୍ ମଧ୍ୟ ଖୋଲାଗଲା। ଏହି ଦୁଇ ଅଫିସ୍ ରାଜ୍ୟ ଚଳଚ୍ଚିତ୍ର ଉନ୍ନୟନ ନିଗମର ବକ୍ସିବଜାର ସ୍ଥିତ ନବ-ନିର୍ମିତ କୋଠାରେ କାମ ଆରମ୍ଭ କଲା। ତେବେ ୧୯୯୧ରେ କୌଣସି କାରଣରୁ ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବ ଅନୁଷ୍ଠିତ ହୋଇ ପାରି ନଥିଲା। ଏହି ବର୍ଷ ନଭେମ୍ବର ମାସରେ ''ଶ୍ରୀକୃଷ୍ଣଙ୍କ ରାସଲୀଳା''ର ପ୍ରଯୋଜକ, ନାଟ୍ୟକାର କମଳ ଲୋଚନ ମହାନ୍ତି ଇହଲୀଳା ସାଙ୍ଗ କରିଥିଲେ। ସେ ମଧ୍ୟ ପ୍ରଯୋଜିତ କରିଥିଲେ ''ରାମ ରହିମ୍'' ନାମକ ଅନ୍ୟଏକ ବାଣୀଚିତ୍ର ଓ ''କୋଣାର୍କ'' ନାମକ ପ୍ରମାଣିକ ଚଳଚ୍ଚିତ୍ର । ''ଶେଷ ଶ୍ରାବଣ' ପ୍ରଭୃତି ଅନେକ ସିନେମାର କାହାଣୀ ଲେଖକ ନାଟ୍ୟକାର ଡକ୍ଟର ବସନ୍ତ କୁମାର ମହାପାତ୍ର ମଧ୍ୟ ଏଇ ବର୍ଷ ସ୍ୱର୍ଗାରୋହଣ କଲେ ।

ବମ୍ବେ ସିନେମା ଜଗତରେ ସଫଳ କ୍ୟାମେରାମେନ୍ ରୂପେ ଦୀର୍ଘ ଦିନ ଧରି ରହିଥିବା ଶ୍ରୀ ଅପୂର୍ବ କିଶୋର ବୀର, ଏ ବର୍ଷ ତାଙ୍କର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ''ଆଦି ମିମାଂଶା'' ନିର୍ମାଣ କରି, ଆମ ସିନେମା ଶିଳ୍ପ ପାଇଁ କିଛିଟା ଆଶା ସଂଚାର କରିଥିଲେ। ଏ ସିନେମାଟି ପରବର୍ତ୍ତୀ ବର୍ଷ ଆରମ୍ଭରେ ବେଙ୍ଗଲୋର୍‌ରେ ଅନୁଷ୍ଠିତ ଭାରତର ଆର୍ନ୍ତଜାତିକ ଚଳଚ୍ଚିତ୍ର ଉତ୍ସବରେ ଭାରତୀୟ ପାନୋରମା ବିଭାଗରେ ପ୍ରଦର୍ଶିତ ହୋଇଥିଲା। ଏହାଦ୍ୱାରା ଚାରି ବର୍ଷର ବ୍ୟବଧାନ ପରେ ଓଡ଼ିଆ ସିନେମା ପୁନଶ୍ଚ ଭାରତୀୟ ପାନୋରାମାରେ ସ୍ଥାନ ପାଇ, ଏ କ୍ରମରେ ସପ୍ତମ ଓଡ଼ିଆ ଚଳଚ୍ଚିତ୍ରର ଗୌରବ ହାସଲ କଲା ।

ଏଠାରେ ଭାରତୀୟ ପାନୋରାମା ବିଭଗା ଓ ଓଡ଼ିଆ ସିନେମା ସମ୍ପର୍କରେ ସାମାନ୍ୟ ବିବରଣୀ ଦେବା ସମୀଚୀନ ହେବ। ଭାରତ ଅନୁଷ୍ଠିତ କରୁଥିବା ଆର୍ନ୍ତଜାତିକ ଚଳଚ୍ଚିତ୍ର ଉତ୍ସବ ଆରମ୍ଭ ହେବାର ୨୬ ବର୍ଷ ପରେ ୧୯୭୮ରୁ ଅନୁଷ୍ଠିତ ହେଲା ଭାରତୀୟ ପାନୋରାମା ବିଭାଗ। ଏହାର ଲକ୍ଷ୍ୟ ଥିଲା, ପ୍ରତି ବର୍ଷ ବିଭିନ୍ନ ଭାରତୀୟ ଭାଷାରେ ନିର୍ମିତ ଚଳଚ୍ଚିତ୍ର (ଇଂରାଜି ଓ ଉପଭାଷାମାନଙ୍କ ସମେତ) ମାନଙ୍କ ମଧ୍ୟରୁ ଉଲ୍ଲେଖନୀୟ କୃତି ଗୁଡ଼ିକୁ ଏକ ଆର୍ନ୍ତଜାତିକ ଦର୍ଶକ ମଣ୍ଡଳୀ ଆଗରେ ପ୍ରଦର୍ଶିତ କରିବା । ୧୯୭୮ରୁ ୧୯୮୨ ଯାଏଁ କୌଣସି ଓଡ଼ିଆ ସିନେମା ପାନୋରାମା ବିଭାଗରେ ସ୍ଥାନ ପାଇ ନଥିଲା। ୧୯୮୩ରେ ପ୍ରଥମ କରି ନିର୍ଦ୍ଦେଶକ ମନମୋହନ ମହାପାତ୍ରଙ୍କ ''ଶୀତରାତି'' ପାନୋରାମାରେ ସ୍ଥାନ ପାଇଥିଲା। ୧୯୮୪ରେ ନିର୍ଦ୍ଦେଶକ ସାଗିର୍ ଅହମଦ୍‌ଙ୍କ ''ଧାରେ ଆଲୁଅ'' ଏବଂ ନିର୍ଦ୍ଦେଶକ ନିରଦ ମହାପାତ୍ରଙ୍କ ''ମାୟା ମିରିଗ'' ଏକାଥରକେ ଦୁଇ ଗୋଟି ଓଡ଼ିଆ ଚଳଚ୍ଚିତ୍ର ଉକ୍ତ ବିଭାଗରେ ସ୍ଥାନ ପାଇଥିଲା। ମନମୋହନ ମହାପାତ୍ରଙ୍କ ''କୋଣାର୍କ'' ନାମକ ପ୍ରାମାଣିକ ଚଳଚ୍ଚିତ୍ର ମଧ୍ୟ ଉକ୍ତ ବର୍ଷ ପାନୋରାମାର ସାନ-ଚଳଚ୍ଚିତ୍ର ବିଭାଗରେ ସ୍ଥାନ ପାଇଥିଲା। ସାଗିର୍ ଓ ନିରଦ ମହାପାତ୍ର ମାତ୍ର ଗୋଟିଏ ଲେଖାଏଁ

''ଆଦି ମିମାଂଶା''ରେ ପତି-ପତ୍ନୀ

କାହାଣୀ-ସମ୍ବଳିତ ସିନେମା ନିର୍ମାଣ କରିବା ପରେ, ଏ ଶ୍ରେଣୀର ଅଧିକ ସିନେମା ନିର୍ମାଣ ପାଇଁ ଆଉ ଆଗଭର ହୋଇ ନ ଥିଲେ । ତେବେ ନିର୍ଦ୍ଦେଶକ ମନମୋହନ ମହାପାତ୍ରଙ୍କର ଅନ୍ୟ କେତେକ ଚିତ୍ର ପରବର୍ତ୍ତୀ ବର୍ଷମାନଙ୍କରେ ପାନୋରାମା ବିଭାଗରେ ସ୍ଥାନ ପାଇଥିଲା । ଏ ଗୁଡ଼ିକ ହେଲା ''ନୀରବ ଝଡ଼'' (୧୯୮୫), ''କ୍ଲାନ୍ତ ଅପରାହ୍ନ'' (୧୯୮୬) ଏବଂ ''ମଝି ପାହାଚ'' (୧୯୮୭) । ଏହା ପରେ ଚାରିବର୍ଷ ଧରି କୌଣସି ଓଡ଼ିଆ ସିନେମା ପାନୋରାମା ବିଭାଗରେ ପ୍ରଦର୍ଶିତ ହୋଇ ନଥିଲା । ଏଣୁ ଶ୍ରୀ ବୀରଙ୍କ ''ଆଦି ମିମାଂଶା'' ଏ କ୍ରମରେ ସପ୍ତମ କାହାଣୀ-ସମ୍ବଳିତ ଚଳଚ୍ଚିତ୍ର ।



# ଓଡ଼ିଆ ଚଳଚ୍ଚିତ୍ରରେ ସଂଗୀତ

''ବାଜେ ବଇଁଶୀ ନାଚେ ଘୁଂଘୁର''ରେ ନତ୍ୟ, ସଂଗୀତ ଶିଳ୍ପୀ ଯୁଗଳ



ମନୋରଂଜନଧର୍ମୀ ଭାରତୀୟ ସିନେମା (ସେ ହିନ୍ଦୀ ହେଉ, ତେଲୁଗୁ ହେଉ, ତାମିଲ୍ ହେଉ ବା ହେଉ ଅନ୍ୟ ଯେ କୌଣସି ଭାଷାର ଚଳଚ୍ଚିତ୍ର) ପ୍ରାୟଶଃ ସଂଗୀତ-ମୁଖର । ପାଶ୍ଚାତ୍ୟ ଚଳଚ୍ଚିତ୍ରମାନଙ୍କରେ ସଂଗୀତ ପ୍ରଧାନତଃ ପୃଷ୍ଠପଟ ସଂଗୀତ ରୂପେ ଗ୍ରଥିତ ହୋଇଥାଏ ଏବଂ କଣ୍ଠ-ସଂଗୀତ ବା ଗୀତ ସେ ସବୁରେ ବିରଳ-ପ୍ରାୟ । କିନ୍ତୁ ମନୋରଂଜନ-ଧର୍ମୀ ଭାରତୀୟ ସିନେମା ସବୁ ପ୍ରକାର ପ୍ରକାରର ଅନେକ ଜାତିର ଗୀତରେ ମୁଖର, ସତେ ଯେମିତିକି ଗୀତ ବାଦ୍ ଦେଲେ ମନୋରଂଜନ ଅସମ୍ଭବ ! ଏଣୁ ଅଧିକାଂଶ ଚଳଚ୍ଚିତ୍ରର ବହୁ ଚରିତ୍ର ଏଠାରେ ଗୀତ ଗାଉ ଥାଆନ୍ତି; ଆଉ ହିରୋ, ହିରୋଇନ୍‌ମାନଙ୍କ କଥା ଛାଡ଼; ସେମାନେ ଗୀତ ଗାଉ ନ ଥାନ୍ତି କେବଳ; କଣ୍ଠରେ ସ୍ୱରତୋଳି ସେମାନେ ନାଚନ୍ତି, ଦୌଡ଼ନ୍ତି, ଏପରିକି ଡିଆଁ ମାରୁ ଥାଆନ୍ତି ମଧ !

ମନୋରଂଜନ ନାମରେ ଚାଲି ଆସିଥିବା ଏଇ କୃତ୍ରିମ ପରଂପରାରୁ ମୁକ୍ତ ନୁହେଁ ବ୍ୟବସାୟ ଲକ୍ଷ୍ୟରେ ତିଆର ହୋଇଥିବା ଓଡ଼ିଆ ସିନେମା ଗୁଡ଼ିକ । ତେବେ ମନମୋହନ

ମହାପାତ୍ରଙ୍କ ''ନିରବ ଝଡ଼'', ନିରଦ ମହାପାତ୍ରଙ୍କ ''ମାୟା ମିରିଗ'', ମୃଣାଳ ସେନ୍‌ଙ୍କ ''ମାଟିର ମଣିଷ'' ପ୍ରଭୃତିର ପୃଷ୍ଠପଟ୍ଟ ସଂଗୀତରୁ ସୂଚନା ମିଳେ ଯେ, ଓଡ଼ିଆ ସିନେମା କ୍ଷେତ୍ରରେ ମଧ୍ୟ ସଂଗୀତର ସୃଜନଶୀଳ ବ୍ୟବହାର ବେଳେବେଳେ ହୁଏ ଯଦିଓ ତାହା ବହୁ ପରିମାଣରେ ନୁହେଁ ।

ପ୍ରଥମ ଓଡ଼ିଆ ବାଣୀଚିତ୍ର ''ସୀତା ବିବାହ''ରେ ରହିଥିଲା ଚଉଦ ଗୋଟି ଗୀତ, ମିଳିତ କଣ୍ଠରେ, ଏକକ କଣ୍ଠରେ ଏବଂ ଯୁଗ୍ମ କଣ୍ଠରେ । କାଳୀ ଫିଲ୍ମସ୍ ଚାରି ଗୋଟି ଗ୍ରାମଫୋନ୍ ରେକର୍ଡ଼ରେ ''ସୀତା ବିବାହ''ର ଯେଉଁ ରୂପ ବଜାରକୁ ଛାଡ଼ିଥିଲା, ତା'ଦ୍ୱାରା ଗୀତ ଗୁଡ଼ିକର ସଂପୂର୍ଣ୍ଣ ଅବୟବ ସଂରକ୍ଷିତ ରହି ପାରିନି । ତେବେ ରେକର୍ଡ଼ ଗୁଡ଼ିକ ଶୁଣିଲେ ମନେହୁଏ ଯେ, ଓଡ଼ିଶାରେ ପ୍ରଚଳିତ ସଂଗୀତ ଶୈଳୀ ରକ୍ଷା କରିବା ପାଇଁ ସଂଗୀତ ନିର୍ଦ୍ଦେଶକ ମୋହନ ସୁନ୍ଦର ଗୋସ୍ୱାମୀ ଆଦୌ ହେଳା କରି ନଥିଲେ । ଏଣୁ ସମସ୍ତ ସଂଗୀତ ଶିଳ୍ପୀଙ୍କୁ ସେ ଓଡ଼ିଶାରୁ ନେଇଥିଲେ କଲିକତା । ପ୍ରଧାନତଃ ମୃଦଙ୍ଗ, ବଂଶୀ, ଗିନି ପ୍ରଭୃତି ଆମ ପାରଂପରିକ ସଂଗୀତ ଯନ୍ତ୍ର ହିଁ ''ସୀତା ବିବାହ''ର ଗୀତ ଗୁଡ଼ିକ ସହ ବାଜିଛି । ଅଧିକାଂଶ ଗାୟକ ସୁଲଳିତ କଣ୍ଠରେ ଗୀତ ଗୁଡ଼ିକ ଗାଇଛନ୍ତି । ନିଜେ ମୋହନ ସୁନ୍ଦର ଏକାଧିକ ଗୀତ (''ଏଇ ଯେ ଆଶ୍ରମ ଦେଖୁଛ ଶ୍ରୀରାମ ଏ ଯେ ଗଉତମ ବାସ'' ଏବଂ ''ଅପୂର୍ବ କୁମାରୀ ତ୍ରିପୁରା ସୁନ୍ଦରୀ'') ଗାଇଥିଲେ । ସୁଗାୟକ ନରସିଂହ ନନ୍ଦଶର୍ମା ମଧ୍ୟ କୁଶଳୀ କଣ୍ଠରେ ଏକାଧିକ ଗୀତ ଗାଇଥିଲେ । ଓଡ଼ିଶା ମାଟିର ପାରଂପରିକ ସଂଗୀତ ଶୈଳୀ ''ସୀତା ବିବାହ''ରେ ସଂପୂର୍ଣ୍ଣ ବଜାୟ ରହିଥିଲା ।

କିନ୍ତୁ ପରବର୍ତ୍ତୀ ଦୁଇଟି ଓଡ଼ିଆ ଚଳଚ୍ଚିତ୍ର (''ଲଳିତା'' ଓ ''ଶ୍ରୀଜଗନ୍ନାଥ'')ର ସଂଗୀତ ବିଚାରକୁ ନେଲେ, ସେ ଗୁଡ଼ିକ ଗୋଟାପଣେ ଆମ ସଂଗୀତ ପରଂପରା ପ୍ରତି ବିଶ୍ୱସ୍ତ ବୋଲି କୁହା ଯାଇ ପାରିବ ନାହିଁ । ଏ ଛବି ଦ୍ୱୟ ଯଥାକ୍ରମେ ୧୯୪୯ ଓ ୧୯୫୦ରେ ନିର୍ମିତ ହୋଇଥିଲା । ଏ ଚଳଚ୍ଚିତ୍ର ଯୁଗଳର ଗୀତ ରେକର୍ଡ଼ିଂ ମଧ୍ୟ କଲିକତାରେ ହିଁ ହୋଇଥିଲା । ଉଭୟ ସିନେମାର ଅଧିକାଂଶ ଗୀତରେ ଏତେ ପରିମାଣରେ ଭାଓଲିନ୍ ବ୍ୟବହାର ହୋଇଛି ଯେ ଅନ୍ୟ ସମସ୍ତ ସ୍ୱରକୁ ତାହା ବୁଡ଼ାଇ ଦେଉଛି । ତେବେ ''ଶ୍ରୀଜଗନ୍ନାଥ''ର ଶେଷ ଆଡ଼କୁ ବାଣିକଣ୍ଠ ନିମାଇ ଚରଣ ହରିଚନ୍ଦନ ଗାଇଥିବା ଏକ ଜଣାଣ ''ଚକା ଡୋଳା କିଂପା ଡକା, କିଂପା ଡାକ ନ ଶୁଣ...'' ଓଡ଼ିଆ ପ୍ରାଣକୁ ସ୍ପର୍ଶ କରିବାରେ ସମର୍ଥ ହୋଇଛି ।

ପରବର୍ତ୍ତୀ କେତୋଟି ଓଡ଼ିଆ ଚଳଚ୍ଚିତ୍ର (ଯଥା : ''ରୋଲ୍‌ସ ୨-୮'', ''ସପ୍ତଶଯ୍ୟା'', ''ଆମରି ଗାଁ ଝିଅ'' ପ୍ରଭୃତି)ରେ କଲିକତାର ପ୍ରଭାବ ହିଁ ଅତ୍ୟଧିକ । ତେବେ ୧୯୫୫ ସାଲରେ ନିର୍ମିତ ''କେଦାର ଗୌରୀ''ରୁ ଓଡ଼ିଆ ସିନେମା ସଂଗୀତ କ୍ଷେତ୍ରରେ ଏକ ନୂଆ ଯୁଗର ଆରମ୍ଭ ହେଲା । କାରଣ ଓଡ଼ିଶୀ ଶୈଳୀରେ ଗାୟକ ବାଳକୃଷ୍ଣ ଦାସ ଓ ଭାଓଲିନ୍ ଶିଳ୍ପୀ ଭୁବନେଶ୍ୱର ମିଶ୍ର ସେ ସିନେମାର ଯୁଗ୍ମ ନିର୍ଦ୍ଦେଶକ ରୂପେ ଆତ୍ମ ପ୍ରକାଶ କଲେ । ପରବର୍ତ୍ତୀ ବର୍ଷମାନଙ୍କରେ ଏ ଦୁହେଁ ଯୁଗ୍ମ ସଂଗୀତ ନିର୍ଦ୍ଦେଶକ ରୂପେ ଏବଂ ଏକକ ସଂଗୀତ ନିର୍ଦ୍ଦେଶକ ରୂପେ ଅନେକ ଚଳଚ୍ଚିତ୍ର ପାଇଁ ସଂଗୀତ ରଚନା କରିଥିଲେ । ସଂଗୀତ ଯନ୍ତ୍ରର ବ୍ୟବହାର ଦୃଷ୍ଟିରୁ ପଶ୍ଚାତ୍ୟ ପ୍ରକାରର ବାଦ୍ୟଯନ୍ତ୍ର ଯଥା, ପିଆନୋ ଏକୋର୍ଡ଼ିଏନ୍, ଗିଟାର, ମାଣ୍ଡୋଲିନ୍, ସେହେନାଇ ପ୍ରଭୃତିର ବ୍ୟବହାର କରାଗଲା । ତାଳ ବୈଚିତ୍ର୍ୟ ଓ ଲୟ-ବୈଚିତ୍ର୍ୟ ସିନେମା ସଂଗୀତର ବ୍ୟବହାର ପାଇଁ ଏ ଦୁଇ ଯଶସ୍ୱୀ ସଂଗୀତ ଶିଳ୍ପୀ ବହୁ ପରୀକ୍ଷା କରିଥିଲେ । ୧୯୫୮ରେ ମୁକ୍ତି ପାଇଥିବା ''ମା'' ଏ

ଦୃଷ୍ଟିରୁ ଉଲ୍ଲେଖନୀୟ : ଆମ ପାରଂପରିକ ସଂଗୀତ ତଥା ପାଶ୍ଚାତ୍ୟ ସଂଗୀତ ଶୈଳୀର ଛଟା ସେଇ ସିନେମାର ଗୀତରେ ପ୍ରତିଫଳିତ ହୋଇଥିଲା ।

୧୯୬୦ରେ ମୁକ୍ତି ପାଇଥିବା ''ଶ୍ରୀଲୋକନାଥ'' ବେଶ୍ ଜନପ୍ରିୟତା ହାସଲ କରିଥିଲା ଏବଂ ସେହି ଚଳଚ୍ଚିତ୍ରର ସଫଳତା ଅନ୍ତରାଳରେ ସେଥିରେ ବାଳକୃଷ୍ଣ ଦାସଙ୍କ ସଂଗୀତର ଉଲ୍ଲେଖନୀୟ ଭୂମିକା ରହିଥିଲା । ଏବେ ମଧ୍ୟ ସେ ସିନେମାର ଗୀତ ''ଫୁଲ ରସିଆରେ ମନ ମୋର ଛୁଇଁ ଛୁଇଁ ଯା' ଯା'....'' ଗୀତଟି ଲୋକେ ମୁଗ୍ଧ ହୋଇ ଶୁଣନ୍ତି ।

ଉପରେ କଥିତ ଦୁଇ ସଂଗୀତ ନିର୍ଦ୍ଦେଶକ ଏକକ ସଂଗୀତ ନିର୍ଦ୍ଦେଶନା ମଧ ଦେଇଥିଲେ । ୧୯୬୭ରେ ନିର୍ମିତ ''ମାଟିର ମଣିଷ'' ପାଇଁ ଭୁବନେଶ୍ୱର ମିଶ୍ର ଏକକ ସଂଗୀତ ନିର୍ଦ୍ଦେଶକ ରୂପେ ଆତ୍ମ-ପ୍ରକାଶ କଲେ । ଅବଶ୍ୟ ବାଳକୃଷ୍ଣ ଦାସ ଯଥେଷ୍ଟ ପୂର୍ବରୁ ସିନେମା ସଂଗୀତ ନିର୍ଦ୍ଦେଶନା ଦେଇଥିଲେ । ସ୍ୱର୍ଗତ ଦାସ ସଂଗୀତ ନିର୍ଦ୍ଦେଶନା ଦେଇଥିବା ଚଳଚ୍ଚିତ୍ର ଗୁଡ଼ିକ ହେଲା ''ଶ୍ରୀଲୋକନାଥ'' (୧୯୬୦), ''ଦସ୍ୟୁ ରତ୍ନାକର'', ''ଜୟ ଦେବ'', ''ନୂଆ ବୋଉ'', ଓ ''ଲକ୍ଷ୍ମୀ'' (୧୯୬୨), ''ମାଣିକ ଯୋଡ଼ି'', ଓ ''ଜୀବନ ସାଥି'' (୧୯୬୩), ''ସାଧନା'' ଓ ''ଅମଡ଼ା ବାଟ'' (୧୯୬୪) , ''ନବ ଜନ୍ମ'' ଓ ''ଅଭିନେତ୍ରୀ'' (୧୯୬୫), ''ଭାଇ ଭାଉଜ'' (୧୯୬୭) ଏବଂ ''ଅଦିନ ମେଘ'' (୧୯୭୦) । ୧୯୭୦ ପରେ ପରବର୍ତ୍ତୀ ୧୭ ବର୍ଷରେ ସେ ମାତ୍ର ଚାରି ଗୋଟି ଓଡ଼ିଆ ଚଳଚ୍ଚିତ୍ର ପାଇଁ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ; ସେ ଗୁଡ଼ିକ ହେଲା, ''ଶଂଖ ମହୁରୀ'' (୧୯୭୮), ''ମଥୁରା ବିଜୟ'' (୧୯୭୯), ''ବସନ୍ତ ରାସ'' (୧୯୮୪) ଏବଂ ''ଜୟଦେବ'' (୧୯୮୭) । ସ୍ୱର୍ଗତ ଭୁବନେଶ୍ୱର ମିଶ୍ର ମଧ ''ସ୍ତ୍ରୀ'' (୧୯୬୮) ''ବନ୍ଧନ'' (୧୯୬୯) ପ୍ରଭୃତି ସିନେମା ପାଇଁ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ।

ଯୁଗ୍ମ ସଂଗୀତ ନିର୍ଦ୍ଦେଶନା ଦୃଷ୍ଟିରୁ ଅନ୍ୟ ଏକ ଉଲ୍ଲେଖନୀୟ ଅଧ୍ୟାୟ ଆରମ୍ଭ ହେଲା ଯେତେବେଳେ ପ୍ରସିଦ୍ଧ ବଂଶୀବାଦନ ହରି ପ୍ରସାଦ ଚୌରାଶିଆ ଓ ଭୁବନେଶ୍ୱର ମିଶ୍ର ''ଗପ ହେଲେ ବି ସତ'' (୧୯୭୬) ପାଇଁ ସଂଗୀତ ନିର୍ଦ୍ଦେଶନା ଦେଲେ । ଭାରତୀୟ ବେତାର ବିଭାଗରେ କାର୍ଯ୍ୟରତ ଉଭୟ ଶିଳ୍ପୀ ଥିଲେ ଶାସ୍ତ୍ରୀୟ ସଂଗୀତରେ ଅଭିଜ୍ଞ; ଅଥଚ ସିନେମାପରି ଏକ ଜନପ୍ରିୟ ଗଣ-ମାଧମ ପାଇଁ ସେମାନେ ସଫଳ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ।

ଓଡ଼ିଆ ଚଳଚ୍ଚିତ୍ରର ପ୍ରଥମ ୩୦ ବର୍ଷ ସରିବା ପୂର୍ବରୁ ଅନ୍ୟ ଜଣେ ପ୍ରତିଭାବାନ୍ ସଂଗୀତ ନିର୍ଦ୍ଦେଶକ ସିନେମା କ୍ଷେତ୍ରକୁ ଆସିଥିଲେ; ତାଙ୍କ ନାମ ଶାନ୍ତନୁ ମହାପାତ୍ର । ଓଡ଼ିଶାର ପାରଂପରିକ ସଂଗୀତ ଓ ଦେଶ, ବିଦେଶରେ ପରିଦୃଷ୍ଟ ସଂଗୀତର ଧାରାରେ ସମନ୍ୱୟ ଆଣିବାରେ ସେ ମଧ ନିଜ ପାରଂଗମ ପଣିଆ ଦେଖାଇ ପାରିଛନ୍ତି । ତାଙ୍କ ନିର୍ଦ୍ଦେଶିତ ପ୍ରଥମ ସିନେମା ଥିଲା ''ସୂର୍ଯ୍ୟମୁଖୀ'' (୧୯୬୩) । ପରବର୍ତ୍ତୀ ବର୍ଷମାନଙ୍କରେ ସେ ବହୁ ପ୍ରକାରର ସିନେମା ପାଇଁ ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି । ସେ ଗୁଡ଼ିକ ହେଲା, ''ଅରୁନ୍ଧତି'' (୧୯୮୦), ''ଚିଲିକା ତୀରେ'' (୧୯୭୭), ''ଅଗ୍ନି ପରୀକ୍ଷା''(୧୯୭୯), ''ମେଘ ମୁକ୍ତି'', (୧୯୮୦) ''କ୍ଲାନ୍ତ ଅପରାହ୍ନ'', (୧୯୮୫), ''ମଝି ପାହାଚ'' (୧୯୮୬) ପ୍ରଭୃତି ।

୧୯୭୫ ଓ ପରବର୍ତ୍ତୀ ଦୁଇ ଦଶକ ଯେଉଁ ଦୁଇ ଜଣ ସଂଗୀତ ନିର୍ଦ୍ଦେଶକ ଓଡ଼ିଆ କଥାଚିତ୍ର ଜଗତକୁ ସଂଗୀତ-ମୁଖର କରି ରଖିଛନ୍ତି ସେ ଦୁଇ ଜଣ ହେଲେ କଣ୍ଠଶିଳ୍ପୀ ଅକ୍ଷୟ ମହାନ୍ତି ଓ ଗାୟକ ପ୍ରଫୁଲ୍ଲ କର । ବିଂଶ ଶତାବ୍ଦୀର ଷଷ୍ଠ ଦଶକ ବେଳକୁ ଉଭୟେ କଣ୍ଠ ଶିଳ୍ପୀ ରୂପେ ପ୍ରସିଦ୍ଧିଲାଭ କରିଥିଲେ; ଉଭୟେ ମଧ୍ୟ ସମସାମୟିକ । ତେବେ ଅକ୍ଷୟ ମହାନ୍ତି ୧୯୬୫ରେ ନିର୍ମିତ ''ମଲା ଜନ୍ମ'' ଚଳଚ୍ଚିତ୍ରରେ ପ୍ରଥମେ ସଂଗୀତ ନିର୍ଦ୍ଦେଶକ ରୂପେ ଆତ୍ମ-ପ୍ରକାଶ କରିଥିବା ବେଳେ, ପ୍ରଫୁଲ୍ଲ କର ''ମମତା'' (୧୯୭୫) ସିନେମାରେ ପ୍ରଥମେ ସଂଗୀତ ନିର୍ଦ୍ଦେଶନା ଦେଲେ । ଉଭୟ ଅନେକ ଜନପ୍ରିୟ ସିନେମା ଗୀତର ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି । ପ୍ରଫୁଲ୍ଲବାବୁ ''ଶେଷ ଶ୍ରାବଣ'' (୧୯୭୬), ''ସିନ୍ଦୂର ବିନ୍ଦୁ'' (୧୯୭୬), ''ପୂଜା'' (୧୯୮୧), ''ଅସ୍ତରାଗ'' (୧୯୮୨) ପ୍ରଭୃତିରେ ବହୁ ଜନପ୍ରିୟ ଗୀତ ସୃଷ୍ଟି କରିଥିଲେ । ଅକ୍ଷୟ ମହାନ୍ତି ମଧ୍ୟ ଅନେକ ଜନପ୍ରିୟ ଚଳଚ୍ଚିତ୍ରରେ ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି; ତେବେ ଏ ଦୃଷ୍ଟିରୁ ସେ ସର୍ବାଧିକ ସଫଳ ହୋଇଛନ୍ତି ''ବାଜେ ବଇଁଶୀ ନାଚେ ଘୁଁଘୁର'' ସିନେମାର ସଂଗୀତ ଦ୍ୱାରା । ଦେବବ୍ରତ କରଙ୍କ ପ୍ରଯୋଜିତ ''ବାଜେ ବଇଁଶୀ ନାଚେ ଘୁଁଘୁର'' ଅକ୍ଷୟ ମହାନ୍ତିଙ୍କ ସୁମଧୁର ସଂଗୀତ ଦ୍ୱାରା ମୁଖରିତ ।

ଜନପ୍ରିୟତାରେ ଶକ୍ତିଶାଳୀ ହିନ୍ଦୀ ସିନେମା ସଂଗୀତ ନିଶ୍ଚୟ ଓଡ଼ିଆ ଚଳଚ୍ଚିତ୍ରକୁ ପ୍ରଭାବିତ କରୁଛି । ଏ ପ୍ରଭାବ ପ୍ରକାରେ ପ୍ରକାରେ ପ୍ରତିଫଳିତ ହେଉଛି । ଅନେକ ପ୍ରଯୋଜକ ହିନ୍ଦୀ ସିନେମାର ଗାୟକ, ଗାୟିକାମାନଙ୍କୁ ବେଳେବେଳେ ଓଡ଼ିଆ ସିନେମାର ଗୀତ ପାଇଁ ସୁଯୋଗ ଦେଉଥିବା ବେଳେ ଓଡ଼ିଶାର ପ୍ରତିଭାବାନ୍ କଣ୍ଠଶିଳ୍ପୀମାନେ ପ୍ରଚ୍ଛଦପଟ ପାଇଁ ଗୀତ ଗାଇବାରୁ ବଞ୍ଚିତ ହେଉଛନ୍ତି । ତେବେ ମୋଟ ଉପରେ ଓଡ଼ିଆ ଚଳଚ୍ଚିତ୍ର ଅନେକ ସ୍ମରଣୀୟ ଗୀତ ସୃଷ୍ଟି କରି ପାରିଛି ।

ସଂଗୀତ ନିର୍ଦ୍ଦେଶକ ବାସୁଦେବ ରଥ ''ସଉତୁଣୀ'' (୧୯୭୯) ପାଇଁ ଯେଉଁସବୁ ଗୀତ ସଂଯୋଜିତ କରିଥିଲେ ସେ ସମସ୍ତ 'ହିଟ୍' ଗୀତ ପର୍ଯ୍ୟାୟର । ''ଫୁଲ ଚନ୍ଦନ'' ଚଳଚ୍ଚିତ୍ର ପାଇଁ ସରୋଜ ପଟ୍ଟନାୟକ ମଧ୍ୟ ବେଶ୍ ଶ୍ରୁତି-ମଧୁର ଗୀତ ଦେଇଛନ୍ତି । ନିର୍ଦ୍ଦେଶକ ଶିଶିର କୁମାର ମିଶ୍ର, ପ୍ରଶାନ୍ତ ନନ୍ଦ ପ୍ରଭୃତି ଚଳଚ୍ଚିତ୍ର ନିର୍ମାତାମାନଙ୍କ ପ୍ରଭାବ ମଧ୍ୟ କେତୋଟି ସିନେମା ସଂଗୀତରେ ଅନୁଭୂତ ହୁଏ । ଶିଶିରବାବୁ ପ୍ରଥମ କରି ତାଙ୍କ ନିର୍ଦ୍ଦେଶିତ ଓଡ଼ିଆ ସିନେମାରେ କବାଲି ଶୈଳୀରେ ଗୀତ ପରିବେଷଣ କରିଥିଲେ । ପ୍ରଶାନ୍ତ ନନ୍ଦଙ୍କ କେତୋଟି ଚଳଚ୍ଚିତ୍ର ସୃଷ୍ଟି (ଯଥା : ''ମା ଓ ମମତା'', ''ସ୍ୱପ୍ନ ସାଗର'')ରେ କଥୋପ-କଥନ ଶୈଳୀରେ ଗୀତ ଦେଇଛନ୍ତି ଯାହା ଗୀତ ଗୁଡ଼ିକୁ ଅଧିକ ସଜୀବ କରିଛି ।

ବହୁ ପ୍ରତିକୂଳତାର ସିଅର କାଟି ଓଡ଼ିଆ ସିନେମା ସଂଗୀତ ଅଗ୍ରଗତିର ପ୍ରତିଶ୍ରୁତି ଦେଇଛି ।



# ଓଡ଼ିଆ ସିନେମା ସମୀକ୍ଷା

ସିନେମା ସମୀକ୍ଷା ସହଜ, ସ୍ୱଳ୍ପାୟାସରେ ସମ୍ଭବ ବୋଲି ଅନେକଙ୍କର ଧାରଣା ରହିଛି । ସିନେମା କାହିଁକି, ଯେ କୌଣସି କଳା ସମୀକ୍ଷାରେ ଦକ୍ଷତା ହାସଲ ଆବଶ୍ୟକ କରେ ଗଭୀର ଅଧ୍ୟୟନ, ମନନଶୀଳତା, ବୌଦ୍ଧିକ କସରତ ଏବଂ ସର୍ବୋପରି ଅର୍ନ୍ତଦୃଷ୍ଟି । ସଙ୍ଗୀତ, ଚିତ୍ରକଳା, ନୃତ୍ୟ, ନାଟକ, ସାହିତ୍ୟ ପ୍ରଭୃତି ପ୍ରତି କଳାର ସମୀକ୍ଷା ଯେତିକି ଆୟାସ ସାଧ୍ୟ, ସେତିକି ବା ତା'ଠାରୁ ଅଧିକ ଆୟାସ ସାଧ୍ୟ ସିନେମା ସମୀକ୍ଷା; କାରଣ ଏକ ସୃଜନ କଳା ରୂପେ ସିନେମା ଏକାଧିକ କଳାର ସମନ୍ୱୟ । ଏମିତି ବହୁ ଚଳଚ୍ଚିତ୍ର ରହିଚି ଯେଉଁ ଗୁଡ଼ିକର ସାମଗ୍ରିକ ରୂପ କଳାତ୍ମକ ନୁହେଁ ଅଥଚ ସେ ଗୁଡ଼ିକ ଅନ୍ୟ କେତେକ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ ହୋଇଥାଏ । କେଉଁଟିର ସଂଗୀତ ଭଲ ତ, କେଉଁଟିରେ ଅଭିନୟ କୁଶଳତା ଫୁଟି ଉଠିଛି ତ କେଉଁଟିର କାହାଣୀ ବା ସଂଳାପ ଭଲ ହୋଇ ପାରିଥାଏ । ସବୁ ଦୃଷ୍ଟିରୁ ଉତ୍ତମ ହୋଇଥିବା ସିନେମାରେ ବହୁ ପ୍ରକାରର କଳାକାରଙ୍କର ବହୁ କିସମର କଳା ସହ ନିର୍ଦ୍ଦେଶନା ବାହାଦୂରୀ ମଧ୍ୟ ଫୁଟି ଉଠିଥାଏ । ଏଣୁ ଏକାଧିକ କଳା ସମ୍ବନ୍ଧରେ ଜ୍ଞାନ ନଥିଲେ ଉତ୍ତମ ସିନେମା ସମୀକ୍ଷା ଲେଖିବା ସମ୍ଭବ ନୁହେଁ ।

ପୁଣି ଚଳଚ୍ଚିତ୍ର ସମୀକ୍ଷା ଲେଖିବାରେ କେତେକ ପ୍ରତିବଂଧକ ମଧ୍ୟ ରହିଛି । ବହିଟିଏ ଇଚ୍ଛାମତେ ପଢ଼ି ଯେମିତି ସମୀକ୍ଷା କରାଯାଇପାରେ, ସିନେମା କ୍ଷେତ୍ରରେ ତାହା ନୁହେଁ । ରୂପେଲି ପରଦାରେ ଚଳଚ୍ଚିତ୍ରଟିଏ ପ୍ରଦର୍ଶିତ ହେଉଥିଲେ ହିଁ ତାହା ଦେଖି ସମୀକ୍ଷା ଲେଖିବା ସମ୍ଭବ । ଏଣୁ ବହୁ ପୁରାତନ ସିନମାର ସମୀକ୍ଷା ଲେଖିବା ଅଧିକାଂଶ କ୍ଷେତ୍ରରେ ସମ୍ଭବ ନୁହେଁ; କାରଣ ସେଗୁଡ଼ିକ ପ୍ରାୟ ପ୍ରଦର୍ଶିତ ହୁଏ ନାହିଁ । ସିନେମା ସମୀକ୍ଷା ଲେଖିବା ସୁଯୋଗ ଏ ଦୃଷ୍ଟିରୁ ସୀମିତ ।

କହିବା ବାହୁଲ୍ୟ ଯେ ପ୍ରତି ସୃଜନକଳା କ୍ଷେତ୍ରରେ ଯାହା ସବୁ ସୃଷ୍ଟି ହେଉଛି ସେ ସମସ୍ତର ମୂଲ୍ୟାୟନ ଅତି ଗୁରୁତ୍ୱପୂର୍ଣ୍ଣ । ଆଶ୍ଚର୍ଯ୍ୟ ଲାଗେ ଯେ ସୃଜନ କଳା କ୍ଷେତ୍ରରେ ଏତେ ସମୃଦ୍ଧ ଆମ ରାଜ୍ୟରେ କଳା ସମୀକ୍ଷା ପ୍ରାୟ ନାହିଁ କହିଲେ ଚଳେ । ଏହାର ଅଭାବ ଯୋଗୁଁ ଗୋଟିଏ ସୃଷ୍ଟି କେଉଁ ସ୍ତରର, ତାର ମୂଲ୍ୟ କେତେ, ସାଧାରଣ ଲୋକେ ଜାଣିବାକୁ ସମର୍ଥ ହୁଅନ୍ତି ନାହିଁ । ଓଡ଼ିଆରେ ସିନେମା ମୂଲ୍ୟାୟନର ଏକ ପ୍ରାରମ୍ଭିକ ଉଦ୍ୟମ ସୁଦୂର ୧୯୭୯ ସାଲରେ ମୋ ସଂପାଦିତ ପାକ୍ଷିକ ପତ୍ରିକା ''ସୁବିଚାର''ରେ ଆରମ୍ଭ କରିଥିଲି । ପରେ କେତେକ ଦୈନିକ ପତ୍ରିକାରେ ମଧ୍ୟ ମୋର ସମୀକ୍ଷା ଲେଖା ଚାଲୁ ରହିଲା । ଫଳତଃ, ପ୍ରାୟ ଶହେ ଗୋଟି ଓଡ଼ିଆ ଚଳଚ୍ଚିତ୍ର ସମୀକ୍ଷା ବର୍ତ୍ତମାନ ସୁଦ୍ଧା ଲେଖି ପ୍ରକାଶ କରିବାରେ ସମର୍ଥ ହୋଇପାରିଛି । ତେବେ ଓଡ଼ିଆ ସିନେମା ଇତିହାସର ଏଇ ବହିରେ ମାତ୍ର ସୀମିତ ସଂଖ୍ୟକ ଚଳଚ୍ଚିତ୍ର ସମୀକ୍ଷା ସାମିଲ୍ କରାଯାଇଛି । ସେହି ସମସ୍ତ ସମୀକ୍ଷା ଅର୍ନ୍ତଭୁକ୍ତ ନ କରିବାର କାରଣ : ଚଳଚ୍ଚିତ୍ରଟିଏ ଉତ୍ତମ ନ ହୋଇଥିଲେ ସମୀକ୍ଷାଟିର ମଧ୍ୟ ଦୀର୍ଘ ମିଆଦି ମୂଲ୍ୟ ରହେନି । ତେବେ ମୋତେ ସ୍ୱୀକାର କରିବାକୁ ହେବ ଯେ କେତୋଟି ଭଲ ସିନେମାର ସମୀକ୍ଷା ଲେଖିବାରେ ମୁଁ ସମର୍ଥ ହୋଇ ପାରିନାହିଁ । ଭବିଷ୍ୟତରେ ସେଗୁଡ଼ିକ ଦେଖିବା ସମ୍ଭବ ହେଲେ ସେ ସମସ୍ତର ସମୀକ୍ଷା ଏ ବହିରେ ପତ୍ରସ୍ଥ କରିବା ଅଭିଳାଷ ରହିଛି । ଯାହା ସବୁ ଏଥିରେ ଅର୍ନ୍ତଭୁକ୍ତ ହୋଇଛି ସେଥିରୁ ଅଧିକାଂଶ ''ସୁବିଚାର'' ଓ ''ଦୈନିକ ଆଶା''ରୁ ପୁନଃ ପ୍ରକାଶିତ ହୋଇଛି । ❑

# ମୃଣାଳ ସେନ୍‌ଙ୍କ ମାଟିର ମଣିଷ

ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ଶାଶ୍ୱତ ସୃଷ୍ଟି **ମାଟିର ମଣିଷ** ଚଳଚ୍ଚିତ୍ରରେ ରୂପାୟିତ ହେବା ପରେ ଏବେ ବହୁ ଦଶକ ବିତି ଗଲାଣି । କାରଣ ଚଳଚ୍ଚିତ୍ରଟି ନିର୍ମିତ ହୋଇଥିଲା ୧୯୬୭ ସାଲରେ । ଭାରତର ଅନ୍ୟତମ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା ଶ୍ରୀ ମୃଣାଳ ସେନ୍ ସିନେମାରେ ରୂପାୟିତ କରିଥିଲେ ଆମର ଏଇ କାଳଜୟୀ ଉପନ୍ୟାସଟିକୁ । ବିଗତ ରବିବାର (୧୯୮୮ର ପ୍ରଥମ ରବିବାର) ମଧ୍ୟାହ୍ନରେ ଦୂରଦର୍ଶନରେ ଜାତୀୟ କାର୍ଯ୍ୟକ୍ରମର ସେ ଚିତ୍ର ପ୍ରସାରିତ ହୋଇଥିଲା । ଏଣୁ ଏ ସଂକ୍ରାନ୍ତରେ କିଛି ପ୍ରତିକ୍ରିୟା ପ୍ରକାଶର ଆବଶ୍ୟକତା ରହିଛି ।

ସ୍ୱର୍ଗତ ବାବୁଲାଲ୍ ଦୋଶୀଙ୍କ ଛାୟାବାଣୀ ପ୍ରତିଷ୍ଠାନ ପାଇଁ ଶ୍ରୀ ସେନ୍ ଯେତେବେଳେ 'ମାଟିର ମଣିଷ' ନିର୍ମାଣ କଲେ ଉପନ୍ୟାସଟିର ଚଳଚ୍ଚିତ୍ରୀୟ ରୂପକୁ ସାଧାରଣ ଦର୍ଶକ ମଣ୍ଡଳୀ ଓ ବିଦଗ୍ଧ ଦର୍ଶକ ମଣ୍ଡଳୀ, ସମସ୍ତେ ନାପସନ୍ଦ କଲେ । କାରଣ ରୁପେଲି ପରଦାରେ ସେମାନେ ଯାହା ଦେଖିଲେ ତାହା ମୂଳ ଉପନ୍ୟାସଟି ଠାରୁ ଯଥେଷ୍ଟ ଭିନ୍ନ । ମନେହେଲା, କାଳିନ୍ଦୀ ଚରଣଙ୍କ ସର୍ବଜନ ଆଦୃତ ଉପନ୍ୟାସର କାହାଣୀ ତ ନୁହେଁ ଏ ଯେପରି କି ଏକ ଭିନ୍ନ କାହାଣୀ ଉପରେ ଆଧାରିତ ସିନେମା !

ଅବଶ୍ୟ ଉପନ୍ୟାସର ପ୍ରତି ପ୍ରଧାନ ଚରିତ୍ର – ଶ୍ୟାମ ପ୍ରଧାନ, ହରି ମିଶ୍ର, ବରଜୁ, ଛକଡ଼ି, ହାରାବୋଉ, ନେତ୍ରମଣି ଏବଂ ବରଜୁର ତିନି ସନ୍ତାନ ଓ ଧରମା– ସମସ୍ତେ ଶ୍ରୀ ସେନ୍‌ଙ୍କ ସିନେମାରେ ମଧ୍ୟ ରହିଛନ୍ତି । କିନ୍ତୁ ଚଳଚ୍ଚିତ୍ର କାହାଣୀର ଘଟଣାବଳୀ ଓ ବିଷୟବସ୍ତୁର ଭାରସାମ୍ୟ ଉପନ୍ୟାସଟିଠାରୁ ବହୁତ ଭିନ୍ନ । ଏତଦ୍‌ବ୍ୟତୀତ ଉପନ୍ୟାସରେ ନ ଥିବା ଅନେକ ଉପାଦାନ ଚଳଚ୍ଚିତ୍ରଟିରେ ଗ୍ରଥିତ ହୋଇଛି ।

ମାଟିର ମଣିଷ ଉପନ୍ୟାସର ପ୍ରଧାନ ଚରିତ୍ର ବରଜୁ ପ୍ରଧାନ । କିଛିକାଳ ଅମିନ ଚାକିରି କରିଥିବା ବରଜୁ ବାପ ଶ୍ୟାମ ପ୍ରଧାନର ଆଦର୍ଶ ଓ ମାଟିର ଆକର୍ଷଣରେ ଆକର୍ଷିତ ହୋଇ କୃଷକ ଜୀବନକୁ ବରି ନେଇଛି । କର୍ତ୍ତବ୍ୟ ଓ ସାମୂହିକ ସ୍ୱାର୍ଥ ପାଇଁ ସେ ନିଜକୁ ନିୟୋଜିତ କରିଛି । ଶେଷରେ ବାପାର ମୃତ୍ୟୁକାଳୀନ ଇଚ୍ଛା, 'ଘର ଭିତରେ ଯେପରି ପାଚେରୀ ନଉଠେ, ବିଲ ମଝିରେ ହିଡ଼ ନ ପଡ଼େ' ରକ୍ଷା କରିବା ପାଇଁ ଛକଡ଼ିକୁ ସବୁ ସମର୍ପି ଦେଇ ଘରଛାଡ଼ି, ପ୍ରଧାନପଡ଼ା ଛାଡ଼ି ଚାଲିଯାଇଛି ।

ଚଳଚ୍ଚିତ୍ରଟିରେ କିନ୍ତୁ ଅଧିକ ଗୁରୁତ୍ୱ ପାଇଛି ଛକଡ଼ି । ଛକଡ଼ି ଚରିତ୍ରଟିର ନାଟକୀୟ ସମ୍ଭାବନା ସିନେମା ନିର୍ଦ୍ଦେଶକଙ୍କୁ ଅଧିକ ପ୍ରଭାବିତ କରିଥିବା ମନେହୁଏ । ମେଳଣ ବୁଲିବାକୁ, କଲିକତା ଯିବାକୁ ଛକଡ଼ିର ଆଗ୍ରହକୁ ନେଇ ସେ ଯଥେଷ୍ଟ ନାଟକୀୟତା ସୃଷ୍ଟି କରିଛନ୍ତି । ଆଦର୍ଶବାନ ବରଜୁ ତାଙ୍କୁ ସମ୍ଭବତଃ ରଙ୍ଗହୀନ ମନେ ହୋଇଛି । ଅଥଚ ବରଜୁର ଜୀବନ ଓ ଜୀବନାଦର୍ଶ ହିଁ ଉପନ୍ୟାସଟିର ପ୍ରାଣବାୟୁ ।

କାହାଣୀର ଅଗ୍ରଗତି ପାଇଁ ଶ୍ରୀ ସେନ୍ କେତେକ ଉପନ୍ୟାସ ବହିର୍ଭୂତ ଉପାଦାନର ସାହାଯ୍ୟ ନେଇଛନ୍ତି । ୧୯୩୨ ସାଲରେ ପ୍ରକାଶିତ **ମାଟିର ମଣିଷ**ର ଦ୍ୱିତୀୟ ବିଶ୍ୱଯୁଦ୍ଧ ସମ୍ପର୍କୀୟ

କିଛି ଉପାଦାନ ନାହିଁ । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ହିଟ୍‌ଲରୀୟ ବିଭୀଷିକାର ପ୍ରତିଧ୍ୱନି ନିର୍ଦ୍ଦେଶକ ଆମକୁ ତାଙ୍କ ଚିତ୍ର ମାଧ୍ୟମରେ ଦେବାକୁ ଚାହିଁଛନ୍ତି। ଯୁଦ୍ଧ ବେଳେ ଧାନ, ଚାଉଳ ସଂଗ୍ରହକୁ ସମ୍ବଳ କରି ସେ ହରି ମିଶ୍ରଙ୍କ କାରସାଦି ପ୍ରଦର୍ଶିତ କରିଛନ୍ତି । ବରଜୁ ଛକଡ଼ିଙ୍କ ମଧ୍ୟରେ ବିଭେଦର ପାଚେରୀ ଉଠାଇବା ପାଇଁ ଯୁଦ୍ଧ ହିଁ ଯେପରି ପ୍ରଧାନ କାରଣ ଓ ଖଳବୁଦ୍ଧି ସମ୍ପନ୍ନ କୁଚକ୍ରୀ ହରି ମିଶ୍ର ଗୌଣ ! ଉପନ୍ୟାସର ହରି ମିଶ୍ର କିନ୍ତୁ ଯେତିକି ଖଳ ସେତିକି ଲୋଭୀ; ଯୁଦ୍ଧର ଅବଲମ୍ବନ ଲେଖକଙ୍କୁ ଦରକାର ପଡ଼ିନି ।

ଗାଁ ଆକାଶ ଉପରକୁ ଉଡ଼ି ଆସିଥିବା ବ୍ୟୋମଯାନ, ଗ୍ରାମ୍ୟ ରାସ୍ତାକୁ ପ୍ରଥମକରି ଆସିଥିବା ସାଇକେଲ ଆରୋହୀ ପ୍ରଭୃତି ମୃଣାଳ ସେନ୍ ତାଙ୍କ ସିନେମାରେ ଦେଇଛନ୍ତି । ବ୍ୟୋମଯାନଟି ଛକଡ଼ିର କଳ୍ପନା ପ୍ରବଣ ମନରେ ଏମିତି ରେଖାପାତ କରିଛି ଯେ ତା'ର ବହୁଦିନର ଅଭିପ୍ସାକୁ ତାହା ସ୍ୱପ୍ନରେ ରୂପାନ୍ତରିତ କରିଛି । ଛକଡ଼ିର ଇଚ୍ଛା ପ୍ରତିଫଳିତ କରି ଉଡ଼ାଜାହାଜ ପ୍ରତୀକାତ୍ମକ ହୋଇଯାଇଛି ।

''ମାଟିର ମଣିଷ'' ପ୍ରଥମେ ମୁକ୍ତି ପାଇବା ବେଳେ ତା'ର ଉପସଂହାର ଠିକ୍ ଉପନ୍ୟାସଟିର ଉପସଂହାର ଭଳି ରହିଥିଲା । ଅର୍ଥାତ୍ ବରଜୁ ଛକଡ଼ି ପାଇଁ ଘରଦ୍ୱାର ବିଲବାଡ଼ି ଛାଡ଼ିଦେଇ ସପରିବାରରେ ଗ୍ରାମାନ୍ତର ହୋଇଯିବା ପରେ ଛକଡ଼ି ଖୁବ୍ ଶୂନ୍ୟ ଅନୁଭବ କରୁଛି । ସେ ସେମାନଙ୍କୁ ଫେରାଇ ଆଣିବା ପାଇଁ ଚେଷ୍ଟା କରି ବିଫଳ ହେଉଛି । ନିର୍ଦ୍ଦେଶକ ଗୋଟିଏ 'ଫ୍ରିଜ୍' (ଜଡ଼ିଭୂତ ଚିତ୍ର) ଦ୍ୱାରା ଉପନ୍ୟାସର ଉପସଂହାରରେ ବର୍ଣ୍ଣିତ ଭାବଟିକୁ ଫୁଟାଇବାରେ ସଫଳ ହୋଇଥିଲେ ।

କିନ୍ତୁ ଦୂରଦର୍ଶନ ପ୍ରସାରିତ କରିଥିବା ''ମାଟିର ମଣିଷ''ରେ ବରଜୁ ପୁନଶ୍ଚ ଗାଁକୁ ଫେରି ଆସୁଥିବା ପ୍ରଦର୍ଶିତ ହୋଇଛି । ମାଟିର ମଣିଷର ଏଣୁ ଦୁଇଟି ଚଳଚ୍ଚିତ୍ରୀୟ ସଂସ୍କରଣ ସମ୍ଭବତଃ ହୋଇଥିଲା ।

ତେବେ ମୂଳ ଉପନ୍ୟାସର ସମକକ୍ଷ ହେବା ଭଳି ଅନ୍ୟ ଏକ ''ମାଟିର ମଣିଷ'' ନିର୍ମାଣର ଆବଶ୍ୟକତା ମଧ୍ୟ ଯେ ରହିଛି, ସିନେମାଟିର ଟି. ଭି. ପ୍ରସାରଣ ପୁଣିଥରେ ହୃଦ୍‌ବୋଧ କରିହେଲା ।

- **'ଦୈନିକ ଆଶା'**, ୨୧.୮.୮୮



# 'ଶ୍ରୀକୃଷ୍ଣଙ୍କ ରାସଲୀଳା'



ଶ୍ରୀକୃଷ୍ଣଙ୍କ ରାସଲୀଳାର ଶ୍ରୀକୃଷ୍ଣ ଭୂମିକାରେ ରବୀନ୍ଦ୍ର ଅତିବୁଦ୍ଧି

ରାଧା-କୃଷ୍ଣଙ୍କ ରୋମାନ୍ସ ଭାରତୀୟଙ୍କ ଆଖିରେ ରୋମାନ୍ସ କେବଳ ନୁହେଁ; ତାହା ପ୍ରଭୁଙ୍କ ଲୀଳା ! ଏଇ ଭାବକୁ ଆଧାରିତ କରି ମନୋରଞ୍ଜନ ଓ କଳାତ୍ମକ ଅଭିବ୍ୟକ୍ତି ମଧ୍ୟରେ ସୁନ୍ଦର ସମନ୍ୱୟ ରକ୍ଷା କରି ପାରିଛି ୧୯୭୯ରେ ମୁକ୍ତି ଲାଭ କରିଥିବା 'ଶ୍ରୀକୃଷ୍ଣଙ୍କ ରାସଲୀଳା' ।

ନାଟ୍ୟକାର କମଳ ଲୋଚନ ମହାନ୍ତିଙ୍କ ଦ୍ୱାରା ପ୍ରତିଷ୍ଠିତ ଏକାମ୍ର ଛାୟାଛବିର ଏଇ ପ୍ରଥମ ଅବଦାନଟି କେବଳ ମନୋରଞ୍ଜନ ନ ହୋଇ ଭଲ ରୁଚିବୋଧର ମନୋରଞ୍ଜନ ହୋଇପାରିଛି; କାରଣ ଏଥିରେ ନୃତ୍ୟ ନାଟିକା ଓ (କେତେକାଂଶରେ) ଗୀତିନାଟ୍ୟର ଉପାଦାନ ସଫଳ ଭାବେ ସଂଯୋଜିତ ହୋଇଛି । ତିରିଶରୁ ଅଧିକ ଗୀତ ସମ୍ବଳିତ ଏଇ

ଚଳଚ୍ଚିତ୍ରରେ ବହୁ ସୁପରିଚିତ ପ୍ରାଚୀନ ଓଡ଼ିଆ ଗୀତ ଓ ଜୟଦେବଙ୍କ **ଗୀତ ଗୋବିନ୍ଦର** ପଦାବଳୀ ବ୍ୟବହୃତ ହୋଇଛି ।

କଥାଚିତ୍ରଟିର ବିଷୟବସ୍ତୁ ଅବଶ୍ୟ ଯେତିକି ସୁପରିଚିତ ସେତିକି କ୍ଷୀଣ । ରାଧା ସଖୀମାନଙ୍କ ଗହଣରେ ଯମୁନାରୁ ଜଳ ଆଣିବାକୁ ଯାଇ କୃଷ୍ଣଙ୍କୁ ଦେଖି ମୁଗ୍ଧ ହେଲେ; କୃଷ୍ଣ ବି ରାଧାଙ୍କ ପ୍ରେମରେ ପଡ଼ିଲେ । ତାଙ୍କ ମୋହନ ବଂଶୀର ମାଦକତାରେ ବୃକ୍ଷ, ଲତା, ପଶୁପକ୍ଷୀ ସମସ୍ତେ ତନ୍ମୟ । ରାଧା ଲୁଚି ଲୁଚି ଶ୍ରୀକୃଷ୍ଣଙ୍କ ସହ ପ୍ରେମ ଅଭିସାର କଲେ; କିନ୍ତୁ ଚନ୍ଦ୍ରାବଳୀ ତାଙ୍କ ପ୍ରେମ ପ୍ରତିଦ୍ୱନ୍ଦ୍ୱିନୀ ହେଲା । ରାଧା ଅଭିମାନ କଲେ । ଅଭିମାନ ତ ଅଭିମାନ, ବିରହଜ୍ୱଳାରେ ଦେହମନ ଜଳି ଯାଉଥିବାରୁ ଫୁଲ, ଚାମର, ଚନ୍ଦନ, କର୍ପୂରର ଉପଚାରରେ ସଖୀମାନେ ରାଧାଙ୍କୁ ଥଣ୍ଡା କରିବାକୁ ଚେଷ୍ଟା କଲେ । କୃଷ୍ଣ ରାଧାଙ୍କ ଦର୍ଶନ ପାଇବା ପାଇଁ, ନିକଟବର୍ତ୍ତୀ ହେବା ପାଇଁ କେତେ ଉପାୟ କଲେ : ସେ ଫୁଲ-ବାଲୀ ହେଲେ, ଅଳତା ବାଲୀ ସାଜିଲେ, କାଚରା, ସାପୁଆ, ଯୋଗୀବେଶ ପିନ୍ଧିଲେ । ରାଧାଙ୍କ ଅଭିମାନ ସମ୍ପୂର୍ଣ୍ଣ ନ ତୁଟିବାରୁ ଯମୁନାର ଅକାତକାତ ପାଣିରେ ଆତ୍ମାହୂତି ଦେବା ପାଇଁ ଡେଇଁ ପଡ଼ିଲେ । ଏତେବେଳକେ ମାନିନୀ ରାଧାଙ୍କ ମାନ ତୁଟିଲା ।

ସ୍ୱପ୍ନ ଖରିଦ୍ କରିବା ପାଇଁ ସିନେମା ହଲ୍‌କୁ ଯାଉଥିବା ଲୋକଙ୍କ ପାଇଁ ଆଉ ଅଧିକ ମନ ଭୁଲାଣିଆ କି ବିଷୟବସ୍ତୁ ଥାଇପାରେ ? ଯଦି ଥାଇପାରେ ଥିବ; କିନ୍ତୁ ଏଇ ବିଷୟବସ୍ତୁର ପୌରାଣିକ ପୃଷ୍ଠଭୂମି ଆଉ ଆରୋପିତ ଧର୍ମଭାବ ଥିବ କି ? ଏଇ ଧର୍ମ ଭାବରେ ଗଦ୍ ଗଦ୍ ହୋଇ ସାଧାରଣ ଲୋକେ କଥା ବସ୍ତୁଟିର ଅବାସ୍ତବତା ଭୁଲି ଯାଆନ୍ତି; ଭୁଲି ଯାଆନ୍ତି ଯେ ଦଳେ ଝିଅଙ୍କ ଆଗରେ ରୋମାନ୍ସ ଅଡୁଆ କଥା : ଭୁଲି ଯାଆନ୍ତି ଯେ ପରମ ପୁରୁଷଙ୍କ 'ରମଣୀ ରଙ୍କା' ଆଚରଣ ଖାପ ଛଡ଼ା; ଏବଂ ଭୁଲି ଯାଆନ୍ତି ଯେ ବିବାହିତା ତରୁଣୀ ସହ ଏ ପ୍ରେମ ଅନ୍ୟାୟ ।

ସେ ଯା'ହେଉ, ସିନେମାଟି କିନ୍ତୁ ଦର୍ଶନୀୟ ହୋଇଛି । ଏଥିପାଇଁ ସର୍ବାଧିକ କୃତିତ୍ୱ ହୁଏତ ନୃତ୍ୟଗୁରୁ କେଳୁଚରଣଙ୍କର ଯିଏ ଚିତ୍ରଟିର ପରିକଳ୍ପନା ତଥା ନୃତ୍ୟ ରଚନା କରିଛନ୍ତି । ଏହାର ସଂଳାପ ଗୁଡ଼ିକ ପ୍ରାୟ ଗୀତିମୟ; ପ୍ରତି ଦୃଶ୍ୟରେ ମଧ୍ୟ ରହିଛି ନୃତ୍ୟ । ଚିତ୍ରନାଟ୍ୟ ଓ ସଂଳାପ କମଳ ଲୋଚନ ଲେଖିଛନ୍ତି । ସଂଳାପରେ ମିତବ୍ୟୟିତା ଚିତ୍ରଟିର ଅନ୍ୟ ଏକ ବିଶେଷତ୍ୱ । ଫଟୋଗ୍ରାଫି ଅତି ନେତ୍ରପ୍ରିୟ । ଆମ ନାଟ୍ୟ, ଗୀତ ପରମ୍ପରାର ଉପାଦାନ ବହୁଳ ଭାବରେ ବ୍ୟବହାର ହୋଇଥିବାରୁ ଛବିଟି ମଧ୍ୟ ଏକ ପରୀକ୍ଷାମୂଳକ ଛବି । ଏହା ପ୍ରତ୍ୟେକେ ଦେଖିବା ଉଚିତ, ଅନ୍ତତଃ ଥରେ ।

**- 'ସୁବିଚାର', ସେପ୍ଟେମ୍ବର, ୧୯୭୯**



# 'ଫୁଲ ଚନ୍ଦନ' : ସଫଳ ମନୋରଞ୍ଜନ



"ଫୁଲ ଚନ୍ଦନ"ରେ ଅଭିନେତ୍ରୀ ଅପରାଜିତା

ଜୟଶ୍ରୀ ପ୍ରଡ଼କ୍‌ସନ୍ ପ୍ରସ୍ତୁତ 'ଫୁଲ ଚନ୍ଦନ' ଓଡ଼ିଆ ସିନେମାଟି ଦେଖି ସାରିବା ପରେ ଚିତ୍ରଟିର ନିର୍ଦ୍ଦେଶକ ମହମ୍ମଦ୍ ମହସିନ୍ ଜଣେ ସମ୍ଭାବନାମୟ ନିର୍ଦ୍ଦେଶକ ବୋଲି ହୃଦ୍‌ବୋଧ କରି ହେଉଛି । ନା, ଏହାର ଅର୍ଥ ନୁହେଁ ଯେ କୌଣସି ଉଚ୍ଚସ୍ତରୀୟ କଳାତ୍ମିକତା ଏଇ କଥାଚିତ୍ରଟିରେ ରହିଛି (ସେହିପରି କୌଣସି ଉଚ୍ଚାଭିଳାଷ ବରଂ ନିର୍ମାତା ବା ନିର୍ଦ୍ଦେଶକଙ୍କର ନାହିଁ ବୋଲି ମନେ ହେଉଛି); କିନ୍ତୁ ଫ୍ରର୍ମୁଲା ସିନେମା ଭିତରେ ମଧ୍ୟ ଅନେକାଂଶରେ ଯେ ସୃଜନଶୀଳତା ସମ୍ଭବ, ନିର୍ଦ୍ଦେଶକ ସେତକ ଫୁଟାଇବାର ବାହାଦୂରୀ ନେଇଛନ୍ତି ।

ସେଇ ଚିରାଚରିତ କାହାଣୀ  ପ୍ରେମ, ପ୍ରେମରେ ବାଧା, ତୃତୀୟ ପାର୍ଟିମାନଙ୍କ ସହ ସଂଘର୍ଷ ଓ ଶେଷରେ ପରିସମାପ୍ତି; ସେଇ ବହୁଳ ବ୍ୟବହୃତ ଉପାଦନା: ଗୀତ, ନୃତ୍ୟ, ରୋମାନ୍ସ, ଫାଇଟିଂ, ବିଚ୍ୟୁତ ହୋଇଥିବା ଭାଇଯୁଗଳର ପୁର୍ନମିଳନ । ଏସବୁ ସତ୍ତ୍ୱେ ଛବିଟି ଦର୍ଶକଙ୍କର ଆଗ୍ରହ ବଜାୟ ରଖିବାରେ ସମର୍ଥ ହେଉଛି ।

ପ୍ରକୃତିର ସୁଷମାମୟ କୋଳରେ ଥିବା ଗୋଟିଏ ଗାଁରେ ପ୍ରତିପାଳିତ ନାୟକ ନାୟିକା ଶିଶୁ ବୟସରୁ ହିଁ ପ୍ରେମ-ସମ୍ୱଳିତ ଦ୍ୱୈତ ଗୀତ ଗାଉଛନ୍ତି । ନାୟିକାର ବିଧବା ମା (ଅନୀତା ଦାସ) ଓ ନାୟକର ବିପତ୍ନୀକ ବାପା (ଶରତ ପୂଜାରୀ) ଯେହେତୁ ପରିଣତ ବୟସରେ ବାଳକ-ବାଳିକାଦ୍ୱୟ ପତି-ପତ୍ନୀ ହେବେ ବୋଲି ସ୍ୱୀକୃତି ଦେଇ ସାରିଛନ୍ତି, ନାୟକର ବାପା କଣ୍ଟ୍ରାକ୍ଟରୀ କରିବା ପାଇଁ ବାଲିମେଳା ଚାଲିଗଲା ବେଳେ ଏଇ ଚପଳମତି

ଦୁଇ ଶିଶୁଙ୍କ ମଧ୍ୟରେ ନିଶ୍ଚିତ ବିଚ୍ଛେଦ ଆସୁଛି । ଏମାନେ କିନ୍ତୁ ପ୍ରତାଳାପ ବଜାୟ ରଖୁଛନ୍ତି । ବହୁ ବର୍ଷ ପରେ ପୁଅର ବାପା ବେଶ୍ କିଛି ସମ୍ପତ୍ତିର ମାଲିକ ହୋଇ ଗାଁକୁ ଫେରୁଛନ୍ତି । ଏତେବେଳକୁ ପୁଅ (ଉତ୍ତମ ମହାନ୍ତି)ଙ୍କ କଲେଜ ପଢ଼ା ସରିଛି; ଝିଅ ରୂପସୀ ଯୁବତୀ । ଏମାନଙ୍କ ବିବାହରେ ଆଉ କୌଣସି ବାଧା ନ ଥାନ୍ତା; କିନ୍ତୁ ଏତେବେଳକୁ ଗାଁର ପୂର୍ବତନ ପତ୍ନୀ-ହରା ଜମିଦାର ତାଙ୍କର ପାଳିତ ପୁଅ (ଅଜିତ ଦାସ)ଙ୍କ ସହ ସହରରୁ ଫେରିଆସି ଏକ ବିରାଟ ଶିଳ୍ପ କାରଖାନା ବସାଇବାର ଆୟୋଜନରେ ଥାଆନ୍ତି । ଏକଦା ତାଙ୍କର ନୌକର ଥିବା ଶରତ ପୂଜାରୀଙ୍କୁ ସେ କାରଖାନା ବିଲ୍ଡ଼ିଂ ଗଢ଼ିବା ଦାୟିତ୍ୱ ଦିଅନ୍ତି ଓ କିଛି ଦିନ ପରେ ଦିଅନ୍ତି ଏକ ବିବାହ ପ୍ରସ୍ତାବ : ତାଙ୍କ ସହ ଗାଁକୁ ଆସିଥିବା ଏକ ମାତ୍ର କନ୍ୟା ରୂପସୀ ତରୁଣୀ (ଦୀପା ସାହୁ)ଙ୍କ ସହ ଉତ୍ତମଙ୍କ ବିବାହ ହୋଇପାରିଲେ ସେ ଖୁବ୍ ଖୁସି ହୁଅନ୍ତେ । ଏକ ଅଭିଜାତ ପରିବାର ସହ ସଂଯୁକ୍ତ ହେବାର ଲାଳସା ଶରତଙ୍କୁ ଗ୍ରାସ କରି ବସେ ଓ ଅନୀତାଙ୍କ ପରିବାର ପାଖରେ କରିଥିବା ମହାପ୍ରସାଦ ଶପଥ ଦ୍ରୋହ କରିବାକୁ ସେ ପଛାନ୍ତିନି । ଏଥର ନାୟକ ନାୟିକା ଜୀବନରେ ଯେଉଁ ଝଡ଼ର ସୂତ୍ରପାତ ହୁଏ ସେ ଝଡ଼ ଗୋଟିଏ ଫାଇଟିଂ, ଗୋଟିଏ ଦୁର୍ଘଟଣା, ଗୋଟିଏ ଗୁପ୍ତ କଥା ଉନ୍ମୋଚନ ପ୍ରଭୃତି ଦେଇ ପ୍ରଶମିତ ହୁଏ ।

କାହାଣୀର ନୂତନତ୍ୱ ନୁହେଁ, ଚିତ୍ରାୟନ ବା 'ଟ୍ରିଟ୍‌ମେଣ୍ଟ'ର ନୂତନତ୍ୱ 'ଫୁଲ ଚନ୍ଦନ'କୁ ବହୁଳାଂଶରେ ଆବେଦନଧର୍ମୀ କରିଛି । ଗୋଟିଏ ଗଛ ଗଣ୍ଡିରେ ଶିଶୁ ନାୟକ-ନାୟିକାଙ୍କ ନାମ ଖୋଦେଇ, ଗୋଟିଏ ମନ୍ଦିରରେ ଶପଥ, ସାମାନ୍ୟ ଏକ କଣ୍ଢେଇ ଉପହାର ପ୍ରଭୃତି ଛୋଟ ଛୋଟ ଘଟଣା ଦ୍ୱାରା ନିର୍ଦ୍ଦେଶକ ଏ ଚିତ୍ରଟିର ସଜୀବତା ବଢ଼ାଇଛନ୍ତି । ଏକ ସଫଳ ଚିତ୍ର-ନାଟ୍ୟ ସହ ଶ୍ରୀ ମହସିନ୍ ଲେଖିଥିବା ସଂଳାପ ମଧ୍ୟ ବହୁଳ ଭାବେ ମର୍ମସ୍ପର୍ଶୀ ହୋଇଛି । ପ୍ରାୟ ସମଗ୍ର କାହାଣୀଟି ପ୍ରାକୃତିକ ପରିବେଷ୍ଟନୀ ମଧ୍ୟରେ ଘଟୁଥିବା ଦର୍ଶାଯାଇଛି ଓ ନିର୍ଦ୍ଦେଶକଙ୍କ କ୍ୟାମେରା ପ୍ରକୃତିର ଶୋଭା-ଶ୍ରୀ ଯଥେଷ୍ଟ ସଫଳତା ସହ ଆମୃଷ୍ଟ କରିପାରିଛି । ନିର୍ମଳ ଓ ମନ-ପ୍ରୀତିକର ଫୋଟଗ୍ରାଫୀ ଏ ଚିତ୍ରଟିର ଏକ ବଡ଼ ବିଶେଷତ୍ୱ ।

ଶରତ ପୂଜାରୀ, ଅନୀତା, ଦୀପା, ଉତ୍ତମ, ଅଜିତ ପ୍ରଭୃତି ପ୍ରତି ଶିଳ୍ପୀ ଆଶାନୁରୂପ ଅଭିନୟ କରିଛନ୍ତି । ଚିତ୍ରଟିର ହାସ୍ୟରସ ପ୍ରାୟ ସଂଳାପ- ନିର୍ଭର ହୋଇଛି; କିନ୍ତୁ ରାଧା ପଣ୍ଡା ଗୋଟିଏ ଭୂମିକାରେ ହାସ୍ୟରସର ଅଧିକା ଉପାଦାନ ଯୋଗାଇଛନ୍ତି । ତେବେ ସବୁଠୁ ଅଧିକ ପ୍ରଶଂସା ଯୋଗ୍ୟ ଅଭିନୟ କରିଛନ୍ତି ନାୟିକା ଅପରାଜିତା । ଓଡ଼ିଆ ସିନେମା ପାଇଁ ସେ ଯେ ବିପୁଳ ସମ୍ଭାବନାମୟ ନାୟିକା, ଏଥିରେ ସନ୍ଦେହ ନାହିଁ ।

ଛବିଟିରେ ଏକାଧିକ ଅବାସ୍ତବ ଉପାଦାନ ରହିଛି; କିନ୍ତୁ ଶ୍ରୀ ମହସିନ୍‌ଙ୍କ ଚତୁରତାପୂର୍ଣ୍ଣ ନିର୍ଦ୍ଦେଶନା ଯୋଗୁଁ ଛବିଟି କୌଣସି ସ୍ଥାନରେ ଅଂଶରେ ଆବେଦନ ହରାଇନି । ମନୋରଞ୍ଜନ ଜଗତକୁ ଏମିତି ଚିତ୍ରର ଆଗମନ, ଫର୍ମୂଲା - ଧର୍ମୀ ଚିତ୍ର (ଯଥା, 'କିଏ ଜିତେ କିଏ ହାରେ', 'ସମୟ ବଡ଼ ବଳବାନ') ଅପେକ୍ଷା ଯଥେଷ୍ଟ ସ୍ୱାଗତ-ଯୋଗ୍ୟ ।

❑ -'ସୁବିଚାର', ନଭେମ୍ବର, ୧୯୮୨

# ମାୟା ମିରିଗ :
# ସରଳ କାହାଣୀର ସଫଳ ଚିତ୍ରାୟନ

ମାଣିଷର ଅନ୍ୟ ମଣିଷ ସହ, ବିଶେଷତଃ ନିଜ ରକ୍ତ ସମ୍ପର୍କୀୟଙ୍କ ସହ, ସୁଖ ଓ ଶାନ୍ତିର ପରିକଳ୍ପନା ଏ ଯୁଗରେ ଆକାଶ କୁସୁମପରି କିପରି ଉଭେଇ ଯାଏ, ତାହାହିଁ ଶ୍ରୀ ନିରଦ ମହାପାତ୍ର ନିର୍ଦ୍ଦେଶିତ 'ମାୟା ମିରିଗ'ର ବିଷୟବସ୍ତୁ । ବାପ ମା' ଯେତେ ସ୍ୱାର୍ଥତ୍ୟାଗ କରି ପୁଅଙ୍କୁ ଯୋଗ୍ୟ କଲେ ବି ପୁତ୍ରଗଣ ଭାର୍ଯ୍ୟା ସନ୍ତାନଙ୍କୁ ଧରି ଉଡ଼ିଯାଇ, ନିଜ ନିଜର ସୁଖ-ନୀଡ଼ ରଚନା କରନ୍ତି, ବୃଦ୍ଧ ବାପା-ମା'ଙ୍କ ସୁଖସ୍ୱାଚ୍ଛନ୍ଦ୍ୟକୁ ଖାତିର ନ କରି । ଏହା ହେଲା ଏ ସୁନ୍ଦର ସିନେମାଟିର ବକ୍ତବ୍ୟ ।

ଦୃଶ୍ୟ ମାଧ୍ୟମର ବିଶେଷତ୍ୱକୁ ଯଥାସମ୍ଭବ ଉପଯୋଗ କରିଥିବା ଏଇ ସିନେମାଟିର କାହାଣୀଟି ଯେତିକି ସରଳ, ପରିବେଷଣ ରୀତି ବି ସେତିକି ମାର୍ମିକ । ସ୍କୁଲ ହେଡ଼ମାଷ୍ଟର ରାଜକିଶୋରଙ୍କର ଚାରୋଟି ପୁଅ ଓ ସବା ସାନ ଝିଅଟିଏ । ବଡ଼ପୁଅ କଲେଜ ଶିକ୍ଷକ ଓ ବିବାହିତ । ତା' ତଳପୁଅ ଦିଲ୍ଲୀରେ ପାଠପଢ଼ି, ଆଇ.ଏ.ଏସ୍. ପାଇବା ସ୍ୱପ୍ନରେ ନିମଜ୍ଜିତ । ତୃତୀୟ ପୁଅ ଏମ୍.ଏ. ପରୀକ୍ଷା ଦେଇଛି । ସେ ସଙ୍ଗୀତ ଭଲପାଏ, ରୋମାଣ୍ଟିକ୍ ସ୍ୱଭାବର । ଚତୁର୍ଥପୁଅ କଲେଜରେ ପଢ଼େ, ଖେଳ କୁଦରେ ଖୁବ୍ ଧୁରନ୍ଧର । ଝିଅ ସ୍କୁଲ ଛାତ୍ରୀ । ହେଡ୍‌ମାଷ୍ଟରଙ୍କ ପତ୍ନୀ ଓ ବୃଦ୍ଧା ମା' ବି ଅଛନ୍ତି ।

ଏ ଏକ ଅବହାଓ୍ୱା-କୈନ୍ଦ୍ରିକ ସିନେମା; ଏଣୁ ଏଥିରେ ଘଟଣା ବିଶେଷ ନାହିଁ । ଘଟଣା ଭିତରେ, ବଡ଼ପୁଅର ଝିଅଟିଏ ହେଉଛି, ଯେଉଁଥିରେ ଘରର ସବୁଠୁ ବଡ଼ ବୁଢ଼ୀଟି ହିଁ ସର୍ବାଧିକ ଖୁସି ହେଉଛି । ଆ.ଏ.ଏସ୍ ସ୍ୱପ୍ନରେ ମସ୍‌ଗୁଲ ଦ୍ୱିତୀୟ ପୁଅ, ପ୍ରକୃତରେ ଆଇ.ଏ.ଏସ୍. ପାଉଛି ଓ ଖୁବ୍ ଶୀଘ୍ର ହିଁ ତାର କାର, ଫ୍ରିଜ ପ୍ରଭୃତି ଆଣୁଥିବା କନ୍ୟା ସହ ବିବାହ ସମ୍ପନ୍ନ ହେଉଛି । ତୃତୀୟ ପୁଅ ଏମ୍.ଏ.ରେ ଦ୍ୱିତୀୟ ଶ୍ରେଣୀ ପାଇ ବେକାର ହେଉଛି । ଚତୁର୍ଥ ପୁଅ ବି.ଏ. ଅନର୍ସରେ ପ୍ରଥମଶ୍ରେଣୀ ପାଇ ଦିଲ୍ଲୀ ଯାଇ ଅଧିକା ପାଠ ପଢ଼ିବାକୁ ଚାହୁଁଛି । ତାର ମାସିକ ଖର୍ଚ୍ଚ ୩୦୦ଟଙ୍କା ଦେବାକୁ ଆଇ.ଏ.ଏସ୍. ପୁଅ କଷ୍ଟରେ ରାଜି ହେଉଛି ।

ଆଇ.ଏ.ଏସ୍. ବାବୁଙ୍କ ପତ୍ନୀ ନିଜେ ଆଣିଥିବା ସମସ୍ତ ଆସବାବ ନେଇ ନିଜ ପତି ସହ ଚାକିରି ଜାଗାକୁ ଚାଲିଯିବାକୁ ଯୋଜନା କରେ । ଅଧାପକ ପୁଅ ଅନ୍ତତଃ ତିନିବର୍ଷ ପାଇଁ ପତ୍ନୀ କନ୍ୟା ନେଇ ଭୁବନେଶ୍ୱରରେ କଟାଇବା ବ୍ୟବସ୍ଥା କରେ । ବର୍ତ୍ତମାନ ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ଅନୁଭବ କରନ୍ତି: ପୁଅ, ବୋହୂଙ୍କ ଗହଣରେ ସେ ଶେଷଜୀବନ କଟାଇବାର ସୁଖ ସ୍ୱପ୍ନ ମାୟାମୃଗ ପରି ଅପସରି ଯାଉଛି ...

କହିବା ଅନାବଶ୍ୟକ, କାହାଣୀଟିର ବିଶେଷତ୍ୱ ନୁହେଁ, ଚିତ୍ରାୟନର ବିଶେଷତ୍ୱ ଯୋଗୁଁ 'ମାୟା ମିରିଗ' ଏକ ସୁନ୍ଦର ଓ ହୃଦୟସ୍ପର୍ଶୀ ସିନେମା ହେଇଛି । ଅବସ୍ତରପ୍ରାପ୍ତ ପ୍ରଧାନ ଶିକ୍ଷକଙ୍କର ବେଦନାପ୍ଲୁତ ହୃଦୟର ଭାବ ଗୋଟିଏ ଅତି ସାଧାରଣ ଦୃଶ୍ୟରେ ଦର୍ଶକଙ୍କୁ ପରିବେଷିତ ହୋଇଛି । ଅଧାପକ ପୁଅର ଛୋଟ ଝିଅଟିକୁ କୋଳରେ ଧରି ଶେଷ ଦୃଶ୍ୟରେ ସେ କେବଳ କହୁଛନ୍ତି, ''ତୁ ଚାଲିଯିବୁ ମା' ? ଆମ ବୁଢ଼ା ବୁଢ଼ୀ ଦି'ଜଣଙ୍କୁ ଛାଡ଼ି ଚାଲିଯିବୁ ?'' ସରଳ, ସାଧାରଣ ଉପକରଣ; କିନ୍ତୁ ଭାବଦ୍ୟୋତନାରେ ଅସାମାନ୍ୟ ହୋଇଛି ।

ସିନେମା ଯେ ଦୃଶ୍ୟପ୍ରଧାନ, ସଂଳାପ ଓ ଶବ୍ଦ ସେଠାରେ ଅପ୍ରଧାନ, ଏହା 'ମାୟା ମିରିଗ' ରୂପାୟନରୁ ସ୍ପଷ୍ଟ । ସିନେମାରେ ସଂଳାପ କମ୍ ଓ ଯଥାସମ୍ଭବ ସଂକ୍ଷିପ୍ତ । ଚିତ୍ରନାଟ୍ୟ ମଧ ସୁଲିଖିତ, ଲମ୍ବା ଦୃଶ୍ୟ ଆଦୌ ନାହିଁ; ଦୃଶ୍ୟଗୁଡ଼ିକ ବିଷୟବସ୍ତୁର ଗତିଶୀଳତା ସୂଚାଇବା ପାଇଁ ଯଥାଯଥ । ଦୃଶ୍ୟ ଗ୍ରହଣରେ କ୍ୟାମେରା ସଦାଗତିଶୀଳ କହିଲେ ଚଳେ; ଏଣୁ ଦୃଶ୍ୟଗୁଡ଼ିକ ନେତ୍ର ପ୍ରୀତିକର ହୋଇଛି । ସିନେମାଟିର ଶତକଡ଼ା ୮୦ ଅଂଶ ଗୋଟିଏ ଘରେ ଆବଦ୍ଧ ଥିଲେ ବି ଆବେଦନ ହରାଉନି । ପୃଷ୍ଠପଟରେ କିଛି କିଛି ଗୀତ ବା ଗୀତର ଭଗ୍ନାଂଶ ଦିଆଯାଇଛି । କିନ୍ତୁ ମନୋରଞ୍ଜନର ମୂଲ୍ୟ ବଢ଼ାଇବା ଏସବୁର ପ୍ରଧାନ ଲକ୍ଷ୍ୟ ନୁହେଁ, ଆବଶ୍ୟକ ଅବହାୱା ତିଆରି ହିଁ ଲକ୍ଷ୍ୟ ।

ରୂପାୟନ ଦୃଷ୍ଟିରୁ ଯେମିତି ଅଭିନୟ ଦୃଷ୍ଟିରୁ ମଧ ସେମିତି ବାସ୍ତବତା ଏ ଛବିର ବିଶେଷତ୍ୱ । ଚିତ୍ରଟିର ପ୍ରଧାନ ଚରିତ୍ର ନିଃସନ୍ଦେହରେ ଚାରିପୁଅଙ୍କ ଜନକ ରାଜ କିଶୋର ବାବୁ, ଘଟଣା ପ୍ରବାହର ଶେଷ ଆଘାତ ଯାହାଙ୍କ ହୃଦୟକୁ ବିମଥିତ କରିଛି । ଏହି ଭୂମିକାଟିରେ ନବାଗତ ଶ୍ରୀ ବଂଶୀଧର ଶତପଥୀଙ୍କ ଅଭିନୟ ନିଖୁଣ ହୋଇଛି । ଅଧିକ ମର୍ମସ୍ପର୍ଶୀ ହୋଇଛି ରାଜକିଶୋରଙ୍କ ମା' ଭୂମିକାରେ ଦନ୍ତହୀନା କିଶୋରୀ ଦେବୀଙ୍କ ଅଭିନୟ । ବୟସାଧିକ ଅଥଚ ସମ୍ପୂର୍ଣ୍ଣ ନବାଗତମାନଙ୍କ ଠାରୁ ଏମିତି ଅଭିନୟ କୁଶଳତା ହାସଲ କରିବା ନିର୍ଦ୍ଦେଶକଙ୍କର ଏକ ବଡ଼ କୃତିତ୍ୱ । ବଡ଼ ବୋହୂ ଭୂମିକାରେ ମନସ୍ୱିନୀଙ୍କ ଅଭିନୟ ମଧ ସ୍ୱାଭାବିକତା ଗୁଣରେ ସମୃଦ୍ଧ । ମା' ଭୂମିକାରେ ମଣିମାଳା ଓ ଚାରି ଭାଇ ଭୂମିକାରେ ଯୁବକମାନେ ଉପଯୁକ୍ତ ଅଭିନୟ କରିଛନ୍ତି । ବାସ୍ତବତାଧର୍ମୀ ଅଭିନୟ ଦୃଷ୍ଟିରୁ ବି 'ମାୟା ମିରିଗ' ଓଡ଼ିଆ ଚଳଚ୍ଚିତ୍ର କ୍ଷେତ୍ରରେ ଏକ ମାଇଲଖୁଣ୍ଟ ହୋଇ ରହିବ ।

# ଜାତୀୟ ପୁରସ୍କାରପ୍ରାପ୍ତ 'କ୍ଲାନ୍ତ ଅପରାହ୍ନ'



''କ୍ଲାନ୍ତ ଅପରାହ୍ନ''ରେ ମଧୁସୂଦନ କର

ଜୀବନର ଅପରାହ୍ନ କ୍ଲାନ୍ତିକର ହୋଇପାରେ (ବିଶେଷତଃ ଚାକିରିଆମାନେ ଯଦି ଅବସର ନେଇଥାନ୍ତି); ଏବଂ ଏ ସମୟଟା ଅଧିକ ବିରସ ଓ ବିରକ୍ତିକର ହୁଏ ଯଦି ବିବାହ ଯୋଗ୍ୟା ଝିଅର ବିବାହ ସମସ୍ୟା ମୁଣ୍ଡ ଉପରେ ବୋଝ ହୋଇଥାଏ । ଗତ ଦୁଇ ତାରିଖ (୧୯୮୬ ମାର୍ଚ୍ଚର ପ୍ରଥମ ରବିବାର) ଦୂରଦର୍ଶନ ଜାତୀୟ କାର୍ଯ୍ୟକ୍ରମରେ ପ୍ରସାରିତ ଶ୍ରୀ ମନମୋହନ ମହାପାତ୍ରଙ୍କ 'କ୍ଲାନ୍ତ ଅପରାହ୍ନ' ଏପରି କେତେକ ବିରସ ଅନୁଭୂତିକୁ କେନ୍ଦ୍ର କରି ଗଢ଼ି ଉଠିଛି ।

ଗାଁ ଝିଅ ନିରୁ ତାଙ୍କ ଗାଆଁ ସ୍କୁଲରେ ହିଁ ଶିକ୍ଷୟିତ୍ରୀ । ତାର ଦୁଇଜଣ ସହକର୍ମିଣୀ ସନ୍ଧ୍ୟା ଓ ବୀଣା –ଅନ୍ୟ ଗାଁରୁ ଆସିଛନ୍ତି; କିନ୍ତୁ ଘର ଭଡ଼ା ଦେଇ ସେଇ ଗାଁରେ ଏକତ୍ର ରହନ୍ତି । ତିନି ବାନ୍ଧବୀଙ୍କ ଭିତରେ ବେଳେ ବେଳେ ନିରୁର ବାହାଘର କଥା ପଡ଼େ ।

ନିରୁର ବାହାଘର ନେଇ ତାଙ୍କ ବାପା ଆଦିକନ୍ଦ, ବୋଉ, ଭାଇ ଏପରିକି ୮୦ ବର୍ଷୀୟା ଗୋସେଇଁ ମା ଖୁବ୍ ବ୍ୟସ୍ତ ! ବିବାହ ପ୍ରସ୍ତାବ ବାରମ୍ବାର ଭାଙ୍ଗୁଥିବାର କାରଣ ଯୌତୁକ ।

ଆଦିକନ୍ଦଙ୍କ ବାଲ୍ୟବନ୍ଧୁ ଯଦୁ ତାଙ୍କର ପରିଚିତ ପରିବାରର ଇଞ୍ଜିନିଅର ପୁଅ ସହ ବିବାହ ପ୍ରସ୍ତାବ ଆଣନ୍ତି । ଏଥିରେ ଆଦିକନ୍ଦ ବାବୁ ଖୁବ୍ ଆଶାନ୍ୱିତ ହୋଇ ଉଠନ୍ତି ଏବଂ ଯଥାରୀତି ଝିଅ ଦେଖା ପର୍ବ ବି ହୁଏ । ପ୍ରସ୍ତାବିତ ବର ଓ ତାଙ୍କ ଲୋକେ ସୁବେଶା ନିରୁକୁ ଦେଖିସାରି ଗଲା ବେଳେ ଯୌତୁକ ରୂପେ ସ୍କୁଟରଟିଏ ଆଶା କରିବା କଥା କହନ୍ତି । କିନ୍ତୁ ପରେ ପରେ ଆଦିକନ୍ଦଙ୍କ ଝିଅର ହାତକୁ ଦି'ହାତ କରିବା ଆଶା ଯେତିକି ଯେତିକି ବଢ଼େ, ବରବାଲାଙ୍କ ଯୌତୁକ ତାଲିକା ବି ସେତିକି ସେତିକି ବଢ଼େ । ୨୦ ହଜାର ନଗଦ ଟଙ୍କା ବି ତାଲିକାଭୁକ୍ତ ହୋଇଥିବା ଜାଣିବା ପରେ ନିରୁର ବାପା ଓ ଭାଇ ନିଜ ନିଜର ସଞ୍ଚିତ ଅର୍ଥ, ଏପରିକି ଜମି ବନ୍ଧକ ଦେଇ ଟଙ୍କା

କରଜ କରି ବିବାହ ଯଜ୍ଞରେ ଆହୂତି ଦେବାକୁ ପ୍ରସ୍ତୁତ ହୁଅନ୍ତି । ଶେଷରେ ଖରବ ଆସେ, ବରପକ୍ଷ ଅନ୍ୟତ୍ର ବିବାହ ଆୟୋଜନ କରୁଛନ୍ତି ।

ଏ ଗଲା ନିରୁର ବିରସ ବିବାହ ନାଟକର ଆଦି ଅଙ୍କ । ସହ ଶିକ୍ଷୟିତ୍ରୀ ଚାରୁ-ଦର୍ଶନା ସନ୍ଧ୍ୟାର ସମସ୍ୟା ଭିନ୍ନ । ସେ ତା' ହୃଦୟଟିକୁ ଏକ ତରୁଣକୁ ଅର୍ପଣ କରି ଦେଇଛି ଓ ତରୁଣ ବି ତାକୁ ବିବାହ କରିବାକୁ ଖୁବ୍ ଆଗ୍ରହୀ । କିନ୍ତୁ ସନ୍ଧ୍ୟାର ବାପା, ଭାଇ ତା'ର ଦରମା ଉପରେ ନିର୍ଭରଶୀଳ; ଏଣୁ ଭାଇ ପାରି ନ ଉଠିଲା ଯାଏଁ ସେ ଚାକିରି ଛାଡ଼ିବାକୁ ପ୍ରସ୍ତୁତ ନୁହେଁ ଓ ତାହା ହିଁ ତାର ବିବାହ ପଥରେ ପ୍ରଧାନ ବାଧା । କିନ୍ତୁ ସନ୍ଧ୍ୟା ଜୀବନର ଅସଲ ସଂକଟ ଆରମ୍ଭ ହୁଏ ଯେତେବେଳେ ଗ୍ରାମ୍ୟ ସମାଜ ତାର ବ୍ୟକ୍ତିଗତ ଜୀବନାକାଶକୁ ପଙ୍ଗପାଳ ପରି ଛାୟାଛନ୍ନ କରିଦିଏ । ସନ୍ଧ୍ୟା ପାଇଁ ଉଦ୍ଦିଷ୍ଟ ପ୍ରେମ ପତ୍ରଟିଏ ଜଣେ କେହି ପାଇଯିବା ପରେ ଗାଁଟା ସାରା ବାଜିଉଠେ ଅପବାଦର ନାଗରା ! ତା' ପରେ ପରେ ସ୍କୁଲ ପରିଚାଳନା କମିଟି ପକ୍ଷରୁ ଜେରା ଓ ସୁସ୍ପଷ୍ଟ ଇଙ୍ଗିତ–ଚାକିରି ଛାଡ଼ି ଚାଲିଯିବା ହିଁ ତାର ଉଚିତ । ସନ୍ଧ୍ୟା ତା'ପରେ ଚାକିରି ଛାଡ଼େ ଓ ପେଡ଼ି ପୁଟୁଳା ବାନ୍ଧି ନିଜ ଗାଁ ଆଡ଼େ ଯାତ୍ରା କରେ ।

ଉଭୟ ଝିଅଙ୍କ ସମସ୍ୟା ଏକ । ତା'ହେଲା ଜୀବନସାଥୀ ନିରୂପଣର ସମସ୍ୟା । ତେବେ ନିରୁ ଓ ସନ୍ଧ୍ୟା ସମାଜ ଦ୍ୱାରା ଏକ ପ୍ରକାରେ ନିର୍ଯ୍ୟାତୀତା ନୁହଁନ୍ତି । ନିରୁ ଓ ତାର ପରିବାର ଏକ ଅସୁସ୍ଥ ସାମାଜିକ ବ୍ୟବସ୍ଥା ଦ୍ୱାରା ନିରାନନ୍ଦ ଅନୁଭୂତି ଦେଇ ଗତି କରିଛନ୍ତି; କିନ୍ତୁ ସନ୍ଧ୍ୟାର ବ୍ୟକ୍ତିଗତ ଜୀବନ ସମାଜର ଅହେତୁକ ଚାବୁକ ମାଡ଼ ଦ୍ୱାରା କ୍ଷତାକ୍ତ ହେଉଛି । ବ୍ୟକ୍ତି ଜୀବନକୁ କବଳିତ କରିନେବା ପାଇଁ ସମାଜ ଏଠାରେ କି ଅନ୍ୟାୟ ଭାବେ ବ୍ୟଗ୍ର, ତାହା ଫୁଟି ଉଠିଛି ଯେପରି ଫୁଟି ଉଠିଥିଲା ଏହି ନିର୍ଦ୍ଦେଶକଙ୍କ 'ନୀରବ ଝଡ଼' ସିନେମାରେ ।

ନିର୍ଦ୍ଦେଶକ ଉଲ୍ଲେଖଯୋଗ୍ୟ ସଫଳତା ସହ ଚିତ୍ରଟିକୁ ବାସ୍ତବଧର୍ମୀ କରିଛନ୍ତି । ଗାଆଁ ଓ ଅଦୂରରେ ଥିବା ରେଳ ଷ୍ଟେସନ ପ୍ରଭୃତି ସିନେମାଟିରେ ସଫଳତାର ସହ ରୂପାୟିତ ହୋଇଛି । ଜୀବନର ଅପରାହ୍ନ ଦେଇ ଗତି କରୁଥିବା ତିନୋଟି ଚରିତ୍ର - ଆଦିକନ୍ଦ, ଯଦୁ ଓ ସେମାନଙ୍କ ବନ୍ଧୁ ପକ୍ଷାଘାତଗ୍ରସ୍ତ ଶ୍ୟାମ –ଏ ଛବିରେ ଆତ୍ମ ପ୍ରକାଶ କରିଛନ୍ତି । ମନକୁ ମନ ତାସ୍ ଖେଳୁଥିବା ଶ୍ୟାମ ଓ ହଠାତ୍ ମୃତ୍ୟୁ ଲଭୁଥିବା ଯଦୁ, ସିନେମାଟିରେ କାରୁଣ୍ୟର ସ୍ୱର ଫୁଟାଇଛନ୍ତି । ତେବେ ନିର୍ଦ୍ଦେଶକ 'ନୀରବ ଝଡ଼'ରେ ଯେପରି ଦାଦନ କୁଲିଙ୍କ ସମସ୍ୟାକୁ ପ୍ରଧାନ ଉପଜୀବ୍ୟ କରିଛନ୍ତି, କ୍ଳାନ୍ତ ଅପରାହ୍ନରେ ସେହିପରି ଯୌତୁକ ସମସ୍ୟା ହିଁ ପ୍ରଧାନ ଉପଜୀବ୍ୟ । କିନ୍ତୁ ଉଭୟ ଚିତ୍ରରେ ସମାଜ କିପରି ବ୍ୟକ୍ତି ଜୀବନ ଉପରେ ଅଙ୍କୁଶ ଚଳାଏ, ତାହା ମଧ୍ୟ କାହାଣୀର ଗତିରୁ ସ୍ୱତଃ ଫୁଟି ଉଠିଛି । ମନୋମୁଗ୍ଧକର ଗ୍ରାମ୍ୟ ପ୍ରକୃତିର ଦୃଶ୍ୟାବଳୀ, ଏ ସିନେମାର ଏକ ଅଧିକା ବିଶେଷତ୍ୱ ।

ତେବେ ହାଇଦ୍ରାବାଦର ଫିଲ୍ମୋତ୍ସବରେ ଏକଦା ପ୍ରଦର୍ଶିତ ହୋଇଥିବା 'କ୍ଳାନ୍ତ ଅପରାହ୍ନ' ଟି.ଭି. ପରଦାରେ ସେତେଟା ଆକର୍ଷଣୀୟ ହେଲାନି । ପ୍ରଧାନ କାରଣ ଦୃଶ୍ୟ ଗ୍ରହଣରେ 'କ୍ଲୋଜ୍ ଅପ୍' ଅପେକ୍ଷା ଏଥିରେ 'ଲଙ୍ଗସଟ୍' ଓ 'ମିଡ଼ିଅମ୍ ସଟ୍'ର ସଂଖ୍ୟା ଯଥେଷ୍ଟ ଅଧିକ ଓ ଏପରି ଚିତ୍ର ଗ୍ରହଣ ଦୂରଦର୍ଶନ ପାଇଁ ଉପଯୁକ୍ତ ନୁହେଁ । ତେବେ ଏହି ସୁନିର୍ମିତ ସମାଜ-କୈନ୍ଦ୍ରିକ ଚଳଚ୍ଚିତ୍ରଟି ଓଡ଼ିଶାର ସିନେମା ହଲମାନଙ୍କରେ ଅନ୍ତତଃ ନୁନ୍ ସୋ'ରେ ଚାଲିଲେ, ସୁ-ଉଦ୍ଦେଶ୍ୟ ନେଇ ଚଳଚ୍ଚିତ୍ର ନିର୍ମାଣ କରୁଥିବା ପ୍ରଯୋଜକ ଓ ନିର୍ଦ୍ଦେଶକମାନେ ଉତ୍ସାହିତ ହୁଅନ୍ତେ ।

❑ –'ଦୈନିକ ଆଶା', ୧୧.୩.୧୯୮୬

# ରୂପେଲି ପରଦାରେ 'ଜୟଦେବ'

ମହାକବି ଜୟଦେବଙ୍କ **ଗୀତ ଗୋବିନ୍ଦ** ବିଗଶ୍ୱ ପାଠକଙ୍କର ପ୍ରୀୟ । କିନ୍ତୁ ସେହି କବିଙ୍କ ଉପରେ ଆଧାରିତ ରଙ୍ଗୀନ ଓଡ଼ିଆ ଚଳଚ୍ଚିତ୍ର 'ଜୟଦେବ' ବିଦଗ୍ଧ ସିନେମା ଦର୍ଶକଙ୍କ ପାଇଁ ନୁହେଁ । ସତ୍ୟାସତ୍ୟ ପ୍ରତି ଗୁରୁତ୍ୱ ନ ଦେଇ କିଛି ଚମକ, କିଛି ମନୋରଞ୍ଜନ ପ୍ରଭୃତିକୁ ଭଲ ପାଉଥିବା ସାଧାରଣ ଦର୍ଶକଙ୍କ ପାଇଁ ଏହା ଅଭିପ୍ରେତ ।

ଦ୍ୱାଦଶ ଶତାବ୍ଦୀର ଓଡ଼ିଆ କବି ଜୟଦେବଙ୍କ କଳା ମାନସ ଓଡ଼ିଶୀ ସାଂସ୍କୃତିକ ପ୍ରବାହର ଏକାଧିକ ସଲିଳ ଧାରା ଦ୍ୱାରା ସଂଜୀବିତ ଥିଲା : ଏ ଭୂଇଁରେ ଆଦୃତ ଶାସ୍ତ୍ରୀୟ ସଙ୍ଗୀତ, ଏ ମାଟି ଜନ୍ମ ଦେଇଥିବା ଶାସ୍ତ୍ରୀୟ ନୃତ୍ୟ, ଓଡ଼ିଶାରେ ବହୁଳ ଚର୍ଚ୍ଚିତ ସଂସ୍କୃତ କାବ୍ୟ ପରମ୍ପରା, ତତ୍କାଳୀନ ଓଡ଼ିଶାରେ ପରଲକ୍ଷିତ ଧର୍ମଚେତନା, ପୁରୀ ଓ ଭୁବନେଶ୍ୱର ମନ୍ଦିରମାନଙ୍କର ଆଦିରସାତ୍ମକ ଭାସ୍କର୍ଯ୍ୟ ଅନ୍ତରାଳରେ ଥିବା ବିଶେଷତ୍ୱ ପ୍ରଭୃତିର ପ୍ରଭାବ ଜୟଦେବଙ୍କ ସୃଷ୍ଟି ଚେତନାରେ ପରିଲକ୍ଷିତ । ଏବେ ଦେଖାଯାଉ ସିନେମାର ଜୟଦେବ କି ପ୍ରକାରେ ପରିବେଷିତ ହୋଇଛନ୍ତି ।

ଶ୍ୟାମଲ ମୁଖାର୍ଜୀ ନିର୍ଦ୍ଦେଶିତ 'ଜୟଦେବ'ର କାହାଣୀ କବିଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱରୁ ଆରମ୍ଭ ହୋଇଛି । ସିନେମାର ଜୟଦେବଙ୍କୁ ଜଣେ ବୃଦ୍ଧ ସଂସ୍କୃତ ଶିକ୍ଷକଙ୍କ କିଶୋର ପୁତ୍ର ରୂପେ ପରିବେଷଣ କରାଯାଇଛି । ଜୟଦେବ ତାଙ୍କ ଅନ୍ତରଙ୍ଗ ସାଥୀ ପରାଶର ସହ ପ୍ରାଚୀନଦୀ କୂଳେ କୂଳେ ପ୍ରାକୃତିକ ରୂପମାଧୁରୀ ଉପଭୋଗ କରି ଗୀତ ଗାଇ ସମୟ କାଟୁଛନ୍ତି । କଳାବତୀ ନାମ୍ନୀ ମାଳି କନ୍ୟା ତାଙ୍କ ଗୀତ ଶୁଣି ମୁଗ୍ଧ ହେଉଛି, ଜୟଦେବଙ୍କ ପାଖରୁ ଗୀତ ଶିଖୁଛି । କିନ୍ତୁ ପ୍ରାଚୀ ନଦୀରେ ଦିନେ ବନ୍ୟା ଆସୁଛି ଓ କଳାବତୀର ଘର ସହ କଳାବତୀ ନିଜେ କୁଆଡ଼େ ଉଭେଇ ଯାଉଛି । ଜୟଦେବଙ୍କ ପାଇଁ ଏ ଏକ ପ୍ରଚଣ୍ଡ ଧକ୍କା ବୋଲି ଦର୍ଶକଙ୍କ ମନରେ ଧାରଣା ଦିଆଯାଉଛି । ଜୟଦେବ ତରୁଣ ହେବା ପରେ ପ୍ରଥମେ ତାଙ୍କ ବାପା ଓ ପରେ ପରେ ତାଙ୍କ ସମ୍ପତ୍ତି ହରାଇ ପୁରୀ ଯାତ୍ରା କରୁଛନ୍ତି । ସେଠାରେ ମନ୍ଦିର ବେଢ଼ାରେ ସେ ଦେଖୁଛନ୍ତି ମାହାରୀ କଳାବତୀକୁ ନୃତ୍ୟଶିଳ୍ପୀ ବେଶରେ । ଜଗନ୍ନାଥଙ୍କ ସେବାୟତ କଳାବତୀ ଜୟଦେବଙ୍କୁ ତା'ଘରେ ରଖୁଛି ଓ ପୁରୁଣା ସ୍ମୃତି ଖୁବ୍ ଶୀଘ୍ର ଭାବରେ ପରିଣତ ହେଉଛି । କିନ୍ତୁ ନଈ ସୁଅରୁ ଆଣି କଳାବତୀକୁ ବଢ଼ାଇ ଦେବଦାସୀ କରିଥିବା ବୟସ୍କା ମାହାରୀ ଜୟଦେବଙ୍କୁ ତା'ଘରୁ ତଡ଼ି ଦେଉଛନ୍ତି । କବି ଏଥର ପୁରୀ ସମୁଦ୍ର କୂଳରେ ଗୋଟିଏ କୁଟୀର ନିର୍ମାଣ କରି ସେଥିରେ ଭକ୍ତିପୂତ କିନ୍ତୁ କାବ୍ୟ ସାଧନାମୟ ଜୀବନ କାଟୁଛନ୍ତି । ଦିନେ ସେଠାରେ ଦକ୍ଷିଣ ଓଡ଼ିଶାରୁ ଆସି ପହଞ୍ଚୁଛନ୍ତି ସପତ୍ନୀକ ଦେବଶର୍ମା, ଯୁବତୀ କନ୍ୟା ସେ ପଦ୍ମାବତୀଙ୍କ ସହ । ସେ ଜୟଦେବଙ୍କୁ ଜଣାଉଛନ୍ତି  ଜଗନ୍ନାଥଙ୍କ ସ୍ୱପ୍ନାଦେଶ ଯୋଗୁଁ ପଦ୍ମାବତୀଙ୍କୁ ଜୟଦେବଙ୍କ ହାତରେ ପତ୍ନୀ ରୂପେ ଅର୍ପଣ କରିବାକୁ ଆଣିଛନ୍ତି । ନିଃସ୍ୱ କବି ଜୟଦେବ ଏଥିରେ

ଅମଙ୍ଗ ହେଉଛନ୍ତି, କିନ୍ତୁ ପଦ୍ମାବତୀଙ୍କ ବାବା ମାଆ ତାଙ୍କୁ ସେଠାରେ ଛାଡ଼ି ଚାଲି ଯାଉଛନ୍ତି । ପରେ ପଦ୍ମାବତୀ ଓ ଜୟଦେବଙ୍କ ମଧ୍ୟରେ ଗୋଟିଏ ବିରାଟ ବୈବାହିକ ପ୍ରେମ ଗଢ଼ି ଉଠୁଛି । ପଦ୍ମାବତୀଙ୍କ ପ୍ରେରଣାରେ ସେ **ଗୀତ ଗୋବିନ୍ଦ** ଲେଖୁଛନ୍ତି, ଯେଉଁଥିରେ ରାଧାକୃଷ୍ଣଙ୍କ ମଧ୍ୟରେ ଶୃଙ୍ଗାର ରସାତ୍ମକ ପ୍ରେମର ସଜୀବ ସୁନ୍ଦର ଚିତ୍ର ଫୁଟି ଉଠୁଛି । କିନ୍ତୁ ଜୟଦେବଙ୍କ ଗୀତ ଓ କବିତାର ସଫଳତା ତାଙ୍କ ପାଇଁ ବହୁ କଷ୍ଟର ଅଧ୍ୟାୟ ଆଣିଛି ଯଦିଓ ଶେଷରେ ସେ ରାଜକବି ପଦରେ ଭୂଷିତ ହୋଇଛନ୍ତି ।

ଚଳଚ୍ଚିତ୍ରଟିକୁ ବ୍ୟବସାୟିକ କରିବାକୁ ଓ ତା'ର ଦୈର୍ଘ୍ୟ ବଢ଼ାଇବାକୁ ଏଥିରେ ବହୁ ଅବାଞ୍ଛିତ ଉପାଦାନ ରଖାଯାଇଛି, ଏପରିକି କେତେକ ସ୍ଥାନରେ ଐତିହାସିକ ସତ୍ୟକୁ ଜଳାଞ୍ଜଳି ଦିଆଯାଇଛି । ଆରମ୍ଭରୁ ହିଁ କୁହାଯାଇଛି ଯେ ଜୟଦେବ ଛଅଶହବର୍ଷ ତଳର କବି ଯଦିଓ ତାଙ୍କ ପରେ ଆଠଶହ ବର୍ଷ ଅତିକ୍ରାନ୍ତ ହେଲାଣି । ଜୟଦେବଙ୍କ ସମସାମୟିକ ଗଜପତି ଶ୍ରୀମନ୍ଦିର ବେଢ଼ାରେ **ଗୀତ ଗୋବିନ୍ଦ** ଗାନ ବାରଣ କରିଥିଲେ ଓ ଜୟଦେବଙ୍କୁ ନାନା ନିର୍ଯ୍ୟାତନା ଦେଇଥିଲେ ବୋଲି ସିନେମାରେ ଦର୍ଶାଯାଇଛି, ଯାହା ଐତିହାସିକ ଦୃଷ୍ଟିକୋଣରୁ ସତ୍ୟ ନୁହେଁ । (ଜୟଦେବ ଚଳଚ୍ଚିତ୍ରର ଏହି ଦୃଷ୍ଟି କୋଣରୁ ଆଲୋଚନା ପାଇଁ ଗୋଟିଏ ସ୍ୱତନ୍ତ୍ର ପ୍ରବନ୍ଧ ଆବଶ୍ୟକ ।) ଶସ୍ତା ସିନେମା କାହାଣୀରେ ଅନ୍ତତଃ ଜଣେ ଖଳ ଚରିତ୍ର ଗୋଟିଏ ବଳତ୍କାର ଦୃଶ୍ୟ ରହିବା ଜରୁରୀ ! ସେହି ଆବଶ୍ୟକତା ପୂରଣ ପାଇଁ ନେତ୍ରାନନ୍ଦଙ୍କୁ ଅଣାଯାଇଛି ।

ତେବେ ସଙ୍ଗୀତକାର ବାଳକୃଷ୍ଣ ଦାସ ଏ ସିନେମା ପାଇଁ କେତୋଟି ଶ୍ରୁତିମଧୁର ଗୀତ ଦେଇଛନ୍ତି । ଗୋଟିଏ ଦୁଇଟି ଓଡ଼ିଆ ଗୀତ ଓ ଅନେକ ସଂସ୍କୃତ ଗୀତରେ 'ଜୟଦେବ' ମୁଖର । ନୃତ୍ୟଗୁରୁ କେଳୁ ଚରଣ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ଆମର କିଛି ଶାସ୍ତ୍ରୀୟ ନୃତ୍ୟ ବି ଏଥିରେ ଚିତ୍ରାୟିତ ହୋଇଛି ଯଦିଓ ସେ ଗୁଡ଼ିକ ଯଥେଷ୍ଟ ପ୍ରାଣୋଚ୍ଛଳ ହୋଇଥିବା ଏ ସମୀକ୍ଷକର ମନେ ହେଲାନି ।

ଅଭିନୟ ଦୃଷ୍ଟିରୁ ଅଧିକାଂଶ କଳାକାର ଏଥିରେ ଭଲ କରିଛନ୍ତି । ଜୟଦେବ ଭୂମିକାରେ ଉତ୍ତମ ମହାନ୍ତି ଓ କଳାବତୀ ଭୂମିକାରେ ଜୟା ସଜୀବ ଓ ଭାବୋଦ୍ଦୀପକ ଅଭିନୟ କରିଛନ୍ତି । ନବାଗତା ଶର୍ମିଳା ଜଣେ ସୁଶ୍ରୀ ଓ ସତେଜ ତରୁଣୀ ଓ ଅଧିକାଂଶ ଦୃଶ୍ୟରେ ତାଙ୍କ ମୁଖ ଅଭିବ୍ୟକ୍ତି ଉପଯୁକ୍ତ ହୋଇଛି; କିନ୍ତୁ ଓଡ଼ିଆ ପଲ୍ଲୀ ଲଳନାର ଭଙ୍ଗୀ ପ୍ରକାଶ କଲାବେଳେ କୃତ୍ରିମ ମନେ ହେଉଛନ୍ତି । କଲିକତାର ଓଡ଼ିଶୀ ନୃତ୍ୟ ଶିକ୍ଷୀ ଶର୍ମିଳାଙ୍କୁ କେବଳ ଶାଢ଼ୀ ପରିହିତା କରି କେତୋଟି ନୃତ୍ୟ ଦିଆଯାଇଥିବାରୁ ତାଙ୍କ ନୃତ୍ୟକଳା ଯଥାଯଥ ଫୁଟି ପାରିନି । ପରାଶର ଓ ତାଙ୍କ ପତ୍ନୀ ଭୂମିକାରେ ଯଥାକ୍ରମେ ଚକ୍ରପାଣି ଓ ତନ୍ଦ୍ରା ଦୁଇଟି ପାର୍ଶ୍ୱ ଚରିତ୍ର ଭୂମିକାରେ ଭଲ ଅଭିନୟ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଭୂମିକାରେ ମଧ୍ୟ ଉପଯୁକ୍ତ ଅଭିନୟ କରିଛନ୍ତି ଚାରୁଦର୍ଶନ ଗୁରୁଦତ୍ତ ସାମନ୍ତ ସିଂହାର । ଫୋଟଗ୍ରାଫୀ ନିର୍ମଳ ହୋଇଛି ।

❑ —**'ଦୈନିକ ଆଶା', ୧୫.୨.୧୯୮୬**

# ମଝି ପାହାଚ : ବାସ୍ତବତା କବଳରେ ଆଦର୍ଶ



''ମଝି ପାହାଚ''ରେ ଅରୁଣ ନନ୍ଦ ଓ ଦୋଳ ଗୋବିନ୍ଦ ରଥ

ନୀତିବାଦର ସ୍ଲୋଗାନ ଦେବା, ଆଦର୍ଶର ଧ୍ୱଜା ଉଡ଼ାଇବା ସହଜ ହୋଇପାରେ; କିନ୍ତୁ କଷ୍ଟ ବରଣ ପାଇଁ ସଂକଳ୍ପ ନଥିଲେ ତାହା ଖଣ୍ଡେ କାଚଭଳି ଝଣ ଝଣ ହୋଇ ଭାଙ୍ଗିପଡ଼େ । ବାସ୍ତବତାର କବଳରେ ଆଦର୍ଶ କିପରି କବଳିତ ହୋଇ ପଡ଼ିଛି, ମନମୋହନ ମହାପାତ୍ରଙ୍କର ସଦ୍ୟତମ ଚିତ୍ର 'ମଝି ପାହାଚ' (୧୯୮୬ର ଶ୍ରେଷ୍ଠ ଆଞ୍ଚଳିକ ଚିତ୍ର ରୂପେ ଜାତୀୟ ସ୍ତରରେ ପୁରସ୍କୃତ) ଅତି ପରିଚିତ ଅଥଚ ମର୍ମସ୍ପର୍ଶୀ ଘଟଣାମାନଙ୍କ ମାଧ୍ୟମରେ ପରିବେଷଣ କରିଛି ।

'ମଝି ପାହାଚ'ର ନାୟକ ଅରୁଣ କୌଣସି ଏକ ଦପ୍ତରର କର୍ମଚାରୀ ତଥା ଉଦୀୟମାନ କବି । ତାର କର୍ମସ୍ଥଳୀ ଭୁବନେଶ୍ୱର । କିନ୍ତୁ ସେ ଗାଆଁରେ ରହେ, ଅବସରପ୍ରାପ୍ତ ବାପା, ଇଞ୍ଜିନିୟରିଂ ପଢ଼ିବାକୁ ଚାହୁଁଥିବା ସାନଭାଇ ଓ ଅନୂଢ଼ା ଭଉଣୀ ସହ । ବହୁତ ପ୍ରକାରର ସମସ୍ୟା ମଧ୍ୟ ଦେଇ ଅରୁଣକୁ ଗତି କରିବାକୁ ପଡ଼େ । ସେ ସୁ-କବି, ପତ୍ର ପତ୍ରିକାମାନଙ୍କରେ ତାର କବିତା ପ୍ରକାଶିତ ହୋଇ ସେ ପ୍ରଶଂସିତ ହୁଏ, ଅଥଚ ପୁସ୍ତକ କାଗରେ ତାର କବିତା ପ୍ରକାଶିତ ହୋଇପାରୁନି । ପ୍ରକାଶକ ଚାହାନ୍ତି ଯେ ବହି ପାଇଁ ଅନ୍ତତଃ କାଗଜ ଖର୍ଚ୍ଚଟା ଅରୁଣ ତୁଲାଇ ପାରିଲେ, ବହିଟିକୁ ସେ ପ୍ରକାଶ କରିଦେବେ । ସେ ବାବଦରେ ଦରକାର ପାଞ୍ଚହଜାର ଟଙ୍କା । ଏଣେ ମାଡ୍ରାସ ଏ.ଏମ୍.ଆଇ.ରେ ଭାଇ ଅରୂପ ଜଏନ କରିବାକୁ ଚାତକ ପରି ଚାହିଁ ବସିଛି, ଖାଲି 'ଡୋନେସନ୍' ୧୨,୦୦୦ ଟଙ୍କା ଯୋଗାଡ଼ କରିଦେଲେ, ସେ ମଧ୍ୟ ଗାଡ଼ି ଧରିବ । ଭଉଣୀ କୁନିର ବିବାହ ପାଇଁ ବାପା ବଡ଼ ବ୍ୟସ୍ତ, ସେଥିପାଇଁ ବ୍ୟାଙ୍କରେ ଥିବା ୧୫,୦୦୦ଟଙ୍କା ସେ ଆଦୌ ଖଣ୍ଡିଆ କରିବାକୁ ଚାହାନ୍ତିନି । ଏପରିକି ପିତା ପ୍ରପିତାମହଙ୍କ ଅମଳର ଘର ଖଣ୍ଡିକର ଛାତରୁ ପାଣି ଗଳୁଥିଲେ ମଧ୍ୟ ମରାମତ କାମ ଟିକକ ବି ହୋଇପାରୁନି ।

ଏପରି ବିଭିନ୍ନ ସମସ୍ୟାର ନାଗ ଫାଶରେ ପରିବାରଟି କବଳିତ ହୋଇଥିବାବେଳେ ଅରୁଣ ପାଇଁ ଗୋଟିଏ ଲାଭଜନକ ବିବାହ ପ୍ରସ୍ତାବ ତାର ମାମୁଁ ଆଣୁଛନ୍ତି । ଅନ୍ୟାନ୍ୟ ଯୌତୁକ

ମଧରେ କନ୍ୟାପିତା ୨୦,୦୦୦ ଟଙ୍କା ବାଟଖର୍ଚ୍ଚ ଦେବାକୁ ପ୍ରସ୍ତୁତ । ଅରୁଣର ବାପା ପ୍ରଥମେ ଅମଙ୍ଗ ହେଉଛନ୍ତି; ପରେ ଅରୁଣକୁ ପଚାରି ଜବାବ ଦେବେ ବୋଲି କହୁଛନ୍ତି । ପ୍ରେମରେ ବିଫଳ ହୋଇଥିବା ଅରୁଣ ବି ପ୍ରଥମେ ଅରାଜି ହେଉଛି; ପରେ ପରିସ୍ଥିତି ପରିପ୍ରେକ୍ଷୀରେ ପ୍ରସ୍ତାବଟିର ଲାଭପ୍ରଦ ଦିଗଟି ସେ ଦେଖିପାରୁଛି । ଯୌତୁକ ଶିରୋନାମାରେ କବିତା ଲେଖି ଅରୁଣ ଦିନେ ଖୁବ୍ ପ୍ରଶଂସିତ ହୋଇଥିଲା; ଆଜି କିନ୍ତୁ ସେହି ଆଦର୍ଶବାଦୀ ଅରୁଣ ଯୌତୁକ ଅର୍ଥ ଦ୍ୱାରା ସମସ୍ୟାମାନଙ୍କର ସମାଧାନ ଚାହୁଁଛି । ଅରୁଣ ଜୀବନର ଏହି ପରାଜୟ ନିର୍ଦ୍ଦେଶକ ଗୋଟିଏ ପ୍ରତୀକାତ୍ମକ ଶେଷ ଦୃଶ୍ୟରେ ଫୁଟାଇଛନ୍ତି । ଅରୁଣ ତା' ରୁମ୍‌ରେ ବସି ନିଜେ ଲେଖିଥିବା କବିତା ଫାଇଲ ଓଲଟାଉଛି । ସେ ଗୋଟିଏ ନିର୍ଦ୍ଦିଷ୍ଟ କବିତା ପାଖରେ ଅଟକି ଯାଉଛି, ଯେଉଁ କବିତାଟିରେ ମର୍ମରୀତ ହୋଇଛି ତାର ଆଦର୍ଶ । ସେଇ କବିତାଟିକୁ କାଢ଼ିଆଣି, ମୋଡ଼ା ମୋଡ଼ି କରି, ସେ ନିଆଁ ଧରାଉଛି । ଆଦର୍ଶ ଜାଳି ଦେଇ ଅରୁଣ ବି ବାସ୍ତବତା ସହ ସାଲିଶ କରୁଛି, ଲେଖା ଚାଲିଥିବା ତା ଉପନ୍ୟାସର ନାୟକ ଭଳି ।

କଟକର ଗ୍ରାଣ୍ଡ ସିନେମାରେ ଓଡ଼ିଶା ଚଳଚ୍ଚିତ୍ର ନିଗମ ତରଫରୁ ଆୟୋଜିତ ଆଞ୍ଚଳିକ ଚଳଚ୍ଚିତ୍ର ଉତ୍ସବର ଉଦ୍‌ଘାଟନୀ ସଂଧ୍ୟାରେ ଶ୍ରୀ ମହାପାତ୍ରଙ୍କର ଏହି ପୁରସ୍କୃତ ଚଳଚ୍ଚିତ୍ରଟି ପ୍ରଦର୍ଶିତ ହୋଇଥିଲା । 'ମଝି ପାହାଚ' କେତେକ ଦୃଷ୍ଟିରୁ ତାଙ୍କର ପୂର୍ବ କୃତି 'କ୍ଳାନ୍ତ ଅପରାହ୍ନ' ପରି ହେଲେ ମଧ ଏହାର ସ୍ୱାତନ୍ତ୍ର ରହିଛି । ବିବାହ ଓ ଯୌତୁକ 'କ୍ଳାନ୍ତ ଅପରାହ୍ନ'ର ଅନ୍ୟତମ ବିଷୟବସ୍ତୁ । 'ମଝି ପାହାଚ'ରେ ମଧ ସେ ବିଷୟବସ୍ତୁ ରହିଛି; କିନ୍ତୁ ଯୌତୁକ ଗ୍ରହଣ (ବିଶେଷତଃ ସମାଜର ମଝି ପାହାଚ ବା ମଧବିତ୍ତ ପରିବାରରେ ଯୌତୁକ ଗ୍ରହଣ)ର ବୈଷୟିକ ଓ ମନସ୍ତାତ୍ତ୍ୱିକ ଦିଗଟି ନିର୍ଦ୍ଦେଶକ ଚିତ୍ରାୟିତ କରିଛନ୍ତି ।

ସାଂପ୍ରତିକ ଓଡ଼ିଶାରେ ଜଣେ କ୍ଷମତାହୀନ ସୁସାହିତ୍ୟିକଙ୍କ ସମସ୍ୟା ମଧ କାହାଣୀକାର ଓ ନିର୍ଦ୍ଦେଶକ ସିନେମାଟିରେ ଯଥାଯଥ ରୂପାୟିତ କରିଛନ୍ତି । ଏକ ଦୀର୍ଘ ଓ ଉନ୍ନତ କାବ୍ୟିକ ପରମ୍ପରା ଥିବା ରାଜ୍ୟରେ ଏବେ କେବଳ କ୍ଷମତାବାନ କିମ୍ବା ଅର୍ଥବାନ ବ୍ୟକ୍ତିମାନେ ହିଁ କବିର ସ୍ୱୀକୃତି ପାଇପାରନ୍ତି । ସାହିତ୍ୟିକ ଅରୁଣକୁ ଚିତ୍ରିତ କଲାବେଳେ ସିନେମାଟିରେ ଏତକ ସ୍ପଷ୍ଟ ହୋଇ ଉଠିଛି ।

ମାତ୍ର ଆଠ ରିଲ୍ ଲମ୍ବା ଏ ଚଳଚ୍ଚିତ୍ରଟିର କାହାଣୀଟି ଯେତିକି ସୁସଂହତ, କେତେକ ତ୍ରୁଟି ସତ୍ତ୍ୱେ ଚିତ୍ରନାଟ୍ୟଟି ସେତିକି ସୁଲିଖିତ (ସଂଳାପର ପରିମାଣ ମଧ ସର୍ବନିମ୍ନ ଯଦିଓ କିଛି ସଂଳାପ ଅସାବଧାନତା ପ୍ରସୂତ ବୋଲି ମଧ ମନେ ହେଉଛି) ।

ନିର୍ଦ୍ଦେଶନା କିନ୍ତୁ ମୋଟ ଉପରେ ତ୍ରୁଟିମୁକ୍ତ । ନାୟକ ଭୂମିକାରେ ଅରୁଣ ନନ୍ଦ ସୁନିୟନ୍ତ୍ରିତ ଓ ବାସ୍ତବଧର୍ମୀ ଅଭିନୟ କରିଛନ୍ତି । ଅରୁଣଙ୍କ ଭଉଣୀ ଭୂମିକାରେ ପୁଷ୍ପା ପଣ୍ଡା, ବାପା ଭୂମିକାରେ ସଚ୍ଚିଦାନନ୍ଦ ରଥ ଓ ସାହିତ୍ୟିକ ବନ୍ଧୁ ଭୂମିକାରେ ଦୋଳ ଗୋବିନ୍ଦ ରଥ ମଧ ଚରିତ୍ର ଉପଯୋଗୀ ଅଭିନୟ କରିଛନ୍ତି । ଚଳଚ୍ଚିତ୍ରଟିରେ ଗୋଟିଏ ବି ଗୀତ ନାହିଁ, ତେବେ ସଙ୍ଗୀତ ନିର୍ଦ୍ଦେଶକ ଶାନ୍ତନୁ ମହାପାତ୍ରଙ୍କ ପୃଷ୍ଠପଟ ସଙ୍ଗୀତ ଶ୍ରୁତି ମଧୁର ହୋଇଛି ।

*—"ଦୈନିକ ଆଶା" ୭.୬.୧୯୮୭*



# ରୂପେଲି ପରଦାରେ କାହ୍ନୁଚରଣଙ୍କ 'ଶାସ୍ତି'



''ଶାସ୍ତି''ରେ ବିଜୟ ମହାନ୍ତି ଓ ଅନ୍ୟଜଣେ ଅଭିନେତ୍ରୀ

କାହ୍ନୁଚରଣଙ୍କ ଶ୍ରେଷ୍ଠ ସାହିତ୍ୟ କୃତି **ଶାସ୍ତି**ର ଚଳଚ୍ଚିତ୍ର ରୂପାନ୍ତର ସମ୍ପ୍ରତି (୧୯୮୯ ଅକ୍ଟୋବର) ଆତ୍ମପ୍ରକାଶ କରିଛି ଓଡ଼ିଶାର କେତୋଟି ସିନେମା ହଲ୍‌ରେ । ବୃନ୍ଦାବନ ଜେନାଙ୍କ ନିର୍ଦ୍ଦେଶିତ ଏହି ଚଳଚ୍ଚିତ୍ରଟି ସମ୍ପୂର୍ଣ୍ଣ ଦୋଷମୁକ୍ତ ନ ହେଲେ ବି ଦର୍ଶନୀୟ ହୋଇଛି ।

ଓଡ଼ିଶା ଇତିହାସର ଏକ ଦୁଃଖଦ ଅଧ୍ୟାୟକୁ ପୃଷ୍ଠପଟରେ ରଖି **ଶାସ୍ତି** ରଚିତ । ୧୮୬୬ରେ ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଜନଜୀବନରେ ଯେଉଁ ବିଭୀଷିକା ସୃଷ୍ଟି କରିଥିଲା ଔପନ୍ୟାସିକ କାହ୍ନୁଚରଣ **ହା ଅନ୍ନ** ଉପନ୍ୟାସରେ ତାହା ରୂପାୟିତ କରିଥିଲେ । ଦୁର୍ଭିକ୍ଷ ପରେ ପରେ ଓଡ଼ିଶାର ସାମାଜିକ ଜୀବନରେ ଯାହା ପରିଦୃଷ୍ଟ ହେଲା ତାହା **ଶାସ୍ତି** ଉପନ୍ୟାସର ଦୁଇ ମୁଖ୍ୟ ଚରିତ୍ର ସନିଆ ଓ ଧୋବିର ଜୀବନ ରୂପାୟନ ମାଧ୍ୟମରେ ଲେଖକ ପ୍ରକାଶ କରିଛନ୍ତି ।

ଦୁର୍ଭିକ୍ଷ ସନିଆ ଓ ଧୋବୀ ଉଭୟଙ୍କ ଜୀବନରେ ଦୁର୍ଯୋଗ ଆଣିଛି ଯଦିଓ ସେ ଦୁର୍ଯୋଗ ଦୁଇ ଭିନ୍ନ ପ୍ରକାରର ଦୁର୍ଯୋଗ । ଗାଁ ଧୂଳିଖେଳର ଏ ଦୁଇ ସାଥୀ

ଯୌବନରେ ବିବାହ ବନ୍ଧନରେ ଆବଦ୍ଧ ହେବାର ପ୍ରସ୍ତାବ ଥିଲା; କିନ୍ତୁ ମଣିଷର ଅହମିକା ଏବଂ ନିୟତିର ଷଡ଼ଯନ୍ତ ଦ୍ୱାରା ସବୁକିଛି ଓଲଟପାଲଟ ହୋଇ ଯାଇଥିଲା । ସନିଆ ବ୍ୟତୀତ ତା' ପରିବାରର ଆଉ କେହି ଦୁର୍ଭିକ୍ଷର କରାଳଗ୍ରାସରୁ ରକ୍ଷା ପାଇ ନ ଥିଲେ । ଧୋବୀ ପାଖ ଦୁର୍ଗାପୁର ଗାଁର ସମ୍ଭ୍ରାନ୍ତ ପରିବାରରେ ବିବାହ କରି ଖୁବ୍ ଶୀଘ୍ର ବିଧବା ହୋଇ ଯାଇଥିଲା । ସନିଆ ଜନ୍ମମାଟି ବିଷ୍ଣୁପୁରରେ ପହଞ୍ଚିବା ମାତ୍ରେ କେତେକ ମହଲରେ କିଛିଟା ଆଲୋଡ଼ନ ଦେଖାଦେଲା । ଗାଁର ପୁରୋହିତ ପ୍ରହରାଜେ ପ୍ରାୟଶ୍ଚିତ କରି ଜାତିରେ ମିଶିବାର ଔପଚାରିକ ପଛାଟା ଛତରଖିଆ ସନିଆକୁ ବତାଇଦେଲେ ଯାହା କରିବା ନିସ୍ୱଃ ସନିଆ ପକ୍ଷେ ଅସମ୍ଭବ । ଏହାକରି ଗାଁ ପୁରୋହିତ ଧୋବୀର ଧନୀକ ପିତା ଚିନ୍ତେଇ ସୋଇଁଙ୍କ ଇଚ୍ଛା ହିଁ ପ୍ରଧାନତଃ ପୂରଣ କରୁଥିଲେ । ସନିଆର ମୃତ ବାପା ବନେଇ ପରିଡ଼ା ଜାତିଆଣ ଗର୍ବରେ ଏକଦା ଧୋବୀକୁ ବୋହୂ କରି ନ ଥିଲେ; ଚିନ୍ତେଇ ସୋଇଁ ଏଣୁ ବାପା ଉପରର ରାଗକୁ ପୁଅ ଉପରେ ସୁଝାଉଥିଲେ । ତେବେ ଧୋବୀ ସନିଆର ଏଇ ଚରମ ଅସମୟରେ ଗୋପନରେ ତାକୁ ସାହାଯ୍ୟ କରିବାକୁ ଆଗେଇ ଆସିଛି; ସମାଜରେ ପୁଣି ମାନ୍ୟଗଣ୍ୟ ହେଇ ଛିଡ଼ା ହେବାକୁ ଧନ ଦେଇଛି, ଆଶା ଦେଇଛି । ଧୋବୀକୁ ପାଇବା ଆଶାରେ ସନେଇ ପୁଣି ଘର କରିଛି, କ୍ଷେତ କରିଛି । କିନ୍ତୁ ଶେଷ ସୁଦ୍ଧା ସମାଜର ଶିକୁଳି, ଆଭିଜାତ୍ୟର ବଡ଼ିମାକୁ ଜଳାଞ୍ଜଳି ଦେଇ ଧୋବୀ ସନିଆ ସହ ସାମିଲ ହୋଇପାରିନି ଏବଂ ଅନ୍ତରରେ କିପରି ଖଣ୍ଡ ବିଖଣ୍ଡିତ ହୋଇଛି ତାହାହିଁ **ଶାସ୍ତି**ର ପ୍ରଧାନ ବକ୍ତବ୍ୟ ।

'ଶାସ୍ତି' ପ୍ରଧାନତଃ ନାୟକ - ନାୟିକା କୈନ୍ଦ୍ରିକ ଏବଂ ସନିଆ ଧୋବୀ ଭୂମିକାରେ ଉତ୍ତମ ମହାନ୍ତି ଓ ଅପରାଜିତା ଉଲ୍ଲେଖନୀୟ ସଫଳତା ହାସଲ କରିଛନ୍ତି । ତଥାପି ଉପନ୍ୟାସରେ କାହ୍ନୁଚରଣ ଏ ଦୁଇ ଚରିତ୍ରର ଯେଉଁ ମାନସିକ ଘୂର୍ଣ୍ଣି ବହିରେ ରୂପାୟିତ କରିଛନ୍ତି, ସିନେମାରେ ତାର ସମକକ୍ଷ ରୂପାୟନ ହୋଇନି । ବିଶେଷତଃ ଉପନ୍ୟାସର ଧୋବୀ ଚଳଚ୍ଚିତ୍ରର ଧୋବୀ ଅପେକ୍ଷା ଅଧିକ ପ୍ରାଣବନ୍ତ । ଉପନ୍ୟାସର ଅନ୍ୟ ତିନୋଟି ଚରିତ୍ର ଚିନ୍ତେଇ ସୋଇଁ, ଧୋବୀର ମା ଓ ପ୍ରହରାଜ ଭୂମିକାରେ ଯଥାକ୍ରମେ ବିଜୟ ମହାନ୍ତି, ଗୀତା ରାଓ ଓ ଦୁଃଖୀଶାମ ବି ଭଲ ଅଭିନୟ କରିଛନ୍ତି । ଅନ୍ୟ ଏକ ଗ୍ରାମ୍ୟ ଚରିତ୍ର ଭୂମିକାରେ ଅଭିନୟ କରିଛନ୍ତି ସୁପରିଚିତ ଚରିତ୍ର ଅଭିନେତା ହେମନ୍ତ ଦାସ ।

ବୃନ୍ଦାବନ ଜେନା ଏ ସିନେମାର ନିର୍ଦ୍ଦେଶକ କେବଳ ନୁହଁନ୍ତି, ଚିତ୍ରନାଟ୍ୟ ଲେଖକ ମଧ୍ୟ । ମୋଟ ଉପରେ ଚିତ୍ରନାଟ୍ୟ ସୁଲିଖିତ ଏବଂ ଅଧିକାଂଶ ଦୃଶ୍ୟର ନିର୍ଦ୍ଦେଶନା ଉପଯୁକ୍ତ ହୋଇଛି । ତେବେ କେତୋଟି ଉପାଦାନ (ଯଥା ରାମଲୀଳା) ଠିକ୍ ଉପସ୍ଥାପିତ

କରାଯାଇନି । ଊନବିଂଶ ଶତାବ୍ଦୀ ଓଡ଼ିଶାର ବାତାବରଣ ସୃଷ୍ଟି ପାଇଁ ଯଥେଷ୍ଟ ଅଧିକ ଦୃଷ୍ଟି ଦେବାର ଆବଶ୍ୟକତା ମଧ୍ୟ ଥିଲା । ଚିତ୍ରଟିର ମନୋରଞ୍ଜନ ମୂଲ୍ୟ ବଢ଼ାଇବା ପାଇଁ ନାୟକ ନାୟିକା ମୁହଁରେ ଗୋଟାଏ ଦ୍ୱୈତଗୀତ ମଧ୍ୟ ଦିଆଯାଇଛି ।

ଅଶୋକ ସ୍ୱାଇଁଙ୍କ ଫଟୋଗ୍ରାଫୀ ଚଳନୀୟ ମାନର ହୋଇଛି । ସଙ୍ଗୀତ ନିର୍ଦ୍ଦେଶକ ଅତୀଶ ମଜୁମଦାର ଦେଇଥିବା ଅଧିକାଂଶ ଗୀତ ସେତେଟା ଉଲ୍ଲେଖନୀୟ ନୁହେଁ । ତେବେ ଆମ ଲୋକଗୀତରୁ ଦିଆଯାଇଥିବା କିଛି ଅଂଶ ଗ୍ରାମ୍ୟ ବାତାବରଣ ସୃଷ୍ଟି କରିବାରେ ସାହାଯ୍ୟ କରିଛି । କିଛି ତ୍ରୁଟି ସତ୍ତ୍ୱେ 'ଶାସ୍ତି' ଏକ ଉଲ୍ଲେଖନୀୟ ସିନେମା ।

❑ –'ଦୈନିକ ଆଶା' ୨୨.୧୦.୧୯୮୯

# ଆନ୍ତର୍ଜାତିକ ଉତ୍ସବରେ ପୁରସ୍କୃତ 'ଭୂଖା'

୧୯୯୦ ସାଲରେ ସ୍ପେନରେ ଅନୁଷ୍ଠିତ 'ଗାଇଜନ୍ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ'ରେ 'ସ୍ୱତନ୍ତ୍ର ଜୁରୀ' ପୁରସ୍କାରରେ ପୁରସ୍କୃତ ହୋଇଛି ଓଡ଼ିଶାର ତରୁଣ ସିନେମା ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କ 'ଭୂଖା' । ପରେ ପରେ ଏ ଚିତ୍ର ଏକ ଫରାସୀ ଉତ୍ସବରେ ମଧ୍ୟ ପ୍ରଦର୍ଶିତ ହୋଇଛି । ସାମ୍ପ୍ରତିକ ଓଡ଼ିଆ ଚଳଚ୍ଚିତ୍ରମାନଙ୍କ ମଧ୍ୟରେ 'ଭୂଖା' ଗୋଟିଏ ଉଲ୍ଲେଖନୀୟ ସୃଷ୍ଟି । ସମ୍ବଲପୁର ଅଞ୍ଚଳର ଲୋକ ଜୀବନକୁ ରୂପେଲି ପରଦାରେ ରୂପାୟିତ କରିବାର ଉଦ୍ୟମ ଏ ଚିତ୍ରରେ ହୋଇଛି ।

ଗାଳ୍ପିକ ପୂର୍ଣ୍ଣାନନ୍ଦ ଦାନୀଙ୍କ ଏକ ପ୍ରକାଶିତ କ୍ଷୁଦ୍ର ଗଳ୍ପ ଉପରେ ଆଧାରିତ 'ଭୂଖା'ର କେନ୍ଦ୍ରରେ ରହିଛି ଅଇଁଠୁ ନାମକ ମହୁରୀ ବାଦକ । ସମ୍ବଲପୁର ଅଞ୍ଚଳର 'ବଜ୍ନୀୟା' ଅର୍ଥାତ୍ ବାଜାବାଲା ଦଳର ମୁଖ୍ୟ ଅଇଁଠୁ, ମହୁରୀ ବାଦନକୁ ଏକ ପେଷା କେବଳ ନୁହେଁ ସାଧନା ରୂପେ ଗ୍ରହଣ କରେ । ଅଇଁଠୁ ବିପତ୍ନୀକ; ଘରେ ତାର ବାଡୁଅ ଭଉଣୀ କସ୍ତୁରୀ ଆଉ ନାବାଳକ ପୁଅ । ଝାଟିମାଟିର ଛଣଛପର ଘରେ ଦୁଃଖେ କଷ୍ଟେ ସେମାନଙ୍କର ଜୀବନ କଟେ ।

ସେମାନେ ରହୁଥିବା ଗାଆଁକୁ ଲୋକ ସଂସ୍କୃତି ଗବେଷଣା କରୁଥିବା ଅସୀମ ନାମକ ଜଣେ ଯୁବକ ଆସେ । ଉକ୍ତ ଅଞ୍ଚଳରେ ପ୍ରଚଳିତ ନାଚ, ଗୀତ ଉପରେ ସନ୍ଦର୍ଭ ଲେଖି ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ହାସଲ କରିବା ତାର ଲକ୍ଷ୍ୟ । ଗାଁରେ ଥିବା ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ଜଣେ ଡାକ୍ତର ଥାଆନ୍ତି ଏବଂ ଅସୀମ ତାଙ୍କ ସହ କୌଣସିମତେ ରହି ତା' ଗବେଷଣା କାର୍ଯ୍ୟ ଚଳାଏ ।

ଏହି ଗବେଷଣା ସମୟ ଭିତରେ ତାର ପରିଚୟ ହୁଏ ଅଇଁଠୁ ଓ କସ୍ତୁରୀ ସହ । ଓସ୍ତାଦ୍ ମହୁରୀ ବାଦକ ଅଇଁଠୁ ତାକୁ କିଛି ତଥ୍ୟ ଦିଏ, କିନ୍ତୁ ପ୍ରଥମେ ପ୍ରଥମେ ରାଗୁଥିବା କସ୍ତୁରୀ ଅସୀମକୁ ତା' ହୃଦୟଟା ମଧ ଦେଇଦିଏ । ସେ ଅଞ୍ଚଳର ଲୋକ ସଂସ୍କୃତି ସହ ଅସୀମର ଏମିତି ମମତା ଜନ୍ମେ ଯେ, ତଥ୍ୟ ସଂଗ୍ରହ ସାରି ଗାଁ ଛାଡ଼ିବା ବେଳକୁ ଅସୀମ ଜବାବ ଦିଏ, ସେ ପୁଣି ସେଇ ଗାଆଁକୁ ବାହୁଡ଼ି ଆସିବ ।

ମାସ କେତେଟାରେ ବାଜାବାଲା ଦଳ ମଧରେ ସଙ୍କଟ ଦେଖାଦିଏ । ବିବାହ ବ୍ରତ, ପର୍ବପର୍ବାଣୀରେ ଏକଦା ବଜ୍‌ନିୟାମାନେ ନିଶ୍ଚିତ ରୂପେ ବାଜା ବଜାଇ ପାରିଶ୍ରମିକ ପାଉଥିବା ବେଳେ, ସେମାନଙ୍କ ଭୂମିକା କ୍ରମଶଃ ସଙ୍କୁଚିତ ହୋଇଆସେ । ସେହି କ୍ରମରେ ସେମାନଙ୍କ ଆୟ କମି ଆସି ପରିସ୍ଥିତି ସେମାନଙ୍କୁ ବୁଭୁକ୍ଷୁ ସ୍ତରରେ ପହଞ୍ଚାଇ ଦିଏ । ତେବେ ଅଇଁଠୁ ପେଷା ଛାଡ଼ି ଅନ୍ୟ କିଛି କରିବାକୁ ପ୍ରସ୍ତୁତ ନୁହେଁ ଯଦିଓ ତା' ଦଳର ଅନ୍ୟମାନଙ୍କର ମନୋବଳ କ୍ରମଶଃ ଭାଙ୍ଗି ପଡୁଥାଏ । ଅଭାବଗ୍ରସ୍ତ ଅଇଁଠୁ ରୋଗଗ୍ରସ୍ତ ହୁଏ । କସ୍ତୁରୀ ତା'ର ଚିକିତ୍ସା ପାଇଁ ଗାଁ ମହାଜନର ଶରଣାପନ୍ନ ହୁଏ, ଏପରିକି ଔଷଧ ପାଇଁ ନିଜର ସତୀତ୍ୱ ଅର୍ପଣ କରିଦିଏ ।

ଦିନେ ସତକୁ ସତ ଅସୀମ ନିଜ ଜବାବ ଅନୁଯାୟୀ ଗାଆଁକୁ ଫେରି ଆସେ । ନୈରାଶ୍ୟ ଜର୍ଜରିତ ବଜ୍‌ନୀୟା ଦଳଙ୍କ ଭିତରେ ସେ ପୁଣି ପ୍ରେରଣା ଭରିଦିଏ, ବାଜା ବିକ୍ରି କରିଦେବା ଉପକ୍ରମରୁ ସେମାନଙ୍କୁ ନିବୃତ୍ତ କରାଏ । ଅସୀମ ଅଇଁଠୁକୁ ମଧ ପ୍ରତିଶ୍ରୁତି ଦିଏ ଯେ, ସେ କସ୍ତୁରୀକୁ ବିବାହ କରିବାକୁ ସ୍ଥିର କରିଛି । କିନ୍ତୁ ପରେ ପରେ ତା' ମନରେ ଦ୍ୱନ୍ଦ୍ୱ ଜନ୍ମେ : କସ୍ତୁରୀକୁ ବିବାହ କରିବା ଦ୍ୱାରା ତା' ପରିବାରରେ ଯେଉଁ ଝଡ଼ ଉଠିବ ସେ କ'ଣ ତାର ମୁକାବିଲା କରି ପାରିବ ? ସେ ରାତାରାତି ପଳାୟନ କରେ । ନୈରାଶ୍ୟ ଜର୍ଜରିତ ଅଇଁଠୁ ଡାକ୍ତରଙ୍କ ବାରଣ ଥିବା ସତ୍ତ୍ୱେ ସେ ଦିନ ଏମିତି ମହୁରୀ ବଜାଏ, ଯେ, ତାର ମୃତ୍ୟୁ ହୁଏ ।

ପାରମ୍ପରିକ ଲୋକକଳା ଆଧୁନିକ ଯୁଗରେ କିପରି ବିପଦଗ୍ରସ୍ତ ହୁଏ, ତାହା 'ଭୂଖା'ର ବିଷୟବସ୍ତୁ । ଏପରି ବିଷୟବସ୍ତୁ ଗ୍ରହଣ କରି କେ. ବିଶ୍ୱନାଥ ତେଲୁଗୁ ଚିତ୍ର 'ଶଙ୍କରା ଭରଣମ୍' ଏବଂ ବୁଦ୍ଧଦେବ ଦାସଗୁପ୍ତା ହିନ୍ଦୀ ଚିତ୍ର 'ବାଘ ବାହାଦୂର' ପ୍ରସ୍ତୁତ କରିଛନ୍ତି । ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ର କାହାଣୀଟିକୁ ମୋଟ ଉପରେ ବାସ୍ତବଧର୍ମୀ କରି ବିଚିତ୍ର କରିଛନ୍ତି । ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି ପୃଷ୍ଠପଟରେ ରଖି ସେ ତାଙ୍କର

ବିଷୟବସ୍ତୁ ଉପସ୍ଥାପିତ କରିଛନ୍ତି । ଅବଶ୍ୟ କେତୋଟି ଅପ୍ରାସଙ୍ଗିକ ଦୃଶ୍ୟ ଏଥିରେ ରହିଛି । ଗୋଟାଏ ଦୃଶ୍ୟରେ ଦୁଇଟି ତରୁଣୀଙ୍କର ଗାଳିଗୁଲଜ ଓ କଳହ ଦେଖାଦେଇଛି ଯାହା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ । ଅନ୍ୟ କେତୋଟି ଦୃଶ୍ୟରେ ଏକ ରଗ୍‌ଣ ଶିଶୁ, ତାର ମୃତ୍ୟୁ, ଶୁଦ୍ଧିକ୍ରିୟା ଇତ୍ୟାଦି କାହାଣୀ-ଅସଂଲଗ୍ନ ଘଟଣା ଉପସ୍ଥାପିତ ହୋଇଛି । ତେବେ ଶ୍ରୀ ମହାପାତ୍ର କେତୋଟି ଦୃଶ୍ୟରେ ନିଜ ନିର୍ଦ୍ଦେଶନା ବାହାଦୂରୀର ପରିଚୟ ଦେଇଛନ୍ତି । ଗବେଷଣା କାମ ସାରି ଅସୀମ ଚାଲିଯିବା ପରେ କସ୍ତୁରୀ ଓ ଅଇଁଠୁ ମଧ୍ୟରେ ଗୋଟାଏ ଦୃଶ୍ୟ ଚମତ୍କାର ହୋଇଛି । ଅଇଁଠୁର ମହାପ୍ରୟାଣ ଦୃଶ୍ୟରେ କସ୍ତୁରୀ ମହୁରୀଟିଏ ଅଇଁଠୁର ପୁଅ ହାତରେ ଦେଉଥିବା ପ୍ରଦର୍ଶିତ ହୋଇଛି । କଳାକାରର ମୃତ୍ୟୁ ପରେ ବି କଳାର ପରମ୍ପରା କିପରି ବଞ୍ଚି ରହେ, ତାହା ଏଥିରେ ସୂଚେଇ ଦିଆ ଯାଇଛି ।

ଅଇଁଠୁ ଭୂମିକାରେ ସାଧୁ ମେହେରଙ୍କ ଅଭିନୟ ପ୍ରାଣସ୍ପର୍ଶୀ ହୋଇଛି । ଗାଁ ମହାଜନ ଭୂମିକାରେ ଶରତ ପୂଜାରୀ ଚରିତ୍ରଧର୍ମୀ ଅଭିନୟ କରିଛନ୍ତି । କସ୍ତୁରୀ ଭୂମିକାରେ ନବାଗତା ସ୍ୱାତୀ ରାୟ ମଧ୍ୟ ଉଲ୍ଲେଖନୀୟ କୁଶଳତା ଫୁଟାଇଛନ୍ତି । 'ଭୂଖା'ରେ ପରିବେଷିତ କେତୋଟି ଲୋକଗୀତ ଓ ଲୋକନାଟ ଚଳଚ୍ଚିତ୍ରଟିର ମନୋରଞ୍ଜନ ମୂଲ୍ୟ ବଢ଼ାଇଛି । ଏ ସିନେମାରେ ସାଧାରଣ ଓଡ଼ିଆ ସଂଳାପ ସହ ସମ୍ବଲପୁରୀ ଭାଷା (ବା ଉପଭାଷା)ର ସଂଳାପ ବହୁଳ ଭାବେ ବ୍ୟବହୃତ ହୋଇଛି । 'ଭୂଖା'ର ଫଟୋଗ୍ରାଫୀ ଆକର୍ଷଣୀୟ ହୋଇଛି ।

—'ଦୈନିକ ଆଶା' ୨୧.୧୨.୧୯୯୦





'ଭୂଖା' ର ଏକ ବଜନୀୟା ଦଂପତି

ଏହି ଲେଖକଙ୍କ ଲେଖନୀରୁ ଅନ୍ୟ କେତୋଟି ଚମତ୍କାର ସୃଷ୍ଟି । ପ୍ରତି ଘର ପାଇଁ ଏକ ଏକ ଅମୂଲ୍ୟ ରତ୍ନ !

୧. **ବୈଚିତ୍ର୍ୟମୟ ଶ୍ରୀମନ୍ଦିର** (ପ୍ରଥମ ଭାଗ)
(ପୁରୀ ମନ୍ଦିରର ଅରୁଣସ୍ତମ୍ଭଠାରୁ ନୀଳଚକ୍ର ଯାଏଁ ସମସ୍ତ ବିଶେଷତ୍ୱର ଆକର୍ଷଣୀୟ ବିବରଣୀ, ୪୬ଗୋଟି ଛବି ସହ ।)

୨. **ବୈଚିତ୍ର୍ୟମୟ ଶ୍ରୀମନ୍ଦିର** (ଦ୍ୱିତୀୟ ଭାଗ)
(ଜଗନ୍ନାଥ ମନ୍ଦିରର ସମସ୍ତ ଯାତ୍ରା, ବେଶ, ଉତ୍ସବ ପ୍ରଭୃତିର ଚିତ୍ତାକର୍ଷକ ଓ ସଚିତ୍ର ବୟାନ । ପୁରୀ ମନ୍ଦିରର ସମସ୍ତ ରୀତି, ନୀତି ଜାଣିବା ପାଇଁ ଏକ ଅନନ୍ୟ ଗାଇଡ୍ । ବହୁ ବିରଳ ଛବିଦ୍ୱାରା ଅଳଙ୍କୃତ ।)

୩. **ଶ୍ରୀଜଗନ୍ନାଥଙ୍କ ନବକଳେବର**
(ନବକଳେବର ନାମକ ଅଦ୍ଭୁତ ରୀତିର ସମସ୍ତ ତଥ୍ୟ ଅତି ସୁନ୍ଦର ଶୈଳୀରେ ଲିଖିତ ଓ ଅନେକ ଚିତ୍ରରେ ଅଳଙ୍କୃତ ।)

୪. **ହାୱାଇ ଦ୍ୱୀପର ଦଧୀଚି**
(ମହାତ୍ମାଗାନ୍ଧୀଙ୍କ ଅନ୍ୟତମ ପ୍ରେରଣାର ଉତ୍ସ, ଊନବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଶହୀଦ୍, ବେଲ୍‌ଜିୟମ୍‌ର ଡେମିଏନ୍‌ଙ୍କ ଜୀବନର ହୃଦୟସ୍ପର୍ଶୀ ଆଲେଖ୍ୟ ।

୫. **ଇୟାଣୋର ଇତିବୃତ୍ତି**
(ଏକ୍ ରସୋତୀର୍ଣ୍ଣ କବିତା ଗ୍ରନ୍ଥ ଯାହା ପଢ଼ିଲେ ଆଦୌ ଭୁଲି ପାରିବେ ନାହିଁ ।)

୬. **ଓଡ଼ିଶାର ଶକ୍ତିପୀଠ**
(ଓଡ଼ିଶାର ସମସ୍ତ ପ୍ରଧାନ ପ୍ରଧାନ ଶକ୍ତିପୀଠ ଉପରେ ଏକ ଅନନ୍ୟ ଗ୍ରନ୍ଥ; ବହୁତ ଛବି ସହ । ଏବେ ଯନ୍ତ୍ରସ୍ଥ)




ବହିପ୍ରାପ୍ତି ପାଇଁ ଯୋଗାଯୋଗ ଠିକଣା :

**ଶାଶ୍ୱତୀ ପବ୍ଲିକେଶନ୍**

ବିଜିପୁର, ବଡ଼ସାହି, ବ୍ରହ୍ମପୁର - ୭୬୦୦୦୧

ଫୋନ୍ : (୦୬୮୦)୨୦୦୦୦୩

ଏହି ଲେଖକଙ୍କ ଲେଖନୀରୁ ଅନ୍ୟ କେତୋଟି ଚମତ୍କାର ସୃଷ୍ଟି । ପ୍ରତି ଘର ପାଇଁ ଏକ ଏକ ଅମୂଲ୍ୟ ରତ୍ନ !

୧. **ବୈଚିତ୍ର୍ୟମୟ ଶ୍ରୀମନ୍ଦିର** (ପ୍ରଥମ ଭାଗ)
(ପୁରୀ ମନ୍ଦିରର ଅରୁଣସ୍ତମ୍ଭଠାରୁ ନୀଳଚକ୍ର ଯାଏଁ ସମସ୍ତ ବିଶେଷତ୍ୱର ଆକର୍ଷଣୀୟ ବିବରଣୀ, ୪୬ଗୋଟି ଛବି ସହ ।)

୨. **ବୈଚିତ୍ର୍ୟମୟ ଶ୍ରୀମନ୍ଦିର** (ଦ୍ୱିତୀୟ ଭାଗ)
(ଜଗନ୍ନାଥ ମନ୍ଦିରର ସମସ୍ତ ଯାତ୍ରା, ବେଶ, ଉତ୍ସବ ପ୍ରଭୃତିର ଚିତ୍ତାକର୍ଷକ ଓ ସଚିତ୍ର ବୟାନ । ପୁରୀ ମନ୍ଦିରର ସମସ୍ତ ରୀତି, ନୀତି ଜାଣିବା ପାଇଁ ଏକ ଅନନ୍ୟ ଗାଇଡ୍ । ବହୁ ବିରଳ ଛବିଦ୍ୱାରା ଅଳଙ୍କୃତ ।)

୩. **ଶ୍ରୀଜଗନ୍ନାଥଙ୍କ ନବକଳେବର**
(ନବକଳେବର ନାମକ ଅଦ୍ଭୁତ ରୀତିର ସମସ୍ତ ତଥ୍ୟ ଅତି ସୁନ୍ଦର ଶୈଳୀରେ ଲିଖିତ ଓ ଅନେକ ଚିତ୍ରରେ ଅଳଙ୍କୃତ ।)

୪. **ହାୱାଇ ଦ୍ୱୀପର ଦଧୀଚି**
(ମହାତ୍ମାଗାନ୍ଧୀଙ୍କ ଅନ୍ୟତମ ପ୍ରେରଣାର ଉତ୍ସ, ଊନବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଶହୀଦ୍, ବେଲ୍‌ଜିୟମ୍‌ର ଡେମିଏନ୍‌ଙ୍କ ଜୀବନର ହୃଦୟସ୍ପର୍ଶୀ ଆଲେଖ୍ୟ ।

୫. **ଇୟାଶୋର ଇତିବୃତ୍ତି**
(ଏକ୍ ରସୋତୀର୍ଣ୍ଣ କବିତା ଗ୍ରନ୍ଥ ଯାହା ପଢ଼ିଲେ ଆଦୌ ଭୁଲି ପାରିବେ ନାହିଁ ।)

୬. **ଓଡ଼ିଶାର ଶକ୍ତିପୀଠ**
(ଓଡ଼ିଶାର ସମସ୍ତ ପ୍ରଧାନ ପ୍ରଧାନ ଶକ୍ତିପୀଠ ଉପରେ ଏକ ଅନନ୍ୟ ଗ୍ରନ୍ଥ; ବହୁତ ଛବି ସହ । ଏବେ ଯନ୍ତ୍ରସ୍ଥ)



ବହିପ୍ରାପ୍ତି ପାଇଁ ଯୋଗାଯୋଗ ଠିକଣା :

**ଶାଶ୍ୱତୀ ପବ୍ଲିକେଶନ୍**

ବିଜିପୁର, ବଡ଼ସାହି, ବ୍ରହ୍ମପୁର - ୭୬୦୦୦୧

ଫୋନ୍ : (୦୬୮୦)୨୦୦୦୦୩

"ସାରା ଦୁନିଆରେ ଚହଳ ସୃଷ୍ଟି କଲା 'ଦି' ଗ୍ରେଟ୍ ଟ୍ରେନ୍ ରୋବେରି'। ଉଣିବାର କଥା। ତା' ଥିଲା ପୃଥିବୀର ପ୍ରଥମ କାହାଣୀ-ସମ୍ବଳିତ ଚଳଚ୍ଚିତ୍ର। ରିଲ୍‌ଟିଏ ଲମ୍ବା ଏକ ଫିଲ୍ମ ଦେହରେ ଚାଞ୍ଚଲ୍ୟକର ଗୋଟିଏ କାହାଣୀର ରୂପାୟନ ଜନମାନସକୁ ଆକର୍ଷଣ କରିବାକୁ ଯଥେଷ୍ଟ ଥିଲା। ଦି' ଗ୍ରେଟ୍ ଟ୍ରେନ୍ ରୋବେରି ଆମେରିକୀୟ ଏଡ୍‌ୱିନ ପୋର୍ଟର ୧୯୦୩ରେ ସମାପ୍ତ କରିଥିଲେ। ପ୍ରଥମେ ଯେତେବେଳେ ଆମେରିକାର ଫିଲାଡେଲ୍‌ଫିଆରେ ସେ ସିନେମା ମୁକ୍ତିପାଏ ତାହା 'ହିଟ୍' ଚିତ୍ର ରୂପେ ପ୍ରମାଣିତ ହୋଇଥିଲା। ସେ ଥିଲା ବିଂଶ ଶତାବ୍ଦୀର ପ୍ରଥମ ଦଶକର ଘଟଣା।

ପାଶ୍ଚାତ୍ୟ ଉଦ୍ଭାବନ ଗୁଡ଼ିକ ଓଡ଼ିଶା ମାଟିରେ ପହଞ୍ଚିବାକୁ ଡେରି ଲାଗେ। ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହେବାବେଳକୁ ବିଶ୍ୱ ଚଳଚ୍ଚିତ୍ର ଦ୍ୱିତୀୟ ପର୍ଯ୍ୟାୟରେ ପଦାର୍ପଣ କଲାଣି। ପ୍ରଥମ ଭାରତୀୟ ସିନେମା 'ରାଜା ହରିଶ୍ଚନ୍ଦ୍ର' ନିର୍ମିତ ହୋଇ ମଧ୍ୟ ୨୩ ବର୍ଷ ବିତି ଯାଇଥିଲା। ବାକ୍‌ହୀନ ଚଳଚ୍ଚିତ୍ର ଅଧ୍ୟାୟ ସରିଯାଇ ଛଅ ବର୍ଷ ଅତିକ୍ରାନ୍ତ ହେବାପରେ ୧୯୩୬ ସାଲ ବେଳକୁ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇ ଆତ୍ମପ୍ରକାଶ କଲା। ଛବିଟିର ବିଷୟବସ୍ତୁ ଥିଲା ପୌରାଣିକ— 'ସୀତା ବିବାହ'।"

*ସମୟ ସରଣୀରେ ଓଡ଼ିଆ ସିନେମା* ବହିର ଲେଖକ ଶରତ ଚନ୍ଦ୍ର ଏହା ଲେଖିଛନ୍ତି ଓଡ଼ିଆ ସିନେମା ଇତିହାସର ଉପକ୍ରମଣିକା ରୂପେ। କିନ୍ତୁ ତାଙ୍କ ବହିର ପୃଷ୍ଠପଟ ଅତି ପ୍ରଶସ୍ତ; ତାହା ଆବୋରି ନେଇଛି ପୃଥିବୀରେ ଗତ ଶହେ ବର୍ଷ ଧରି ଅଭ୍ୟୁଦୟ ପଥରେ ଆସିଥିବା ଚଳଚ୍ଚିତ୍ର କାରୀଗରିକୁ ମଧ୍ୟ। ପୃଥିବୀର ସମସ୍ତ ବଡ଼ ବଡ଼ ସିନେମା ନିର୍ମାତାଙ୍କ ଅଭିମତର ନିର୍ଯ୍ୟାସ ମଧ୍ୟ ସେ ସାମିଲ୍ କରିଛନ୍ତି ଏ ବହିରେ। ତଥାପି... ଏହି ଗ୍ରନ୍ଥରେ ଫୁଟି ଉଠିଛି ଲେଖକଙ୍କର ସିନେମା ସମୀକ୍ଷା ପ୍ରତି ଏକ ଅନନ୍ୟ ଦୃଷ୍ଟି ଭଙ୍ଗୀ। ଯେ କୌଣସି ଭଲ ଚଳଚ୍ଚିତ୍ର ପରି ଆକର୍ଷଣୀୟ ଆଉ ଉପଭୋଗ୍ୟ—

## ସମୟ ସରଣୀରେ ଓଡ଼ିଆ ସିନେମା



ମୁକ୍ତ-ସାମ୍ବାଦିକ ଶରତ ଚନ୍ଦ୍ର ନିଜ ମାତୃଭାଷା ଓଡ଼ିଆ ଏବଂ ଅନେକ ଇଂରାଜି ପତ୍ରପତ୍ରିକାରେ ଲେଖାଲେଖି କରନ୍ତି। ହଂକଂରୁ ପ୍ରକାଶ ପାଉଥିବା *ଆର୍ଟସ୍ ଅଫ୍ ଏସିଆ* ସମେତ ଜାତୀୟ ସ୍ତରର *ହିନ୍ଦୁସ୍ତାନ୍ ଟାଇମ୍‌ସ୍, ଇଣ୍ଡିଆନ୍ ଏକ୍ସପ୍ରେସ୍, ଟେଲିଗ୍ରାଫ୍, ଷ୍ଟେଟ୍‌ସ୍‌ମେନ୍, ଫ୍ରଣ୍ଟଲାଇନ୍, ଇଣ୍ଡିଆ ମେଗାଜିନ୍, ସ୍ୱାଗତ, ହେରିଟେଜ୍* ପ୍ରଭୃତି ଖ୍ୟାତନାମା ପତ୍ରପତ୍ରିକାମାନଙ୍କରେ ତାଙ୍କର ବହୁ ଲେଖା ପ୍ରକାଶିତ। *ଝଙ୍କାର, ସଚିତ୍ର ବିଜୟା, ସାକ୍ଷ୍ୟ* ପ୍ରଭୃତି ଅନେକ ଓଡ଼ିଆ ପତ୍ରିକା ମଧ୍ୟ ତାଙ୍କ ରଚନାଦ୍ୱାରା ଅଳଙ୍କୃତ ହୋଇଛି। ଦୈନିକ *ଆଶା*ରେ ସେ ଅନୁସଂଧାନ ମୂଳକ ରିପୋର୍ଟ, କଳା ସମୀକ୍ଷା, ସାକ୍ଷାତକାର, ବିଶ୍ଳେଷଣାତ୍ମକ ସ୍ତମ୍ଭ ପ୍ରଭୃତି ନିୟମିତ ଲେଖନ୍ତି। ଲେଖକଙ୍କ ଗବେଷଣାପ୍ରସୂତ *ବୈଚିତ୍ର୍ୟମୟ ଶ୍ରୀମନ୍ଦିର, ହାୱାଇ ଦ୍ୱୀପର ଦଧୀଚି* ନାମରେ ଗୋଟିଏ ଅନନ୍ୟ ଜୀବନୀ ଗ୍ରନ୍ଥ ଏବଂ ଇୟାରୋର ଇତିବୃତ୍ତି ନାମକ କବିତା ପୁସ୍ତକ ପ୍ରକାଶିତ।